# ଜୀବନ ତରଙ୍ଗ

ନୂତନ ସଂସ୍କରଣ : ୧୯୮୯

ପ୍ରକାଶକ : ଶୁଭକାନ୍ତ ନନ୍ଦ
ସୌଦାମିନୀ ପ୍ରକାଶନ
କଟକ-୭୫୩୦୦୯

ମୁଦ୍ରକ : ସଂସାର ପ୍ରେସ
କଟକ-୭୫୩୦୦୯

ମୂଲ୍ୟ : କୋଡ଼ିଏ ଟଙ୍କା

JEEBAN TARANGA

New Edition

Publisher :

SUBHAKANTA NANDA
Soudamini Prakasana
Cuttack-753009

Printer :

SANSAR PRESS
Cuttack-753009

Price : **Rs. 20.00**

# ମୂଳ କଥା

ବୋଧହୁଏ ୧୯୭୨ ମସିହା ହେବ, ଦିନେ ମୋର ପ୍ରିୟ ଶୈଳ ଏବଂ ସାଲେପୁର ରାମକୃଷ୍ଣ ସେବାଶ୍ରମର ଶ୍ରୀଯୁକ୍ତ ଚନ୍ଦ୍ରଶେଖର ମିଶ୍ର ଆମ ଘରେ ବସି ମୋ ସଙ୍ଗେ ବିଭିନ୍ନ ଆଲୋଚନା କରୁ କରୁ ମୋତେ ଆତ୍ମଜୀବନୀ ଲେଖିବାପାଇଁ ଅନୁରୋଧ କଲେ । ଚନ୍ଦ୍ରଶେଖରବାବୁ ମୋର ଅତୀତ ସମ୍ବନ୍ଧରେ କିଛି କିଛି ଜାଣିଥିଲେ, ଶୈଳ ମୋର ପ୍ରିୟ ହୋଇ ସୁଦ୍ଧା ବିଶେଷ କିଛି ଜାଣି ନ ଥିଲା । ଦୁହିଁଙ୍କ ଅନୁରୋଧର ଉଦ୍ଦେଶ୍ୟ ଥିଲା ଅବଶ୍ୟ ଭିନ୍ନ ଭିନ୍ନ । କିନ୍ତୁ ସେ ଦୁହେଁ ମୋର ଅତି ଆପଣାର ଲୋକ ଥିବାରୁ ତାଙ୍କ କଥାକୁ ଉଡ଼ାଇ ଦେଇ ପାରିଲି ନାହିଁ । ସେ ବିଷୟରେ ଅଧିକ ଚିନ୍ତା କଲି ।

ଭାବିଲି, ଜୀବନରେ ପ୍ରତିଷ୍ଠା ଲାଭ କରିଥିବା ବ୍ୟକ୍ତିମାନେ ଆତ୍ମଜୀବନୀ ଲେଖିଲେ ତାର ସିନା କିଛି ମୂଲ୍ୟ ଥାଏ, ମୁଁ କାହିଁକି ଲେଖିବି ? ମୋ ଜୀବନରେ ବହୁ ଜୁଆର-ଭଟ୍ଟା ଘଟିଛି, ଏବଂ ମୁଁ ତାକୁ ଅତିକ୍ରମ କରି ଶୁଖିଲା ଭୂଇଁକୁ ଉଠି ଆସିଛି, ଏ କଥା ସତ; କିନ୍ତୁ ଏପରି କଣ ଅନ୍ୟମାନଙ୍କ ଜୀବନରେ ଘଟୁନାହିଁ ?

ପୁଣି ଭାବିଲି, ମୁଁ ଜଣେ ଶିକ୍ଷକ । ଉତ୍କଳର ଜାତୀୟ ବିଦ୍ୟାଳୟ ସତ୍ୟବାଦୀର ବକୁଳ-କୁସୁମିତ କୁଞ୍ଜରେ ଗଢ଼ା ହୋଇଥିଲା ମୋର ମନ । ସ୍ୱାଧୀନ ଭାବରେ ଅନୁପ୍ରାଣିତ ହୋଇ ମୁଁ ଗଢ଼ି ଆସିଛି କେତୋଟି ଜୀବନ, ଚିକିଟା ମାଟି ପରି ସେ ସବୁ ନରମ ଥିଲାବେଳେ । ସ୍ୱାଧୀନ ଭାରତରେ ଶିକ୍ଷକର ଭୂମିକା ଉଚିତର ସ୍ୱୀକୃତ ନ ପାଇଲେ ବି ତାର ମହତ୍ତ୍ୱ କେବେ ମଉଳିସିବ ନାହିଁ । ଜୀବନ ଗଢ଼ିବାରେ ଯେଉଁ ଆନନ୍ଦ, କାବ୍ୟ ବା କୀର୍ତ୍ତିନିର୍ମାଣର ଆନନ୍ଦଠାରୁ ତାହା ଊଣା ନୁହେଁ; ଜୀବନର ଅର୍ଦ୍ଧ-ଭାଗରୁ ଊର୍ଦ୍ଧ୍ୱ ମୁଁ ଅନ୍ଧକାର ଗୃହରେ ପ୍ରଦୀପ ଜାଳି ଆସିଛି । ପରନିର୍ଭରଶୀଳ ବା ପ୍ରଭୁତୋଷଣପ୍ରୟାସୀ ହୋଇନାହିଁ, କଠୋର ଅଧ୍ୟବସାୟ କରିଆସିଛି—ନିଜକୁ, ପରିବାରକୁ ଓ ବିଦ୍ୟାଳୟକୁ ବଞ୍ଚାଇବାଲାଗି । 'ସତ କହିବାକୁ କାହିଁ ଡରିବି, ସତ କହି ପଛେ ମଲେ ମରିବି'—ଏହା କେବଳ ଜଣେ ସତ୍ୟାଗ୍ରହୀର ଜୀବନ-ଦୀକ୍ଷା ନୁହେଁ, ମୋର ଜୀବନ-ଦୀକ୍ଷା । ନିଜେ ଯାହା ଜୀବନରେ କରିପାରିନାହିଁ, ଅନ୍ୟକୁ କରିବାକୁ ଉପଦେଶ ଦେଇନାହିଁ । ଡାକ୍ତର ଆଉ ଶିକ୍ଷକ—ଜଣେ ରୋଗ ଉପଶମ କରେ, ଆଉ ଜଣେ ରୋଗ ନିବାରଣ କରେ । ଛାତ୍ରମାନଙ୍କ ମନରେ ରୋଗ କୀପରି ନ ପଶିବ, ଚେଷ୍ଟା କରିଆସିଛି, ସେଇ ମୋର ଆତ୍ମ-ସନ୍ତୋଷ । ଯଦି କେତୋଟି ହୃଦୟରେ ଏହା କର୍ମପ୍ରେରଣା, ଆତ୍ମନିର୍ଭରଶୀଳତା ଜାଗ୍ରତ କରେ, ତେବେ ଏହି ଶିକ୍ଷକର ଜୀବନୀଲେଖା ସାର୍ଥକ ହେବ, ଏଇ ବିଶ୍ୱାସରେ ବଳୀୟାନ୍ ହୋଇ ମୁଁ ଜୀବନୀଲେଖା ଆରମ୍ଭ କରିଥିଲି ।

ସେଭଳି ଉଲ୍ଲେଖଯୋଗ୍ୟ ସାହିତ୍ୟିକ କୃତି ମୋର କିଛି ନାହିଁ । ତରୁଣ ଜୀବନରେ କେତୋଟି ପ୍ରବନ୍ଧ, ଗଳ୍ପ ଓ କବିତା ଲେଖିଥିଲି । ତାପରେ ଶିଶୁସାହିତ୍ୟ ରଚନାରେ ମୋର ପ୍ରାଣ ଢାଳିଦେଲି । ସାରା ଜୀବନ ସେଇ ଦିଗରେ ମୋର ଶକ୍ତି ବିନିଯୋଗ କରିଆସିଛି । ବିଶ୍ୱସାହିତ୍ୟଭଣ୍ଡାରରୁ ଉପାଦେୟ ଦ୍ରବ୍ୟ ଆହରଣ କରି ପାଠ୍ୟପୁସ୍ତକକୁ ଯୁଗୋପଯୋଗୀ କରିବା ମୋର ଲକ୍ଷ୍ୟ ଥିଲା । ପାଠ୍ୟପୁସ୍ତକ ରଚନାକୁ ସର୍ଜନଶୀଳ ପ୍ରତିଭାର ଅଧୋଗତି ବୋଲି କେହି କେହି ମନେ କରିଥାନ୍ତି; କିନ୍ତୁ ଉତ୍କୃଷ୍ଟ ପ୍ରତିଭା ଏହିଭଳି ଜାତିଗଠନ କାର୍ଯ୍ୟରେ ନିୟୋଜିତ ନ ହେଲେ ପାଠ୍ୟପୁସ୍ତକ ନିତାନ୍ତ ନୀରସ ହୋଇଯାଏ, ଛାତ୍ରମାନଙ୍କ ମନ ଉପଯୁକ୍ତ ଖାଦ୍ୟସାର ଅଭାବରେ ଦୁର୍ବଳ ଓ ପୌରୁଷହୀନ ହୋଇପଡ଼େ । ଜଣେ ଶିକ୍ଷକ ଭାବରେ ସେଭଳି ପାଠ୍ୟପୁସ୍ତକର ଶୋଚନୀୟ ଅଭାବ ଅନୁଭବ କରି ମୁଁ ସେ ଦିଗରେ ବ୍ରତୀ ହୋଇଥିଲି । ସାହିତ୍ୟିକ ଯଶଲିପ୍ସାକୁ ଜଳାଞ୍ଜଳି ଦେବାକୁ ହେଲା । ନିଜକୁ କବି, ନାଟ୍ୟକାର ବା ପ୍ରାବନ୍ଧିକ ଭାବରେ ଗଢ଼ି ନ ଥିଲେ ବି ଶତ ଶତ କିଶୋର ଜୀବନକୁ ସରସ, ସୁନ୍ଦର, ସାହସିକ, ସତ୍ୟାମୋଦୀ ଓ ତ୍ୟାଗପ୍ରବଣ କରିବା ଲାଗି ଚେଷ୍ଟା କରିଛି । ଏଥିରେ ମଧ୍ୟ ମୋର ପରମ ସନ୍ତୋଷ ।

ସରକାର ପାଠ୍ୟପୁସ୍ତକ ରଚନାର ଦାୟିତ୍ୱ ହାତକୁ ନେଲା ପରେ ମୋର ଭାର ଲଘୁତର ହୋଇଛି । ସେଇ ସବୁ ପାଠ୍ୟରଚନାର ପୀଡ଼ିକାରେ ରହି ଭାବର ଯେଉଁସବୁ ଖିଅ ଛିଡ଼ି ଯାଇଥିଲା, ପୁଣି ଥରେ ସେ ସବୁକୁ ଗଣ୍ଠେଇବା ଲାଗି ଚେଷ୍ଟା କରୁଛି । ହୁଏ ତ ଶେଷ ଜୀବନ ମୋର ସାହିତ୍ୟସେବାରେ ହିଁ କଟିବ ।

ସେ ଭାବରେ ବି ଆତ୍ମଜୀବନୀ ଲେଖିବାର ପ୍ରେରଣା ଆସିଲା । ଶିକ୍ଷକ ଭାବରେ ଯାହା କଲି, ଜଣେ ରାଜନୀତିକ ଭାବରେ ତାଠାରୁ ଆଉ ଅଧିକ କଣ କରିଥାନ୍ତି ?

ମନ ଭିତରେ ଏହିପରି ଆଲୋଚନା କରି ପାଞ୍ଚ ଛଅ ପୃଷ୍ଠା ଯାଏ ଏକା ଦମ୍‌କେ ଲେଖିଗଲି; କିନ୍ତୁ ମନ ପୁଣି ପଛେଇଲା । ସେ ଲେଖା ସେଇଠି ବନ୍ଦ ରହିଲା, ଦିନେ ନୁହେଁ କି ମାସେ ନୁହେଁ, ଛଅ ବର୍ଷ । ଆଉ ଦିନେ ସେ କାଗଜକୁ ଖୋଜିଲି ନାହିଁ କି ସେ ବିଷୟ ମୁଣ୍ଡରେ ପୂରେଇଲି ନାହିଁ ।

୧୯୬୮ ମସିହା ମଧ୍ୟଭାଗରେ ଓଡ଼ିଶା ମାଧ୍ୟମିକ ଶିକ୍ଷାବୋର୍ଡ଼ ଅଧୀନସ୍ଥ ଏକ ସମ୍ପାଦକମଣ୍ଡଳୀର ବୈଠକରେ ଡକ୍ଟର କୁଞ୍ଜବିହାରୀ ଦାସଙ୍କ ସାଙ୍ଗରେ କାର୍ଯ୍ୟ କରିବାର ସୁଯୋଗ ମୋତେ ମିଳିଲା । କଥାପ୍ରସଙ୍ଗରେ ଦିନେ ସେ ମହାଶୟ ମୋତେ ଆତ୍ମଜୀବନୀ ଲେଖିବାକୁ କହିଲେ । ତାଙ୍କୁ ପୂର୍ବ କଥା ସବୁ ଜଣାଇଲି । ସେ କିନ୍ତୁ ଛାଡ଼ିଲେ ନାହିଁ, ବାରମ୍ବାର ଜିଗର କଲେ । ବାଧ୍ୟ ହୋଇ ସେ ଅଧା ଲେଖାକୁ ପୂର୍ଣ୍ଣ କରିବି ବୋଲି ସେଦିନ ତାଙ୍କୁ କହି ଆସିଲି ।

ଅଧା ଲେଖା ତ ନୁହେଁ, ମାତ୍ର ମୂଠାଏ ପଣ୍ଡ଼ା ଦେବା ଅନୁକୂଳ ହୋଇଥିଲା ମାତ୍ର । ଯାହାହେଉ, ସେଦିନ ଗଲା । ତା ପରଦିନ କମିଟି ବୈଠକରେ ତାଙ୍କ ସଙ୍ଗେ ଦେଖା ହେବା ମାତ୍ରେ ତାଙ୍କର ପ୍ରଥମ ପ୍ରଶ୍ନ, "କଣ—ଆରମ୍ଭ କଲେ ?" ଆରମ୍ଭ ତ କରି ନ ଥିଲି, ଉତ୍ତର ବି ପ୍ରସ୍ତୁତ ନ ଥିଲା ! ହଠାତ୍ କହିଦେଲି, "ହଁ" ।

ଦିନ ପରେ ଦିନ ସଭାର ବୈଠକ ବସୁଥାଏ । ସେ ପ୍ରତିଦିନ ଏମିତି ପଚାରନ୍ତି, ମୁଁ 'ହଁ' କହି ନିସ୍ତୃତି ପାଏ । ତିନି ଚାରିଦିନ ପରେ ଭାବିଲି, ସତ କଥା କହିଦେବି । ଏ ମହାଶୟଙ୍କୁ ଭୁଲେଇବା ସହଜ ନୁହେଁ । କହିଲି, "ବହୁତ କାମ ପଡ଼ୁଛି, ବେଳ ହେଉନାହିଁ ଲେଖିବାକୁ । ଆପଣଙ୍କୁ ଏତେଦିନ ମିଛ କହି ଆସିଥିଲି ।"

କୃଷ୍ଣବାବୁ ଛାଡ଼ିବା ଲୋକ ନୁହନ୍ତି—ନିଜ ଜୀବନରୁନଜିର ଦେଖାଇ କହିଲେ, "ଯେତେ କାମ ଥିଲେ ବି ପ୍ରତିଦିନ ନିୟମ କରି କିଛି କିଛି ଲେଖିଲେ ନିଶ୍ଚୟ ହେବ । ନାନାଦି ଜଞ୍ଜାଳ ଓ ମାନସିକ ଅଶାନ୍ତି ଭିତରେ ପାଞ୍ଚ ଛଅ ମାସ ଭିତରେ ମୁଁ ତ ପୁଣି ଆଠଶହ ପୃଷ୍ଠାର ମୋ ବିଦେଶଭ୍ରମଣ ଅନୁଭୂତିକୁ ଲେଖିପାରିଛି ।"

ତାଙ୍କଠାରୁ ପ୍ରେରଣା ପାଇ ପ୍ରତିଶ୍ରୁତି ଦେଲି, "ଏଥର ନିଶ୍ଚୟ ଲେଖିବି ।" ସୁନାପିଲାଟି ପରି ସେହିଦିନଠାରୁ କାମରେ ଲାଗିଗଲି । ଆଉ ତାଙ୍କୁ ମିଛ କହିବା ଆବଶ୍ୟକ ପଡ଼ିଲା ନାହିଁ ।

ମଝିରେ ମଝିରେ ସେ ଖବର ନେଉଥାନ୍ତି । କିଛିଦିନ ପରେ ପୁଣି ପଚାରିଲେ, "ଛାପିବାକୁ ହୋଇଗଲାଣି ?"

କି ଅଦ୍ଭୁତ ପ୍ରଶ୍ନ ! ମୁଁ ମଲାପରେ ସିନା ମୋ ଆତ୍ମଜୀବନୀ ଛାପା ହେବ ? ଜୀଇଁ ଥାଉଁ ଥାଉଁ······ !

କୃଷ୍ଣବାବୁ ମୋର ଭ୍ରାନ୍ତ ଧାରଣା ଦୂର କରିବା ପାଇଁ ନାନା ଉଦାହରଣ ଦେଲେ । ତାଙ୍କ କଥା ମୋ ମନକୁ ପାଇଲା । ବହିଟି ଛାପିବାକୁ ଦେଲି । ଆଜି ଏ ଶେଷ ଦୁଇପଦ ଲେଖିଲାବେଳେ ଯାହାଙ୍କ ପ୍ରେରଣାରେ ଏ ବହିକୁ ରୂପ ଦେଇଛି, ତାଙ୍କୁ ସର୍ବପ୍ରଥମେ ମୋ ହୃଦୟର ଗଭୀର କୃତଜ୍ଞତା ଜଣାଉଛି ।

ଦୀର୍ଘ ଜୀବନ-ପଥରେ ବହୁ ଲୋକଙ୍କ ସଂସ୍ପର୍ଶରେ ଆସିବାକୁ ହୁଏ । ତେଣୁ କେତେକ ଲୋକଙ୍କ ବିଷୟରେ ଏ ବହିରେ କହିବାକୁ ବାଧ୍ୟ ହୋଇଛି । ସେମାନଙ୍କ ମଧ୍ୟରୁ କେହି କେହି ଜୀବିତ ଅଛନ୍ତି, କେହି ବା ସଂସାରରୁ ବିଦାୟ ନେଇଗଲେଣି । ଅତୀତର ଅସ୍ପଷ୍ଟ ସ୍ମୃତିକୁ ଲିପିବଦ୍ଧ କଲାବେଳେ କେଉଁଠି କେମିତି ଭୁଲ ରହିଥାଇ-ପାରେ, କିନ୍ତୁ କୌଣସିଟା ଇଚ୍ଛାକୃତ ବା ଉଦ୍ଦେଶ୍ୟମୂଳକ ନୁହେଁ । ମୋର ଏ ବିବରଣୀ ପଢ଼ି ଯଦି କେହି କ୍ଷୁଣ୍ଣ ହୁଅନ୍ତି, ତାଙ୍କ ପାଖରେ ମୁଁ କ୍ଷମା ମାଗି ନେଉଛି ।

ଦୋଳପୂର୍ଣ୍ଣିମା
ତା ୪ । ୩ । ୧୯୭୧

ରାମକୃଷ୍ଣ ନନ୍ଦ

# ନୂତନ ସଂସ୍କରଣର ଭୂମିକା

ଏ ପୁସ୍ତକର ପ୍ରଥମ ଚଉଦଟି ଅଧ୍ୟାୟକୁ ନେଇ ପ୍ରଥମ ସଂସ୍କରଣ ପ୍ରକାଶ ପାଇଥିଲା ୧୯୭୯ ମସିହାରେ । ଯେଉଁମାନଙ୍କ ପ୍ରରୋଚନାରେ ବହିଟି ପ୍ରଥମେ ପ୍ରକାଶ ପାଇଥିଲା, ପୁସ୍ତକର 'ମୂଳ କଥା'ରେ ମୁଁ ତାହା ଉଲ୍ଲେଖ କରିଛି । ସେତେବେଳେ ମୋତେ ୭୯ ବର୍ଷ ହୋଇଥିଲା । ପଦ୍ମଶ୍ରୀ କାଳିନ୍ଦୀଚରଣ ପାଣିଗ୍ରାହୀଙ୍କୁ ବହିଟି ଦେଲାବେଳେ କହିଥିଲି, "ମୁଁ ଯଦି ଆଉ କିଛି ବର୍ଷ ବଞ୍ଚିରହେ, ତେବେ ତ କେତେକ ଘଟଣା ଏଥିରୁ ବାଦ୍ ପଡ଼ିଯିବ ।" ସେ ହସି ହସି ଉତ୍ତର ଦେଲେ, "ଆତ୍ମଜୀବନୀ ତ ସବୁବେଳେ ଅସମ୍ପୂର୍ଣ୍ଣ । ତେବେ ଈଶ୍ୱର କଲେ ଆପଣ ଦ୍ୱିତୀୟ ମୁଦ୍ରଣରେ ଏଥିରେ ଆଉ କିଛି ଯୋଗ କରିପାରିବେ ।" ତାଙ୍କ ଉକ୍ତି ପୂର୍ଣ୍ଣ ହେଲା । ଦୟାମୟଙ୍କ ଅପାର କରୁଣାରୁ ମୁଁ ଆଜିପର୍ଯ୍ୟନ୍ତ ବଞ୍ଚିରହି ସେଥିରେ ଆଉ କୋଡ଼ିଏ ବର୍ଷର ବିବରଣୀ ଯୋଗ କରିପାରିଛି ।

ପ୍ରଥମ ବହିଟି ପଢ଼ି ଯେଉଁମାନେ ମୋତେ ଚିଠି ଲେଖି ମତାମତ ଜଣାଇଥିଲେ, ଏ ପୁସ୍ତକର ଶେଷରେ ମୁଁ ତାର ସୂଚନା ଦେଇଛି । ସେମାନେ ମୋର ଧନ୍ୟବାଦାର୍ହ ।

୧୯୮୭ ସେପ୍ଟେମ୍ବର ୧୧ ତାରିଖ 'ସମ୍ବାଦ' ପତ୍ରିକାରେ 'ଜୀବନ ତରଙ୍ଗ' ପ୍ରଥମ ଭାଗର ଯେଉଁ ଦୀର୍ଘ ସମୀକ୍ଷା ପ୍ରକାଶ ପାଇଥିଲା, ସେଥିରୁ ଦୁଇ ଗୋଟି ବାକ୍ୟ ଏଠାରେ ଉଦ୍ଧାର କରୁଛି ।

"ଶ୍ରୀ ରାମକୃଷ୍ଣ ନନ୍ଦଙ୍କର 'ଜୀବନ-ତରଙ୍ଗ' ତାଙ୍କ ନିଜ ଜୀବନର ଏକ ଖଣ୍ଡିତ ନକ୍ସା । ଖଣ୍ଡିତ ଏହି ଦୃଷ୍ଟିରୁ ଯେ ୧୯୦୭ରୁ ୧୯୭[illegible]-ଏଇ ପର୍ଯ୍ୟନ୍ତ କେବଳ ଏହି ଆତ୍ମଚରିତର ସୀମା ଓ ପରିସୀମା । ରାମକୃଷ୍ଣବାବୁଙ୍କ ଜୀବନ ପଞ୍ଜିର ପୃଷ୍ଠା ଓ ପରିସର କିନ୍ତୁ ଆହୁରି ବିସ୍ତୃତ, ଆହୁରି ସ୍ଫୀତ, ଆହୁରି ପ୍ରଲମ୍ବିତ । ......ତେଣୁ ଗୋଟିଏ ଦୃଷ୍ଟିରୁ ଏହି ଆତ୍ମଜୀବନୀଟି ସଂକ୍ଷିପ୍ତ ଓ ସ୍ୱଳ୍ପପରିମିତ ହେଲେହେଁ ଅନ୍ଧାର ଭିତରେ ଭୁଆଁ ବୁଲୁଥିବା ବହୁ ହତାଶ ଓ ନିରାଶଙ୍କ ପାଇଁ ଏହା ଏକ ଉଜ୍ଜ୍ୱଳ ବତୀଘର, ପ୍ରତ୍ୟୟ ଓ ପ୍ରେରଣାର ଏକ ଅଖଣ୍ଡ ଦୀପସ୍ତମ୍ଭ ।"

—ତୀର୍ଥଙ୍କର

ଏହି ଲେଖାଟି ନୂତନ ସଂସ୍କରଣର କାର୍ଯ୍ୟକୁ ତ୍ୱରାନ୍ୱିତ କରିବାରେ ସାହାଯ୍ୟ କରିଥିବାରୁ ମୁଁ ସମୀକ୍ଷକଙ୍କୁ ମୋର ଆନ୍ତରିକ କୃତଜ୍ଞତା ଜଣାଉଛି ।

— ଲେଖକ

ତା ୪ । ୫ । ୧୯୯୯

# ସୂଚୀ



ମୋର ସ୍ୱର୍ଗତ ପିତାମହ ବୃନ୍ଦାବନ ନନ୍ଦ



ମୋର ସ୍ୱର୍ଗତ ଶ୍ୱଶୁର ବଳରାମ ମିଶ୍ର

# ପ୍ରସ୍ତୁତି—

**ଶିକ୍ଷା :**

ବିଦ୍ୟାଳୟ

ଅସହଯୋଗ ଆନ୍ଦୋଳନ

କଲେଜ

ସଂକଳ୍ପ ଅନୁସରି ତେଜିଲୁ ଗିରିଦରୀ
ଉଚ୍ଛଳି ପଡ଼ିଲୁ ବାହାରେ,
ବିଶାଳ ଶିଳାରାଶି ଭେଟିଲୁ ବାଟେ ଆସି
ରୁଦ୍ଧ ତୋ ପଥ ନୀ ବାଧାରେ !

ଚହୁଁଲୁ ଗଗନେ ଅନାଇ
ହୃଦୟେ କି ଅଭୟ ପାଇ
ଗର୍ଜି ଅତି ପ୍ରଚଣ୍ଡେ ତାଡ଼ିଣ ଶିଳାଖଣ୍ଡେ
ତା ମଝେ ଗଲୁ ତୁ ଫୋଡ଼ାଇ !

[ 'ନଦୀପ୍ରତି'—ରାଓ ]

ମୁଁ ଯେଉଁ ଘରଟିରେ ଜନ୍ମ ହୋଇଥିଲି, ଏବେ ତାର କୌଣସି ଚିହ୍ନବର୍ଣ୍ଣ ନାହିଁ । ୧୯୭୭ ମସିହାର କରାଳ ବନ୍ୟା ତାକୁ ମାଟିରେ ମିଶାଇ ଦେଇ ଯାଇଛି । ସେଠାରେ ବର୍ତ୍ତମାନ ରହିଛି କେବଳ ଗୋଟିଏ ମାଟିର ଢିପ । ସେହି ମାଟିକୁଦ ଉପରେ ବୁଲା କୁକୁର ଆଜିକାଲି ଖରାବେଳେ ଜିଭ କାଢ଼ି ଧକାଉଥିବାର ଦେଖାଯାଏ ।

ବଗିଚା ବଣ ଭିତରେ ସେଇ ଟିକିକ ଥାନ ଥିଲା ମୋର ଶୈଶବର ସ୍ୱପ୍ନପୁରୀ । ମାଟିର ଘର, କେଉଁଠି ଗୋଟିଏ ହେଲେ ଝରକା ନ ଥାଏ । ଚାଳରେ ଅଙ୍କାବଙ୍କା କଣ୍ଟା ବାଉଁଶର ରୁଅ । ଓଳି ପଟକୁ ଥିବା ସେଇ ବାଉଁଶର ନଳା ଭିତରେ ଚେମେଣି ଚଢ଼େଇ ବସା ବାନ୍ଧିଥାନ୍ତି, ଡମଣା ସାପ ମୂଷା ଖାଇବା ଲାଗି ଥରେ ଥରେ ସେ ଚାଳରେ ପଶି ପରିକ୍ରମା କରେ । ବର୍ଷା ବେଳେ ସେ ଚାଳରୁ କସରା ପାଣିର ସମାନ୍ତରାଳ ଧାର ଗଡ଼ି ଚାଲିଥାଏ, ଅଗଣାରେ ପାଣିଫୋଟକାସବୁ ପହଁରିବାର କରନ୍ତି । ଯେତେ ଗୋଡ଼ ଚପି ଚପି ଚାଲିଲେ ବି କଚଡ଼ା ଖାଇବାକୁ ହୁଏ । ଶୀତଦିନ ସଂଧ୍ୟାରେ ସେହିଠାରେ ଚୁଲିମୁଣ୍ଡେ ବସି ବୁଢ଼ୀମା ଓ ପିଉସୀମାନେ ଆମକୁ ଭୂତପ୍ରେତ ଓ ରଜାପୁଅର କାହାଣୀ ଶୁଣାନ୍ତି, ଗ୍ରୀଷ୍ମ ରାତିରେ ସେଇ ଅଗଣାରେ ଖଜୁରୀ ପଟିରେ ଶୋଇ ଶୋଇ ମେଘ ଫାଙ୍କରେ ଆମେ ଜହ୍ନମାମୁର ଲୁଚକାଳି ଦେଖୁ । କେତେ ଯେ ପୁନେଇଁ ପରବ, ପିଠାପଣା, ହସକାନ୍ଦ, ସ୍ନେହଶରଧା, ଅଳିଅଝଟର ମଧୁବୋଳା ସ୍ମୃତି ସେ ଶ୍ରେଷ୍ଠ ଘରଖଣ୍ଡିକରେ ଜଡ଼ିତ ଅଛି, ତାର ଇୟତ୍ତା ନାହିଁ । ସେଇ ଘରୁ ଗୋଡ଼ କାଢ଼ି ଦୂର କାଗାକୁ ପଢ଼ିବାକୁ ଗଲାବେଳେ ସବୁଥର ଆଖିରୁ ଝରିପଡ଼େ ଧାର ଧାର ଲୁହ, ଛୁଟି ପରେ ସେଇ ଘରେ ଆସି ପାଦ ଦେଲାମାତ୍ରେ ପ୍ରାଣ ପୁଣି ଅପୂର୍ବ ପୁଲକରେ ଭରିଯାଏ । ସେଇ ମାଟି ଚାଳର ଘର ଖଣ୍ଡି ଏ ଜନ୍ମରେ ଆଉ ଦେଖିବାକୁ ପାଇବି ନାହିଁ । ଧରଣୀ ମାଆର ବୁକୁ ଉପରେ ସେ ଚିରକାଳ ପାଇଁ ନିଜକୁ ହଜାଇ ଦେଇଛି ।

ଅତୀତ ତ ସବୁବେଳେ ଅସ୍ପଷ୍ଟ; ତେବେ ବିସ୍ମୃତିର ପରଦାଟାକୁ ଯେତିକି କଥା ଉଦ୍ଧାର କରି ପାରିବି, ଲେଖିବି । ମୋ ନନା ଓ ବୋଉ (ପିତା ଓ ମାତା) ଯେଉଁମାନେ ମୋତେ ଜନ୍ମ ଦେଇଥିଲେ ଏବଂ ବଞ୍ଚିଥିଲେ ଯେଉଁମାନେ ମୋ ପିଲାଦିନର କଥା କହନ୍ତେ, ସେମାନେ ମଧ୍ୟ ବହୁଦିନୁ ମାଟିରେ ମିଶିଗଲେଣି । ମୋତେ ୧୪ ବର୍ଷ ହୋଇଥିଲାବେଳେ ନନା ମରିଗଲେ, କିନ୍ତୁ ବୋଉ ତା ଜୀବନର ଦାରୁଣ ଦୁଃଖଭାର ଘେନି ବହିରହିଥିଲା ଅନେକ ଦିନ ମୋ ପିଲାଦିନର ଘଟଣା ତାଠାରୁ କେତେଥର ଶୁଣିଛି । ମୁଁ ଜାଣେ ନାହିଁ, ସେ ସବୁ ଶୁଣିବାକୁ କାହାକୁ ସୁଖ ଲାଗିବ । ତେବେ ମୋ ପିଲାମାନେ ସେଥିରୁ କଥଞ୍ଚିତ୍ ଆନନ୍ଦ ପାଇବେ, ଅନ୍ତତଃ ଏତିକି ଭରସା ମୋର ରହିଛି ।

କଟକ ଜିଲ୍ଲା ଦକ୍ଷିଣ ସୀମାରେ ଫୁଲନଖରା-ନିଆଳି ରାସ୍ତାର ୧୭ କିଲୋମିଟରଠାରେ ବାଢେଇ ଗ୍ରାମ । ଜଙ୍ଗଲିଆ ଗାଁଟିଭିତରେ ଘରଗୁଡ଼ିକ ବୁଦ-ବୁଦକିଆ ହୋଇ ରହିଛି । କେବଳ କରଣଙ୍କୁ ଛାଡ଼ିଦେଲେ ଅନ୍ୟାନ୍ୟ ଅନେକ ଜାତିର ଲୋକେ ଏଠାରେ ବାସ କରନ୍ତି । ଗାଁର ପଶ୍ଚିମ ପ୍ରାନ୍ତରେ ଆମ ଘର । ମୋର ପିତାମହ (ବାପା) ବୃନ୍ଦାବନ ନନ୍ଦ ଗାଁର ଜଣେ ମୁଖିଆ ଲୋକ ଥିଲେ । ତାଙ୍କର ଉଚ୍ଚଶିକ୍ଷା ନ ଥିଲେହେଁ କଟକ ନର୍ମାଲ ସ୍କୁଲରୁ ସେ ଦକ୍ଷତା ସହ ଉତ୍ତୀର୍ଣ୍ଣ ହୋଇଥିଲେ । ତାଙ୍କ ସାର୍ଟିଫିକେଟ୍‌ରେ ତତ୍‌କାଳୀନ ସ୍କୁଲସମୂହର ଇନସ୍‌ପେକ୍ଟର କବିବର ରାଧାନାଥଙ୍କ ସ୍ୱାକ୍ଷର ଥିବାରୁ ମୁଁ ତାହାକୁ ଆଜିପର୍ଯ୍ୟନ୍ତ ଯତ୍ନରେ ସାଇତି ରଖିଛି । ବାପା ବିଚକ୍ଷଣ ବୁଦ୍ଧିମାନ୍ ଥିଲେ । ତାଙ୍କ ପିତା ବିଶ୍ୱନାଥ ନନ୍ଦ ବୌଦରେ ଶିକ୍ଷକତା କରୁଥିଲେ ବୋଲି ଶୁଣିଛି । ସେ ଘୋଡ଼ାରେ ଚଢ଼ି ସେଠାକୁ ଯିବାଆସିବା କରୁଥିଲେ । ଆମେ ଅବଶ୍ୟ ତାଙ୍କ ଘୋଡ଼ାକୁ ଦେଖିନାହୁଁ, କିନ୍ତୁ ଆମ ପିଲାଦିନେ ଗୋଟିଏ ବେତପେଡ଼ିରେ ଘୋଡ଼ା କରଡ଼ା ଓ ଅନ୍ୟାନ୍ୟ ସାଜସରଞ୍ଜାମ ସାଇତା ହୋଇ ରହିଥିବାର ଦେଖିଛୁ । ବାପା ଧନୀ ଘରର ସନ୍ତାନ ନ ଥିଲେହେଁ ନିଜ ବୁଦ୍ଧି ଓ ଅଧ୍ୟବସାୟବଳରେ ଜମିଦାରୀ, ମକଦମି ହସ୍ତକରି ଦଅଁ ଦେଉଳ, ଖମାର, ବାଗ-ବଗିଚା, ସବାରି, ପାଲିଙ୍କି, ନାଟ ଓ ସଙ୍ଗୀତଦଳ ପ୍ରଭୃତି ନାନା ବୈଷୟିକ ଆଡ଼ମ୍ବରରେ ବେଷ୍ଟିତ ହୋଇ ରହିଥିଲେ

ମୋର ପିତା ମଧୁସୂଦନ ନନ୍ଦ ତାଙ୍କର ଏକମାତ୍ର ପୁତ୍ର । ନନା କଟକ ଟାଉନ୍ ସ୍କୁଲରେ ମାଟ୍ରିକ ପଢ଼ିଥିଲେ, ମାତ୍ର ପଢ଼ା ଶେଷ କରି ନ ଥିଲେ । ଅଧାରୁ କାହିଁକି ସେ ପାଠପଢ଼ା ଛାଡ଼ିଦେଲେ ଜାଣିବାର ଉପାୟ ନାହିଁ, ତେବେ ଅନୁମାନ ହୁଏ ସେ ବାପମାଆଙ୍କର ଗୋଟିଏ ପୁଅ ଥିବାରୁ ଏବଂ ବାପା ଇଂରାଜି ଶିକ୍ଷା ପ୍ରତି ବୀତଶ୍ରଦ୍ଧ ଥିବାରୁ ନନାଙ୍କୁ ମଝିରୁ ପାଠପଢ଼ା ଛାଡ଼ିବାକୁ ହୋଇଥିଲା ।

ମୋ ଶୈଶବର ଗୋଟିଏ କୌତୁହଳପ୍ରଦ ଘଟଣା ଏଠାରେ କହିବି । ମୋର ଜଣେ ପିଉସୀଙ୍କର ବାହାଘର ହେଉଥାଏ । ଶୀତ ଦିନ । ବୋଉ ମୋତେ କୋଳରେ

ଧରି କ୍ଷୀର ହାଣ୍ଡି ବସିଥିବା ଏକ ଚୁଲୀ ମୁହଁ ପାଖେ ବସିଥାଏ । ଏହି ସମୟରେ କ୍ଷୀର ହାଣ୍ଡିଟି ଫାଟିଗଲା । ଚୁଲୀମୁହଁବାଟେ ନିଆଁ ଧାସ ଓ ପାଉଁଶ ଚମକ ଆସିବାରୁ ମୋତେ ରକ୍ଷା କରିବାପାଇଁ ବୋଉ ପଛକୁ ଝୁଙ୍କିପଡ଼ି ମୋତେ ଦୂରକୁ ଗଡ଼ାଇ ଦେଲା । ମୁଁ ଗଡ଼ି ଗଡ଼ି ପିଣ୍ଡା ତଳେ ଥିବା ନଳାରେ ପଡ଼ିଲି ଏବଂ ଗୋଟିଏ ହାଣ୍ଡି ଭିତରେ ରହି ରଡ଼ି ଛାଡ଼ି ବୋଉର ଏ ନିର୍ମମ ବ୍ୟବହାରର ପ୍ରତିବାଦ ଜଣାଇଲି । ମୋର ଅଭିଯୋଗ ଶୁଣିବାକୁ ବୋଉର କିନ୍ତୁ ଫୁର୍ସତ ନ ଥିଲା । ବଡ଼ଘର ଗହଳି ଯୋଗୁଁ ନିକଟରେ ଲୋକବାକ ଅଭାବ ନ ଥିଲେ । ସମସ୍ତେ ଧାଇଁ ଆସି ବୋଉକୁ ସେଠାରୁ ଉଠାଇ ନେଇ ଅନ୍ୟ ଏକ ସ୍ଥାନରେ ଛୁଆଁବାଆଁ କରିବାକୁ ଲାଗିଲେ । ତାର ଦୁଇଟିଯାକ ଗୋଡ଼ର ପେଣ୍ଡା ଭୀଷଣ ଭାବରେ ସିଝି ଯାଇଥିଲା । ସେ ପାଟିଗୋଳ ମଧ୍ୟରେ ନଳାରେ ପଡ଼ିଥିବା ଶିଶୁର ରଡ଼ି ଶୁଭୁଛି ବା କାହାକୁ ? ମାଆକୁ ଟିକିଏ ଥୟ କଲାପରେ ଯେତେବେଳେ ତାର ଛୁଆକୁ ଖୋଜା ଚାଲିଲା, ସେ ଚୁଲୀ ଭିତରେ ଅଗ୍ନି ଦେବତାଙ୍କର ଶିକାର ହୋଇଛି ବୋଲି କେହି କେହି ଆଶଙ୍କା କଲେ । କିନ୍ତୁ ବିଧାତାଙ୍କର ବିଧାନ ଥିଲା ଅନ୍ୟ ପ୍ରକାର । ମୁଁ ନଳା ପାଣିରେ ଜୁଡ଼ୁବୁଡ଼ୁ ହୋଇ ସୁଦ୍ଧା ନିରାପଦରେ ଥିଲି । ଲୋକମାନେ ମୋତେ ସେଠାରୁ ଉଠାଇ ନେଇ ଧୂଆଁପୋଛା କରି ଶେଯରେ ଶୁଆଇଦେଲେ । ଅନେକ ଦିନ କଷ୍ଟ ଭୋଗିବା ପରେ ବୋଉର ଗୋଡ଼ ଭଲ ହେଲା । ତା ଗୋଡ଼ର ଘା' ଚିହ୍ନ ମୃତ୍ୟୁ ପର୍ଯ୍ୟନ୍ତ ସେହି ଦୁର୍ଘଟଣାର ସାକ୍ଷ୍ୟ ଦେଉଥିଲା ।

## ବିଦ୍ୟାରମ୍ଭ

ମୋ ପାଠପଢ଼ା ଆରମ୍ଭ ବେଳର ଆଉ ଏକ ଘଟଣା । ଆମ ଗାଁରେ ଗୋଟିଏ ଚାଟଶାଳୀ ଥାଏ ଏବଂ ସେଥିରେ କୃଷ୍ଣ ନାଏକ ନାମରେ ଜଣେ ଅବଧାନ୍ ଥାନ୍ତି । ତାଙ୍କର ଡାକ ନାମ 'କୁସୁନ ଅବଧାନ' । ମୋ ପୂର୍ବରୁ ମୋର ବଡ଼ ଭାଇ ବାଳକୃଷ୍ଣ ନନ୍ଦ ତାଙ୍କ ଚାଟଶାଳୀରେ ନାମ ଲେଖାଇଥାନ୍ତି । ମୁଁ ପ୍ରତିଦିନ ତାଙ୍କଠାରୁ ଅବଧାନଙ୍କ ଗୁଣଗ୍ରାମ ସମ୍ବନ୍ଧରେ କିଛି କିଛି ଶୁଣୁଥାଏ । ତା ପରେ ମୋର ଉପଯୁକ୍ତ ବୟସ ହେବାରୁ ଚାଟଶାଳୀକୁ ଯିବାର ପାଳି ପଡ଼ିଲା । ନନା ପୂର୍ବରୁ ସମସ୍ତ ବନ୍ଦୋବସ୍ତ କରିଦେଇ ନିଜେ ସେଦିନ ଘରୁ ଅନୁପସ୍ଥିତ ଥାନ୍ତି । ଅବଧାନେ ସକାଳୁ ଆସିଲେ । ମୋର ମା' (ପିତାମହୀ) ମୋତେ ତାଙ୍କ ହାତରେ ସମର୍ପି ଦେଇ କେବଳ ଏତିକି କହିଲେ ବୋଲି ମୋର ମନେ ପଡ଼ୁଛି—"ପୁଅକୁ ମାରଧର କରିବେ ନାହିଁ ।" ମୁଁ ଭାବିଥିଲି ମା' ମଧ୍ୟ ମୋ ସଙ୍ଗେ ଚାଟଶାଳୀକୁ ଯିବେ । କିନ୍ତୁ ତା ହେଲା ନାହିଁ । ଅବଧାନେ ମୋତେ ମା'ଙ୍କଠାରୁ ବିଚ୍ଛିନ୍ନ କରି କୋଳରେ ଟେକି ନେଇ ଚାଲିଗଲେ । ମୁଁ ଖୁବ୍ ପାଟିକରି କାନ୍ଦୁଥାଏ । ପ୍ରାୟ ୪୦୦ ହାତ ଯିବା ପରେ ମୋର ବିକଳ ରଡ଼ି ଶୁଣି ମା' ଆଉ ସମ୍ଭାଳି ପାରିଲେ ନାହିଁ । ଅବଧାନଙ୍କୁ ପଛରୁ ଡାକି କହିଲେ, "ଥାଉ ଥାଉ ଅବଧାନେ, କାନ୍ଦି କାନ୍ଦି ପୁଅର ପାଟି ପଡ଼ିଯିବ । ଆଜି ଥାଉ, ସେ ଆଉଦିନେ

ଚାହାଳୀକୁ ଯିବ ।" ଏହା କହି ସେ ମୋତେ କାଖ କରି ଘରକୁ ଫେରାଇ ଆଣିଲେ । ମୋ ବିଦ୍ୟାରମ୍ଭର ପ୍ରଥମ ପର୍ଯ୍ୟାୟ ଏହିପରି ଶେଷ ହେଲା । ସେଇ ଅବଧାନୀ ଭୂତ ମୋତେ ଏପରି ଗ୍ରାସ କରିଥିଲା ଯେ, ଦୁଇବର୍ଷ ପର୍ଯ୍ୟନ୍ତ ମୁଁ ନାଲିରକ୍ତ ଝାଡ଼ା ଭୋଗିଲି । ତେଣୁ ଚାହାଳୀକୁ ଯିବା ସମ୍ଭବ ହେଲା ନାହିଁ ।

ଏ ଘଟଣା ପରେ ପରେ ଆଉ ମୋ ଜୀବନର ବିଶେଷ ଉଲ୍ଲେଖଯୋଗ୍ୟ ଘଟଣା କିଛି ଘଟିଥିବାର ମୋତେ ଜଣାନାହିଁ । ଗାଁ ଭିତରେ ଥିବା ଏକ ଅସ୍ଥାୟୀ ଚାହାଳୀରେ କିଛିଦିନ ବର୍ଣ୍ଣ ପାଠପଢ଼ା ଆରମ୍ଭ କଲି । ଆମ ଗ୍ରାମ ନିକଟବର୍ତ୍ତୀ କଣ୍ଟାପଡ଼ା ନିମ୍ନ ପ୍ରାଥମିକ ବିଦ୍ୟାଳୟରେ ଏବଂ କିଛିଦିନ ପାଇଁ ନିମାପଡ଼ା ମାଇନର ସ୍କୁଲରେ ମୋର ବଡ଼ ଭାଇ ଏବଂ କକେଇଙ୍କ ସହି ମୋତେ ପ୍ରାଥମିକ ବିଦ୍ୟାଳୟର ଶିକ୍ଷା ଗ୍ରହଣ କରିବାକୁ ପଡ଼ିଥିଲା । ନିମାପଡ଼ା ଗଲାବେଳକୁ ମୋର ବୟସ ୭ ବର୍ଷ, ତେଣୁ ଏତିକିବେଳୁ ମୋର ପ୍ରବାସ ଜୀବନ ଆରମ୍ଭ ହୋଇଥିଲା । ଆଜିକାଲିକା ପିଲାଙ୍କୁ ଶୁଣିଲେ ହସ ମାଡ଼ିବ ଯେ ଆମେ ସେତେବେଳେ ଝିଅଙ୍କ ପରି ଝଡ଼ୁ, ଅନନ୍ତବ୍ରତ, ନୋଳି, ଅଣ୍ଟାସୂତା ଆଦି ଅଳଙ୍କାର ପିନ୍ଧି ସ୍କୁଲକୁ ଯାଉଥିଲୁ । ପ୍ୟାଣ୍ଟ୍, ସାର୍ଟ ପରିବର୍ତ୍ତିରେ ଝଙ୍ଗା, ଗୁଦର ବା ଗାମୁଛା ଥିଲା ଆମର ପରିଚ୍ଛଦ ।

ନିମାପଡ଼ା ମାଇନର ସ୍କୁଲରେ ନିମ୍ନ ପ୍ରାଇମେରୀ ପାଠ ପଢୁଥିବାବେଳେ ମୋର ଯାହା କିଛି ଅନୁଭୂତି ହୋଇଥିଲା, ତାହା କେବଳ ସ୍ୱପ୍ନର ଘଟଣା ପରି ମନେ ଅଛି । ସାତ ଆଠ ବର୍ଷ ବୟସରେ ମୁଁ ସେଠାରେ ପଢୁଥିଲି । ମୁଁ, ଭାଇନା ଓ କକେଇ ଗୋଟିଏ ସ୍ୱତନ୍ତ୍ର ବସା କରି ରହୁଥାଉଁ । ଆମର ତତ୍ତ୍ୱ ନେବାପାଇଁ ଏବଂ ଆମକୁ ରାନ୍ଧି ଦେବାପାଇଁ ଆମ ଗ୍ରାମର ଜଣେ ସମ୍ପର୍କୀୟ ଲୋକ ନିଯୁକ୍ତ ଥାନ୍ତି । କୁଶଭଦ୍ରା ନଦୀକୁ ଗାଧୋଇ ଗଲାବେଳେ ଅମେ ରାଟ୍‌ସିଂହଙ୍କ ନଅର ଦେଖୁ । ସେଠାରେ ବେଳେ ବେଳେ ତେଲିଙ୍ଗି ବାଜା ବାଜୁଥାଏ । କାହିଁକି ବାଜୁଥାଏ ଅବଶ୍ୟ ଜାଣେନା, କିନ୍ତୁ ବାଜୁଥିବାର ଶୁଣିଛୁ ।

ନିମାପଡ଼ାରେ କିଅଣ ଅସୁବିଧା ହେଲା କେଜାଣି, ନନା ଆମକୁ ପୁଣି ଗ୍ରାମକୁ ଫେରି ଆଣିଲେ । ଆମେ ତିନିଜଣ, କକେଇ, ଭାଇନା ଓ ମୁଁ, କିଛିଦିନ ପାଇଁ ନିକଟସ୍ଥ କଣ୍ଟାପଡ଼ା ନିମ୍ନ ପ୍ରାଥମିକ ସ୍କୁଲରେ ନାମ ଲେଖାଇ ପଢ଼ିଲୁ । ସେତେବେଳେ ଆମ ଗ୍ରାମର ଗୋବିନ୍ଦ ନନ୍ଦ ସେ ସ୍କୁଲରେ ଶିକ୍ଷକତା କରୁଥାନ୍ତି । ଆମେ ତାଙ୍କର ସଙ୍ଗରେ ସ୍କୁଲକୁ ଯାଉ । ଦିନେ ଦିନେ କିଛି ଅସୁବିଧା ହେଲେ ଆମକୁ ଏକୁଟିଆ ଯିବାକୁ ପଡ଼େ । ସଡ଼କ ବାଟ, ତେଣୁ ସକାଳେ ଗଲାବେଳେ ରାସ୍ତା କଡ଼ରେ ବିଲୁଆ ଓ ମାଙ୍କଡ଼ମାନଙ୍କୁ ଦେଖି ଡର ମାଡ଼େ । ପାହାନ୍ତି ଅନ୍ଧାରରେ ଥରେ ଗୋଟିଏ ପାଗଳାକୁ ଗଛମୂଳେ ଦେଖି ବିଶେଷ ଭୟ ପାଇଥିଲୁ । ସେ ବୟସରେ ଭୂତପ୍ରେତ-ମାନଙ୍କ ଦୌରାତ୍ମ୍ୟ ବିଷୟରେ ବୁଢ଼ୀ ମା, ପିଉସୀ ଓ ସାଙ୍ଗସାଥୀମାନଙ୍କଠାରୁ ବହୁତ

ଗପ ଶୁଣିବାକୁ ମିଳୁଥିଲା ଏବଂ ସେ ସବୁର ସତ୍ୟତାକୁ ଅବିଶ୍ୱାସ କରିବାର କୌଣସି କାରଣ ନ ଥିଲା ।

କିଛିଦିନ ପରେ ଆମ ଗାଁ ସ୍କୁଲକୁ ନନା ଆମକୁ ନେଇ ଆସିଲେ । ସେଠାରେ ସେ ଥାଆନ୍ତି ଶିକ୍ଷକ । ପଢ଼ା ଶେଷ କରି ନିମ୍ନ ପ୍ରାଥମିକ ବୃତ୍ତି ପରୀକ୍ଷା ଦେବାକୁ ମୁଁ ଜଗତ୍‌ସିଂହପୁର ଯାଇଥିଲି । ଆମ ଗ୍ରାମର ଜୟକୃଷ୍ଣ ନନ୍ଦ ସେଠାରେ ହେଡ଼ପଣ୍ଡିତ ଥାଆନ୍ତି । ଦିନେ ମୁଁ—ଅଙ୍କ କି ମାନସାଙ୍କ ପରୀକ୍ଷା ଠିକ୍ ମନେ ନାହିଁ—ଗୋଟିଏ ଭୁଲ ଉତ୍ତର ଦେଇ ଆସି ନନାଙ୍କ ପାଖରେ କାନ୍ଦି ପକାଇଲି । ନନା ମୋତେ ସାନ୍ତ୍ୱନା ଦେଇ ଜଳଖିଆ ଖାଇବାକୁ ଡାକିନେଲେ । ଏ କଥା ଲେଖିଲାବେଳେ ସେତେବେଳର ସ୍କୁଲ ସବ୍‌ଇନସ୍‌ପେକ୍ଟର ବାଙ୍କୀ ନିବାସୀ ଭଗବତିବାବୁଙ୍କ ନାମ ମନେ ପଡ଼ୁଛି । ସେ ଜଣେ ଉତ୍ତମ ଲୋକ ଥିଲେ ବୋଲି ନନା କହନ୍ତି । ସ୍କୁଲ ପରିଦର୍ଶନରେ ଆସିଲେ ମୋ କଥା ସେ ବିଶେଷ କରି ପଚାରନ୍ତି । ମୋତେ ବୃତ୍ତି ପରୀକ୍ଷାକୁ ପଠାଇବାପାଇଁ ଏବଂ ଅଧିକ ପଢ଼ାଇବାପାଇଁ ସେ ନନାଙ୍କୁ ପରାମର୍ଶ ଦେଇଥିଲେ । ଏକଥା ଶୁଣି ମୁଁ ମଧ୍ୟ ସେ ସୁକୁମାର ବୟସରୁ ଅଧିକ ପଢ଼ିବାପାଇଁ ଆଗ୍ରହାନ୍ୱିତ ହୋଇ ପଡ଼ୁଥିଲି ।

ଏହି ସମୟର ଗୋଟିଏ ଦୁଇଟି କଥା ପାହାନ୍ତା ସ୍ୱପ୍ନ ପରି ମନରେ ଲାଖି ରହିଛି । ଗାଁରେ ବନ୍ଦୋବସ୍ତ କ୍ୟାମ୍ପ ପଡ଼ିଥାଏ । ଅମିନମାନେ ଆମ ଘରକୁ ଯିବା-ଆସିବା କରୁଥାନ୍ତି । ବୋଧହୁଏ ସେମାନଙ୍କ ଭିତରୁ କେହି ଜଣେ ନନ୍ଦକିଶୋର ବଳଙ୍କ ନାନାବାୟା ଗୀତ ବହିଖଣ୍ଡେ ଆଣି ଆମ ହାତରେ ଦେଲେ । ସେ ବହିଖଣ୍ଡି ମୋ ମନରେ ଗଭୀର ରେଖାପାତ କରିଥିଲା । ଏକେ ତ ମଫସଲ ଗାଁ, ଦ୍ୱିତୀୟରେ ସେକାଳରେ ପିଲାଙ୍କ ପାଇଁ ଏତେ ଛପା ବହି ନ ଥିଲା । ତାଳପତ୍ର ପୋଥିର ପ୍ରଭାବ ସମ୍ପୂର୍ଣ୍ଣ ଲିଭି ନ ଥିଲା । ଆଉ ଖଣ୍ଡେ ଶ୍ରେଷ୍ଠ ପୁରୁଣା ବହି ନନାଙ୍କ କାଗଜପତ୍ରରୁ ପାଇଥିଲି—କବିତାବଳୀ । ସେଥିରେ ଥିଲା କବିବର ରାଧାନାଥ ରାୟଙ୍କର ସେହି ଅମ୍ଳାନ କବିତାଟି—'ଉଠ ଉଠ ଆହେ ସମଯୋଧଗଣ, କରେ କରବାଳ ଧରି ସମରେ ।' କହିବା ବାହୁଲ୍ୟ, ସମସ୍ତ କବିତାଟି ମୋର ମୁଖସ୍ଥ ହୋଇଯାଇଥିଲା । କିଛିଦିନ ପରେ ନନା କଟକରୁ ଆଉ ଖଣ୍ଡେ ଶ୍ରେଷ୍ଠ ବହି ଆଣି ଦେଇଥିଲେ—କୃଷ୍ଣଚନ୍ଦ୍ର ସେନଗୁପ୍ତଙ୍କ 'ମୋ ବାଇଧନ' । ଚାଟଶାଳୀ ପାଠରୁ ଦୁଇଗୋଟି ଜଣାଶୁଣା ଚଉତିଶା ଗୀତ—'କମଳଲୋଚନ ଶ୍ରୀହରି, କରେଣ ଶଙ୍ଖଚକ୍ରଧାରୀ', 'କଳାକଳେବର କହ୍ନାଇ', 'କହଇ ମନ ଆରେ ମୋ ବୋଲ କର', କୋଇଲି, ଗୋପୀଭାଷା ସାଙ୍ଗକୁ ଉପରଲିଖିତ କେତୋଟି କବିତା ସେ ସୁଦୀର୍ଘ ଶୈଶବ ମଧ୍ୟରେ ମୋର ପଦ୍ୟମୟ ପ୍ରାଣକୁ ଯେଉଁ ଆହାର ଯୋଗାଇଥିଲା, ପରବର୍ତ୍ତୀ ଜୀବନରେ ମୁଁ ତାର ପ୍ରଭାବ ସ୍ପଷ୍ଟ ଉପଲବ୍ଧି କରିଛି ।

## ଭିଙ୍ଗାରପୁରରେ ପାଠପଢ଼ା (୧୯୧୫-୧୯୧୮)

ନିମ୍ନ ପ୍ରାଥମିକ ପାଠ ଶେଷ କରି ଖାଇନା ଓ କକେଇଙ୍କ ସଙ୍ଗେ ମୁଁ ଭିଙ୍ଗାରପୁର ମାଇନର ସ୍କୁଲରେ ପଢ଼ିବାକୁ ଗଲି । ମୋତେ ମାସକୁ ଦୁଇ ଟଙ୍କା କରି ନିଃ ପ୍ରାଃ ବୃତ୍ତି ମିଳିଲା । ବୋର୍ଡିଂର ଏକ ସ୍ୱତନ୍ତ୍ର ଘରେ ଆମେ ତିନିଜଣ ରହିଲୁ ।

ହେଡ୍‌ମାଷ୍ଟର ଦୀନବନ୍ଧୁ ଗିରିବଡ଼ୁ ମୋତେ Little Nanda ବୋଲି ଡାକୁଥିଲେ । ଭାବିଲେ ହସ ମାଡ଼େ ଯେ ମୁଁ ସେ ମାଇନର ସ୍କୁଲରେ ପଢ଼ୁଥିବାବେଳେ ମଧ୍ୟ କାନରେ ନୋଲି ପିନ୍ଧିଥିଲି । ଯୁଗର ସ୍ରୋତ ଏବେ କେତେ ବଦଳିଯାଇଛି ! ହାଇସ୍କୁଲରେ ଏବଂ କଲେଜରେ ପଢ଼ୁଥିବା ଝିଅମାନେ ମଧ୍ୟ ଆଜିକାଲି ନାକକାନରୁ ଆଭରଣ କାଢ଼ିଦେଲେଣି !

କିଛିଦିନ ପରେ ଶ୍ରୀ ଆର୍ତ୍ତତ୍ରାଣ ମିଶ୍ର ସ୍କୁଲର ନୂଆ ହେଡ୍‌ମାଷ୍ଟର ରୂପେ କାର୍ଯ୍ୟରେ ଯୋଗ ଦେଲେ । ସେ ରେଭେନ୍‌ସା କଲେଜର ପଦାର୍ଥବିଜ୍ଞାନ ଅଧ୍ୟାପକ ସ୍ୱର୍ଗୀୟ ନାରାୟଣ ମିଶ୍ରଙ୍କ ସାନ ଭାଇ । ତାଙ୍କର ସମୟରେ କଟକରୁ ନର୍ମାଲ ଟ୍ରେନିଂ ପାସ୍ କରିଥିବା ଜୟଦେବ ମିଶ୍ର ଆମ ସ୍କୁଲର ଦ୍ୱିତୀୟ ପଣ୍ଡିତ ରୂପେ ନିଯୁକ୍ତ ହେଲେ । ଆମେ ତାଙ୍କୁ 'ନୂଆ ପଣ୍ଡିତେ' ନାମରେ ଡାକୁଥିଲୁ । ତାଙ୍କର ସୁସ୍ଥ, ସୁଗଠିତ ଶରୀରରେ ଯୁବସୁଲଭ ତେଜ ଓ କର୍ମଠତା ପୂରି ରହିଥିଲା । ନୂଆ ହେଡ୍‌ମାଷ୍ଟର ଓ 'ନୂଆ ପଣ୍ଡିତ'ଙ୍କ ଆଗମନରେ ଛାତ୍ରମାନଙ୍କ ମଧ୍ୟରେ ନବଜୀବନର ସଞ୍ଚାର ହେଲା ପରି ଜଣାଗଲା ।

ଗଣେଶ ପୂଜା, ଶ୍ରୀପଞ୍ଚମୀ, ପୁରସ୍କାର ବିତରଣ ଆଦି ଦିବସମାନଙ୍କରେ ଛାତ୍ରମାନଙ୍କୁ ସଂଗଠିତ କରି କାର୍ଯ୍ୟ ପରିଚାଳନା କରିବାରେ ନୂଆ ପଣ୍ଡିତେ ଯେପରି ଧୁରନ୍ଧର ଥିଲେ, ରୋଗୀ ଓ ବିପନ୍ନର ସେବାକାର୍ଯ୍ୟରେ ମଧ୍ୟ ସେହିପରି ଅଗ୍ରଣୀ ଥିଲେ । ତାଙ୍କ ଉପସ୍ଥିତିରେ ଖେଳ ପଡ଼ିଆ ଆନନ୍ଦମୁଖର ହୋଇ ଉଠୁଥିଲା । ଶ୍ରେଣୀରେ ଶିକ୍ଷାଦାନ କାଳରେ ତାଙ୍କର ବହୁମୁଖୀ ପ୍ରତିଭାର ପରିଚୟ ପାଇ ଆମ୍ଭେ-ମାନେ ମୁଗ୍ଧ ହୋଇ ଯାଉଥିଲୁ । ମଧୁବାବୁଙ୍କ 'ନଦୀପ୍ରତି' କବିତା 'ଗିରିବର ନନ୍ଦିନୀ ଅଟୁ ତୁହି ତଟିନୀ...' ବା 'ତୁହି ମା ଜନମଭୂମି ପବିତ୍ର ଭାରତଭୂମି ...' ଆଦି ପଦ୍ୟ ପଢ଼ାଇଲାବେଳେ ସେ ପ୍ରଥମେ ଥରେ ସୁଲଳିତ କଣ୍ଠରେ ଉକ୍ତ କବିତାମାନଙ୍କରୁ ଦୁଇ ତିନି ପଦ ରାଗରାଗିଣୀ ଧରି କ୍ଲାସରେ ଆବୃତ୍ତି କରୁଥିଲେ । ତଦ୍ୱାରା ସେଗୁଡ଼ିକ ଅଧିକ ସରସ ଓ ହୃଦୟଗ୍ରାହୀ ହେଉଥିଲା । ଏବେ ରେଡ଼ିଓ, ଟି. ଭି. ଓ ସିନେମାରୁ ଗୀତ ଶୁଣିବାରେ ଆମ ପିଲାମାନେ ଏତେଦୂର ଅଭ୍ୟସ୍ତ ହୋଇ ପଡ଼ିଲେଣି ଯେ ଶ୍ରେଣୀରେ ଶିକ୍ଷକ ପଢ଼ାଇଲାବେଳେ ବୃତ୍ତ ଧରି କୌଣସି ପଦ୍ୟ ଆବୃତ୍ତି କଲେ ପସନ୍ଦ କରିବେ ନାହିଁ; ବରଂ ଉପହାସ କରିବେ । କେବଳ ସଙ୍ଗୀତ ନୁହେଁ, ଚିତ୍ରାଙ୍କନ ଓ କାରୁକଳାରେ ମଧ୍ୟ 'ନୂଆ ପଣ୍ଡିତ'ଙ୍କର ଅସାଧାରଣ ଦକ୍ଷତା ଥିଲା । ମୁଁ ତାଙ୍କଠାରୁ

ଯେତକ ଉତ୍ତରବିଦ୍ୟା ଶିଖିଥିଲି, ମୋର ପରବର୍ତ୍ତୀ ଜୀବନରେ ତାହା ମୋତେ ଯଥେଷ୍ଟ ସାହାଯ୍ୟ କରିଛି । ମୋର ସବୁ ବନ୍ଧୁ ଛାତ୍ର ଯେ ତାଙ୍କଠାରୁ ନାନା ଦିଗରେ ପ୍ରେରଣା ପାଇଥିବେ, ଏଥିରେ ସନ୍ଦେହ ନାହିଁ ।

ମୁଁ ଯେତେବେଳେ ମାଇନର ସ୍କୁଲର ଦ୍ୱିତୀୟ ଷ୍ଟାଣ୍ଡାର୍ଡ (ବର୍ତ୍ତମାନର ୬ଷ୍ଠ ଶ୍ରେଣୀ)କୁ ଉଠିଲି, ନନା ମୋ ବିଷୟରେ ଅଧିକ ଚିନ୍ତିତ ହୋଇ ପଡ଼ିଲେ । ଗାଁ ସ୍କୁଲରେ ଶିକ୍ଷକତା କରି ସେ ମାସକୁ ୬ଟି ଟଙ୍କା ମାତ୍ର ଦରମା ପାଉଥାନ୍ତି । ସେହି ବର୍ଷ ମୋର ଭାଇନା ଓ କକେଇ ମାଇନର ପାଠ ଶେଷ କରି ଭିଙ୍ଗାରପୁର ଛାଡ଼ିବେ । ମୋତେ ସେଠାରେ ଏକୁଟିଆ ବର୍ଷେ ପଢ଼ିବାକୁ ହେବ । ଦୁଇ ଜାଗାର ଖର୍ଚ୍ଚ ବହନ କରିବା ତାଙ୍କ ପକ୍ଷରେ ତ କଷ୍ଟକର ହେବ, ତା ଛଡ଼ା ମୋର ସେଠାରେ ରହି ମାଇନର ବୃତ୍ତି ଲାଭ କରିବାର କୌଣସି ସମ୍ଭାବନା ସେ ଦେଖୁ ନ ଥାନ୍ତି । ଏଥି ପୂର୍ବରୁ ଦୀର୍ଘକାଳ ଧରି ଭିଙ୍ଗାରପୁର ସ୍କୁଲର କୌଣସି ପିଲା ମାଇନର ବୃତ୍ତି ପାଇ ନ ଥିବାରୁ ତାଙ୍କର ଆଶଙ୍କା ଦୃଢ଼ୀଭୂତ ହୋଇଥାଏ । ଭଲ ପଢ଼ା ଦିଗରେ କଟକ ମିଡ଼ଲ ସ୍କୁଲର ସେତେବେଳେ ଖୁବ୍ ସୁନାମ ଥିଲା । ପରୀକ୍ଷା ପୂର୍ବରୁ ଅନ୍ତତଃ ଏକବର୍ଷ ସ୍କୁଲର ଛାତ୍ର ନ ଥିଲେ ସେହି ସ୍କୁଲରୁ କୌଣସି ପିଲା ବୃତ୍ତି ପରୀକ୍ଷା ପାଇଁ ମନୋନୀତ ହୋଇ ପାରିବେ ନାହିଁ ବୋଲି ନିୟମ ଥିବାରୁ ନନା ମୋତେ କଟକ ଆଣି ମିଡ଼ଲ ସ୍କୁଲରେ ଛାଡ଼ିବା ଲାଗି ବିଚାର କଲେ । ଶ୍ରୀଯୁକ୍ତ ବିଶ୍ୱମ୍ଭର ମିଶ୍ର ସେତେବେଳେ ଉକ୍ତ ସ୍କୁଲର ହେଡ଼ମାଷ୍ଟର ଥାନ୍ତି । କଥା ହେଲା, ସେ ଆଗ ମୋତେ ପରୀକ୍ଷା କରି ଦେଖିବେ ମୁଁ ଉପଯୁକ୍ତ କି ନୁହେଁ । ତାହାହିଁ ହେଲା । ମୁଁ ନନାଙ୍କ ସଙ୍ଗେ ଦୁଇ ତିନି ଦିନ ଛୁଟି ନେଇ କଟକ ଆସିଲି । ବିଶ୍ୱମ୍ଭରବାବୁ ମୋତେ ପରୀକ୍ଷା କଲେ ଏବଂ ତାଙ୍କ ସ୍କୁଲରେ ଗ୍ରହଣ କରିବା ପାଇଁ ସମ୍ମତ ହେଲେ । କଟକରୁ ଫେରିବାବେଳେ ନନା ଯେତେବେଳେ ମୋତେ ଏ ବିଷୟ କହିଲେ, ମୁଁ କାନ୍ଦ କାନ୍ଦ ହୋଇ ମୋର ଅନିଚ୍ଛା ଜଣାଇଲି । ଭିଙ୍ଗାରପୁରଠାରେ ଭାଇନା ଓ କକେଇଙ୍କୁ ଛାଡ଼ି ମୁଁ ଏକୁଟିଆ କଟକ ଆସିବାକୁ ରାଜି ହେଲି ନାହିଁ । ତେଣୁ ନନା ସେ ବିଷୟରେ ଆଉ ଜୋର୍ ଦେଲେ ନାହିଁ । ମୁଁ ଭିଙ୍ଗାରପୁର ଫେରିଗଲି ।

ମୁଁ ଷଷ୍ଠ ଶ୍ରେଣୀରେ ପଢ଼ୁଥିବାବେଳେ ଗୋଟିଏ ବିଶେଷ ଘଟଣା ଘଟିଥିଲା । ଚୌଧୁରୀ ବଂଶର ଜଣେ ତରୁଣ ଛାତ୍ର ବ୍ରଜନାଥ ଦାଶ ଥରେ ହେଡ଼ମାଷ୍ଟରଙ୍କ ଅନୁମତି ନେଇ ୬ମ ଶ୍ରେଣୀ ପିଲାଙ୍କୁ ଇଂରାଜି ପଢ଼ାଉଥିଲେ । ସେ କଟକରେ ରେଭେନ୍‌ସା କଲେଜିଏଟ୍ ସ୍କୁଲରେ ପଢ଼ୁଥାନ୍ତି । W. W. Henderson ଥାନ୍ତି ତାଙ୍କର ମୁଖ୍ୟ ଶିକ୍ଷକ । ସାହେବଙ୍କ ପାଖରେ ପଢ଼ୁଥିବାରୁ ସେ ଭଲ ଇଂରାଜି ଜାଣିଥାନ୍ତି ବୋଲି ତାଙ୍କ ମନରେ ବୋଧହୁଏ ଟିକିଏ ଗର୍ବ ଆସିଯାଇଥାଏ । ସେ ଯାହାହେଉ, ତାଙ୍କର ଗୋଟିଏ ପ୍ରଶ୍ନର ଉତ୍ତର ଶ୍ରେଣୀର କୌଣସି ପିଲା ଦେଇ ପାରିଲେ ନାହିଁ । ସେ ବେତମାଡ଼ ଦେଇ ଜଣ ଜଣ କରି ସବୁ ପିଲାଙ୍କୁ କ୍ଲାସରୁ ବାହାର କରିଦେଲେ । ଷଷ୍ଠ

ଶ୍ରେଣୀରେ ଥାଇ ମୁଁ ସେ ଦୃଶ୍ୟ ଦେଖୁଥାଏ । ଭାଇନା ଓ କକେଇଙ୍କୁ ମାଡ଼ ହେବାର ଦେଖି ମୋ ଆଖିରେ ଲୁହ ଆସିଲା । ଏ ଘଟଣା ସେତେବେଳେ ଆମ ଛାତ୍ରମହଲରେ ଗୋଟାଏ ଆଲୋଡ଼ନ ସୃଷ୍ଟି କରିଦେଲା । ସପ୍ତମ ଶ୍ରେଣୀର ଛାତ୍ରମାନେ ମେଳ ବାନ୍ଧି ସଙ୍ଗେ ସଙ୍ଗେ ସ୍କୁଲର ତତ୍କାଳୀନ ସେକ୍ରେଟାରୀ ଚୌଧୁରୀ ବଜସୁନ୍ଦର ଦାସଙ୍କ ପାଖକୁ ଯାଇ ଫେରାଦ ହୋଇଥିଲେ ଏବଂ ଆମ୍ଭମାନେ ଶୁଣିଲୁ ସେକ୍ରେଟାରୀ ପିଲାମାନଙ୍କୁ ଆଶ୍ୱାସନା ଦେଇ ଫେରାଇ ଦେଲେ । ସେହିଦିନଠାରୁ ବ୍ରଜବାବୁଙ୍କ ଉପରେ ସ୍କୁଲ ହତା ନ ମାଡ଼ିବା ପାଇଁ ନିଷେଧାଜ୍ଞା ଜାରି ହେଲା ।

ଆତ୍ମସମ୍ମାନରେ ଆଞ୍ଚ ଆସିଲେ ଛାତ୍ରମାନେ ବିଦ୍ରୋହ କରିବା ସ୍ୱାଭାବିକ । ୧୯୧୬ ମସିହାର ମାଇନର ସ୍କୁଲ ଛାତ୍ର ମଧ୍ୟ ଏ ଦିଗରେ ଯେ ସଚେତନ ଥିଲେ, ତାହା ଉପରୋକ୍ତ ଘଟଣାରୁ ସ୍ପଷ୍ଟ ଜଣାପଡ଼େ ।

ତା ପରବର୍ଷ ଭାଇନା ଓ କକେଇ ମାଇନର ପାସ କରି କଟକ ପିଆରୀ ମୋହନ ଏକାଡେମୀରେ ନାମ ଲେଖାଇ ପଢ଼ିଲେ । ମୁଁ ଏକୁଟିଆ ଭଙ୍ଗାରପୁରରେ ରହିଲି । ହେଡ଼ମାଷ୍ଟରଙ୍କ ସଙ୍ଗେ ଗୋଟିଏ ମେସ୍‌ରେ ସେ ବର୍ଷ ରହିବାକୁ ପଡ଼ିଲା ।

ମୁଁ ସପ୍ତମ ଶ୍ରେଣୀରେ ପଢ଼ୁଥିଲାବେଳେ ଥରେ ହେଣ୍ଡରସନ୍ ସାହେବ ସବାରରେ ବସି ଆମ ସ୍କୁଲ ଦେଖିବାକୁ ଆସିଥିଲେ । ସେ ଆମକୁ ଇଂରାଜୀ ପଢ଼ିବାକୁ କହିଲେ । ଜଣେ ପିଲା ବହି ପଢ଼ିଲାବେଳେ ବାଁରୁ ଡାହାଣକୁ ଏବଂ ଡାହାଣରୁ ବାଁକୁ ମୁଣ୍ଡ ହଲାଉଥିଲା । ସାହେବ ତା ମୁଣ୍ଡକୁ ସ୍ଥିର ଭାବରେ ଧରି ପଢ଼ିବାପାଇଁ କହିଲେ ଏବଂ ଗୋଟିଏ କାଠର ଫର୍ମା କରାଇ ପଢ଼ିବାବେଳେ ସେ ପିଲାର ମୁଣ୍ଡ ଉପରେ ରଖିବାକୁ ହେଡ଼ମାଷ୍ଟରଙ୍କୁ ପରାମର୍ଶ ଦେଇଗଲେ ।

ଭଙ୍ଗାରପୁର ରହଣି ଭିତରେ ଆଉ ଏକ ଉଲ୍ଲେଖଯୋଗ୍ୟ ଘଟଣା ଘଟିଥିଲା । ଦଳେ ଜମାଉତ ସାଧୁ ଆସି ଠାକୁର ଗୋପୀନାଥ ଦେବଙ୍କ ବେଢ଼ା ଭିତରେ ଡେରା ପକାଇଥିଲେ । ସେମାନଙ୍କର ସଂଖ୍ୟା ପ୍ରାୟ ଶହେରୁ ଅଧିକ ହେବ । ସେଠାରେ ସେମାନେ ସପ୍ତାହେ କାଳ ରହି ଆରାମରେ ଖାଇ ପିଇ ବେଶ୍ ଗହଳଚହଳ କରିଥିଲେ । ଗାଁ ଭିତରେ ପଶି କାହା ବାଡ଼ିରୁ କାଠ, କାହା ବାଡ଼ିରୁ ପରିବା ଜବରଦସ୍ତି ନେଇଯାଉଥିଲେ ବୋଲି ମୁଁ ଶୁଣିଥିଲି । ସେମାନେ କିଏ, କେଉଁଠୁ ଓ କାହିଁକି ଆସିଥିଲେ, ସେ ବିଷୟରେ ମୋର ସ୍ପଷ୍ଟ ଧାରଣା ନ ଥିଲା । ମୁଁ କେବଳ ଯେତେବେଳେ ଯାଏ, କେହି ଯୋଗାସନରେ ବସିଥାନ୍ତି, କେହି ଛାତତଳେ ବସି ଧ୍ୟାନ କରୁଥାନ୍ତି, କେହି ବା ପ୍ରେଷେଇବାସ କାର୍ଯ୍ୟରେ ରତ ଥାନ୍ତି ।

ଚୌଧୁରୀ ପରିବାରର ସେତେବେଳର ବୈଭବ ଓ ଆଡ଼ମ୍ବରର ପରିଚୟ ମିଳୁଥିଲା ସେମାନଙ୍କର ବାଗବଗିଚା, ଯାନବାହନ, ଦଶଁ ଦେଉଳ, ଓ ନାଟ

ଆଖେଡ଼ାରୁ । ଅନେକ ଭଲ ଭଲ ଘୋଡ଼ା ରଖିଥିଲେ । ନୀଳକଣ୍ଠ ଦାଶଙ୍କ ପିତା ଚୌଧୁରୀ କୁଳମଣି ଦାଶ ଦଅଣାଘେରିରେ ଯାହାରେ ଯେତେପ୍ରକାର ମୂଲ୍ୟବାନ୍ ବାଣ ଫୁଟାଉଥିଲେ, ତାହା ଦେଖିବାକୁ ବହୁ ଦୂରରୁ ଲୋକ ଆସି ଭଙ୍ଗାରପୁରରେ ରୁଣ୍ଡ ହେଉଥିଲେ । ଗୋଟିପୁଅ ନାଚ ଓ ଓଡ଼ଶୀ ସଙ୍ଗୀତଚର୍ଚ୍ଚାର ଏହା ଏକ ପ୍ରଧାନ ପୀଠସ୍ଥଳୀ ଥିଲା ।

ନୂଆ ହେଡ଼ମାଷ୍ଟରଙ୍କ ସମୟରେ ଥରେ ସ୍କୁଲର ପୁରସ୍କାର ବିତରଣ ଉତ୍ସବ ହୋଇଥିଲା । 'Alexander and the Robber' ଇଂରାଜୀ ଅଭିନୟରେ ମୁଁ ଡକାଏତର ଭୂମିକା ନେଇଥିଲି । କ୍ଲାସରେ ପ୍ରଥମ ହେଉଥିବାଯୋଗୁ ମତେ ଖଣ୍ଡେ Chambers's Dictionary ପୁରସ୍କାର ମିଳିଥିଲା । ସେ ବହିଖଣ୍ଡିକ ଆଜିପର୍ଯ୍ୟନ୍ତ ମୁଁ ସାଇତି ରଖିଛି ।

ଭଙ୍ଗାରପୁର ମାଇନର ସ୍କୁଲରେ ମୋର ପାଠପଢ଼ା ସରିଗଲା । ବୃତ୍ତି ପରୀକ୍ଷାକୁ ମନୋନୀତ ହୋଇ ପୁରୀ ଗଲି । ସାଙ୍ଗରେ ହେଡ଼ମାଷ୍ଟର ଓ ନନା ଯାଇଥାନ୍ତି । ପୁରୀ ଜିଲ୍ଲା ସ୍କୁଲରେ ପରୀକ୍ଷା ହେଉଥାଏ । ଡ୍ରଇଁ ପରୀକ୍ଷାଧିକ ଜଣେ ଶ୍ମଶ୍ରୁଧାରୀ ଭଦ୍ରବ୍ୟକ୍ତି ମୋ ପାଖରେ କିଛି ସମୟ ଠିଆହୋଇ ମୋ ଖାତାକୁ ଚାହିଁଲେ । ମୁଁ ଗୋଟିଏ ଡାଳର ଚିତ୍ର ଅଙ୍କନ କରି ସେଥିରେ ଗ୍ରୀଷ୍ମାଚ୍ଛନ୍ନ (Shade) ଦେଉଥାଏ । ମୋ ଡ୍ରଇଁଟି ତାଙ୍କୁ ଭଲ ଲାଗିଲା କି କଣ, ସେ ମୋ ପିଠିରେ ହାତ ମାରି ମୋତେ ପଚାରିଲେ, "କେଉଁ ସ୍କୁଲରୁ ଆସିଛ ?" ପରେ ଜାଣିଲି ସେ ଭଦ୍ରଲୋକ ପୁରୀ ଜିଲ୍ଲା ସ୍କୁଲର ହେଡ଼ମାଷ୍ଟର ଦାଶରଥି ପାଣିଗ୍ରାହୀ ।

## 'କି ଥିଲା ଏ ରାଜ୍ୟ, କି ହୋଇଛି ଆଜ !'

ମାଇନର ସ୍କୁଲର ଛାତ୍ର ଥିଲାବେଳେ ଛୁଟିମାନଙ୍କରେ ଗ୍ରାମକୁ ଫିବାପାଇଁ କି ବ୍ୟାକୁଳତା ! କେବଳ ଅନୁଭବୀ ହିଁ ତାହା ବୁଝିପାରିବେ । ଦୋଳଛୁଟିଟା କେମିତି କଟେ, ମୁଁ ଜାଣିପାରେ ନାହିଁ । ଆମ ଘରର ଇଷ୍ଟଦେବ 'ଶ୍ରୀ ରାଧାଶ୍ୟାମ ଠାକୁର' ବିମାନରେ ବସି ପ୍ରତି ରାତିରେ ଭୋଗ ଖାଇବାକୁ ବାହାରନ୍ତି । ଆଜିକାଲି ସେ ଠାକୁର ଅଛନ୍ତି, ମାତ୍ର ସେ ଜାକଜମକ ନାହିଁ । ଦୋଳଯାତ୍ରା ଏକ ପ୍ରହସନରେ ପରିଣତ ହେଲାଣି । ପଲ୍ଲୀର ଅନ୍ତରରୁ ଧର୍ମଭାବ କିଏ ଯେପରି ଲୁଟି କରି ନେଇଯାଇଛି ।

ଏକ ସୁସଜ୍ଜିତ ବିମାନରେ ବସି ଠାକୁର ବାହାରନ୍ତି । ଆଗେ ଆଗେ ବାଜା, ଶଙ୍ଖ, ଘଣ୍ଟ, ମହୁରୀ ବାଜୁଥାଏ । ସଙ୍କୀର୍ତ୍ତନ ଦଳ ଚାଲିଥାନ୍ତି । ଛତ୍ରୀ, ଝାଲି, ଆଡ଼େଣୀର ଦୀର୍ଘ ପଟୁଆରକୁ ଆଲୋକିତ କରୁଥାଏ ପୋଲଙ୍ଗ ତେଲର ମଶାଲ । ପେଟ୍ରୋମାକ୍ସର ପୂର୍ବପୁରୁଷ ସେ । ଏ ଗ୍ୟାସ୍ ବିଜୁଳିବତୀ ଯୁଗରେ ସେ ବିଚରା ନିଜର ଦୈନ୍ୟକୁ ଲୁଚେଇ କେଉଁ ବନଠାରୁ ସଭ୍ୟ ଜଗତରୁ ଅପସରି ଗଲାଣି । ଦ୍ୱାର ଦ୍ୱାର

ବୁଲି ଠାକୁର ଭୋଗ ଖାଆନ୍ତି । ପୁଷ୍ପାଗ୍ରୀ ପୂଜାକାମ ସାର ସବୁରି ମୁଣ୍ଡରେ ଅବର ବୋଲାଦିଏ । ଭୋଗଡାଲାରୁ ବଣ୍ଟାବଣ୍ଟି ପରେ ଯାହା ବଳିଥାଏ ଆମ ଘରକୁ ଆସେ । ଖଇଉଖୁଡ଼ା, ହୁଡ଼ୁମ୍ବ, କୋରା, ଖଜା, ଶାକର, କଡ଼ଆ ପାଗ—ସାଧାରଣତଃ ଏଇସବୁ ହେଲି-ଦୋଳଭୋଗର ସାମଗ୍ରୀ । ଘରକୁ ଆସିଲା ମାତ୍ରେ ଭଲ ଜିନିଷତକ ବାଛି ଆଗ ନେଇଯିବାପାଇଁ ଆମେ ଦୁଇଭାଇ କେତେ ଛଡ଼ାଛଡ଼ି ହେଉ । ଏବର ରସଗୋଲା, ସନ୍ଦେଶ, ଖିରମୋହନରେ ସେ ମାଦକତା କାହିଁ ?

ଦୋଳପୂର୍ଣ୍ଣିମା ଦିନ ଠାକୁରାଣୀଙ୍କ ବେଢ଼ାରେ ମେଳଣ । ଅଣ୍ଟାରେ ଘଣ୍ଟି ବାନ୍ଧି ଶିଙ୍ଗାଭେର ଧରି ଧାଡ଼ି ବାନ୍ଧି ଆସନ୍ତି ଗୋପାଳଭାଇମାନେ । ତାଙ୍କର ପଟ୍ଟ ସେଦିନ ସମସ୍ତଙ୍କର ହଳଦିଆ ଲୁଗା । ଶରହାଣ୍ଡି ସବୁ ଚିତ୍ରିତ । ସେମାନେ ଠାକୁରାଣୀଙ୍କ ଚାରିପଟେ ଗୀତ ଗାଇ ଗାଇ ପରିକ୍ରମା କରନ୍ତି । ସେ ଦୃଶ୍ୟ ଖୁବ୍ ଉପଭୋଗ୍ୟ ହୁଏ ।

ତାପରେ ସନ୍ଧ୍ୟାକୁ ଆରମ୍ଭ ହୁଏ ମେଳଣ । ରାଧାଶ୍ୟାମ ଓ ମଦନମୋହନ—ଗ୍ରାମର ଦୁଇ ଠାକୁରଙ୍କୁ ଦୋଳବେଦୀରେ ଝୁଲାଇ ରଖାଯାଏ । ଅବଧାନେ ସେଦିନ ନୂଆ ବର୍ଷର ପାଞ୍ଜି ପଢ଼ି ଶୁଣାନ୍ତି, ସହରରେ ଯେମିତି ବାର୍ଷିକ ବିବରଣୀ ପଢ଼ିଲାପରି । ଆମେ ପିଲାମାନେ ସେ ପାଳକ ଓ ରାଶିଫଳରୁ କିଛି ବୁଝୁନା । ଆମକୁ ଆକର୍ଷଣ କରେ ଗୁଡ଼ିଆ ଦୋକାନର ମୁଢ଼ିଉଖୁଡ଼ା ଓ କୋରାଖଇ । ଅପର ଆକର୍ଷଣ ବାଣ । ପଇସାରେ ପାଞ୍ଚଟା ତାଳଫୋଟକା ମିଳୁଥାଏ । ହାତରେ ଥାଏ ଖୁବ୍ ବେଶି ହେଲେ ଚାରିପଇସା ।

ଦୋଳଯାତ୍ର ପରେ ଚନ୍ଦନ ଯାତ୍ରା ଆସେ । ବନ୍ଧୁଙ୍କ ସାଥିରେ ଡଙ୍ଗାରେ ବସି ବୁଡ଼ ଖେଳିବାକୁ ଯାଉ । ସମସ୍ତଙ୍କ କପାଳରେ ଚନ୍ଦନର ପ୍ରଲେପ । ବାଇରେଇ ଗଣ୍ଡର ପ୍ରଶସ୍ତ ବକ୍ଷ ଉପରେ ଠାକୁର ଭଉଁରୀ ଖେଳନ୍ତି । ମନେ ପଡ଼ୁଥାଏ ଜଗନ୍ନାଥ ମହାପ୍ରଭୁଙ୍କ ଚନ୍ଦନ ଯାତ୍ରାର ସେଇ ମନମତାଣିଆ ସଙ୍ଗୀତ—'କହନ୍ତେ ଦନ୍ତପନ୍ତଙ୍କ ତେଜ ପ୍ରଭୁ ନରେନ୍ଦ୍ର ଗୃପେ ଗମନ - ମଦନମୋହନ ହେ ।'

ଦଶହରା ଛୁଟିରେ ଆମ ଗାଁରେ ଯାନଯାତ୍ରାର କିଛି ଆକର୍ଷଣ ନ ଥାଏ । ନିକଟବର୍ତ୍ତୀ ବଡ଼ଝଲେ ଗ୍ରାମର ବଙ୍ଗାଳୀ ବସ୍ତିରେ ଦେବୀ ଦେଖିବାକୁ ଅନେକ ଲୋକ ଯାଆନ୍ତି । ଆମ ଗାଁ ପାଖ କଣ୍ଢାପଡ଼ା ବାଲିକୁଦରେ ଯୋଡ଼ିଦେଲା ସବୁ କଇଡ଼ର ସାଜପୋଷାକରେ ମଣ୍ଡିତ ହୋଇ ବୁଲିବାକୁ ଆସନ୍ତି । ତାଙ୍କ ପିଠି ଉପରେ ଗୋଟିଏ ଗୋଟିଏ ଗ୍ରେଟ ବିମାନ ଖଞ୍ଜା ହୋଇଥାଏ । ଦେହଯାକ ଘଣ୍ଟି ଘାଗୁଡ଼ିର ମାଳା, ଚେଲୁ ଚାଲିଲାବେଳେ ରୁଣୁଝୁଣୁ ଶୁଭେ । ପ୍ରାୟ ପ୍ରତ୍ୟେକ ବର୍ଷ ମୁଁ ସେ ଦୃଶ୍ୟ ଦେଖିବାକୁ ଯାଏ ।

ଦୀର୍ଘ ଗ୍ରୀଷ୍ମ ଛୁଟିରେ ଚିତ୍ତବିନୋଦନ ପାଇଁ ଆମ ଗ୍ରାମରେ ଉପାଦାନର ଅଭାବ ନ ଥିଲା । ଗ୍ରାମର ଦକ୍ଷିଣ ଦିଗରେ ଓଲଟପୁର ବଣ । ପ୍ରାଚୀ ନଦୀର କ୍ଷୀଣ ଧାର ତାର

ଭିତରେ ବନ୍ଧିଯାଇଛୁ । ଗୁମ୍ଫଗୋସାଇଁଙ୍କ ବେଢ଼ାରେ ଲଟାଦୋଳାରେ ଖେଳିସାରି ବଣରୁ କୋଳି ଖାଇବାକୁ ମାଉ । ବେତକୋଳି, କୁଧକୋଳି, ଭିଁଇଚକୋଳି, ଶଗଡ଼ବାଟୁଆକୋଳି—ଆମପାଇଁ ପ୍ରକୃତିରାଣୀଙ୍କ ଲଜେଞ୍ଜ୍ ବିସ୍କୁଟ୍ ସେସବୁ । ସେ କୋଳିଖିଆ ଅଭିଯାନ ମନେ ପଡ଼ିଲେ କବିବର ରାଧାନାଥଙ୍କ ବର୍ଣ୍ଣିନାର ସତ୍ୟତା ମୁଁ ମର୍ମେ ମର୍ମେ ଉପଲବ୍‌ଧି କରେ—

'ବାଳସ୍ତୁପ ଖୋଳେ ରଙ୍ଗେ ଯହିଁ ପ୍ରଜାପତିଙ୍କ ଆଶେ
ସୁରଭି ଶଗଡ଼ବାଟୁଆ ନିକୁଞ୍ଜେ କରନ୍ତି ନାଶ ।'

ଆଜି ଏ କଥା ଲେଖିଲାବେଳେ ଇଂରେଜ କବି **Goldsmith**ଙ୍କ **Deserted Village** କବିତା ମନେ ପଡ଼ୁଛି । ଓଳଶପୁର ବଣରେ ଆଜି ଗୋଟିଏ ହେଲେ କୋଳିଗଛ ଦେଖିବାକୁ ମିଳେନାହିଁ । ସବୁ ପଶୁପକ୍ଷୀଙ୍କର ବସା ଭାଙ୍ଗି ଯନ୍ତ୍ର-ଦାନବ ବୁଲ୍‌ଡୋଜର ଓ ଟ୍ରାକ୍ଟର ସେ ବିସ୍ତୀର୍ଣ୍ଣ ଜଙ୍ଗଲକୁ ନିଶ୍ଚିହ୍ନ କରି ଦେଇଛି । ସେଠାରେ ଆଜି ନୂତନ ଯୁଗର କୃଷି ଫାର୍ମ, କେନାଲ, ଡାକ୍ତରଖାନା ଆଦିକୁ ବିଦ୍ୟୁତ୍-ସମ୍ପଦରେ ଉଦ୍ଭାସିତ ହୋଇ ଅତୀତର ବନଶ୍ରୀକୁ ଉପହାସ କରୁଛି ।

ମନେ ପଡ଼ୁଛି, ସେଇ ବଣଭିତରେ ପଶି ଆମ୍ବ ଗୋଟାଇବା ବେଳେ ଆଖିରେ ପଡ଼େ ବୁଦା ଆଡ଼ୁଆଳରେ ସଯତ୍ନ-ନିର୍ମିତ ବାଲିଆ ଚଢ଼େଇର ବସା ଏବଂ ତା ଭିତରେ ଥିବା ଚକବକଚକ ଧଳା ଗୁଡ଼ାଏ ଡିମ୍ବ । କେବେ କେବେ ଝିଙ୍କକାଠି ପାଇଲେ ତାର ପ୍ରଲୋଭନ ଏଡ଼ି ନ ପାରି ଗୋଟାଇ ଆଣୁ । ଗ୍ରୀଷ୍ମ କାଠିଗୁଡ଼ିକୁ ଝିଅମାନେ ଗଭାରେ ଖୋସି ସେମାନଙ୍କ ଅମାଜିଆ କେଶରାଶିକୁ ସଯତ୍ନ କରି ରଖନ୍ତି । ବଡ଼ କାଠିକୁ ଆଦରରେ ନେଇଯାନ୍ତି ଗ୍ରାମର ବୃଦ୍ଧ ଲେଖନକାର ତାଙ୍କ ତାଳପତ୍ର ପୋଥିରେ ମଣ୍ଡନ କରିବା ପାଇଁ । ଖଣ୍ଡିଏ ଲୁହାର ଲେଖନ ଓ ବିଡ଼ାଏ ତାଳପତ୍ର ଧରି, ଆଖିରେ ଚଷମା ଲଗାଇ ବୃଦ୍ଧ ଗୋଟିଏ ଆମ୍ବଗଛମୂଳେ ବସି ଲେଖିଯାଉଥାନ୍ତି ଦିନ ପରେ ଦିନ ଭାରତୀଭଣ୍ଡାରର ଅନବଦ୍ୟ ଗ୍ରନ୍ଥମାନ—ରାମାୟଣ, ମହାଭାରତ, ଭାଗବତ, ପୁରାଣ ଏବଂ କାଳିଦାସ ଓ ଭକ୍ତକବିଙ୍କର ରଚନାବଳୀ । ପୋଥି ଲେଖି ସେ ଜୀବିକା ନିର୍ବାହ କରନ୍ତି । ଲୁହାର ଲେଖନ ଖଣ୍ଡେ, ତାର ଗୋଟିଏ ମୁଣ୍ଡ ପତ୍ରାକାର ଏବଂ ଧାରବିଶିଷ୍ଟ, ଅପର ମୁଣ୍ଡ ମୁନିଆଁ । ସେଥିରେ ତାଳପତ୍ରକୁ ସମାନ ଆକାରରେ କାଟି, ତା ଉପରେ ଲେଖନକୁ କଲମ ପରି ଧରି ଲେଖନ୍ତି ଧାଡ଼ି ଧାଡ଼ି ପାଠ । ଲେଖା ସରିଲେ ଦୁଇମୁଣ୍ଡେ ଦୁଇଟି ପଟା ଦେଇ, ମଝିରେ ଡୋର ଭର୍ତ୍ତି କରି ପୋଥିଟିକୁ ବାନ୍ଧି ଦିଅନ୍ତି । ସେହି ଡୋର ଖସି ନ ଯିବ ବୋଲି ତାର ଗୋଟିଏ ମୁଣ୍ଡରେ ଝିଙ୍କ କାଠିଟି ଲଗ୍ନ ଥାଏ । ତାଙ୍କ ଆଖିରେ ରେକ୍‌ସିନ ବନ୍ଧେଇ ଉପରେ ସୁନେଲି ଅକ୍ଷରପରି ସେ ସୁନ୍ଦର !

ପୋଥି ଶେଷରେ ବୃଦ୍ଧ ଏଇ ଶ୍ଳୋକ ପଦଟି ଲେଖିଦିଅନ୍ତି—

'ଭୀମସ୍ୟାପି ରଣେ ଭଙ୍ଗୋ ମୁନିନାଞ୍ଚ ମତିଭ୍ରମଃ
ଯଦି ଶୁଦ୍ଧମଶୁଦ୍ଧଂ ବା ମମ ଦୋଷ ନ ବିଦ୍ୟତେ ।

ଭଗ୍ନପୃଷ୍ଠକଟିଗ୍ରୀବା    ତୃଷ୍ଣାଦୃଷ୍ଟିଃ ଅଧୋମୁଖଃ
ମହେନ ଲିଖିତଂ ଗ୍ରନ୍ଥଂ    ପୁତ୍ରବତ୍ ପରିପାଳୟେତ୍ ।

ଅର୍ଥାତ୍ ଭୀମ ଯୁଦ୍ଧରେ ହାରନ୍ତି, ମୁନିଙ୍କର ବି ମତିଭ୍ରମ ହୁଏ, ମୋର ଭୁଲ ବା କିବା କଥା । ଅଣ୍ଟା ପିଠି ଭାଙ୍ଗି, ଏକ ଦୃଷ୍ଟିରେ ତଳକୁ ଚାହିଁ ଚାହିଁ ବହୁ ଯତ୍ନରେ ଗ୍ରନ୍ଥଟି ଲେଖିଲି—ତେଣୁ ଏହାକୁ ପୁଅ ପରି ପାଳନ କରିବ ।

ଲେଖୁ ଲେଖୁ ଟିଙ୍କଟାଳିରୁ ଏତେ ବାଟ ଚାଲି ଆସିଲି । ଆଜିକାଲିର ମନୋ, ଲାଇନୋ ଓ ରୋଟାରୀ ଯୁଗରେ ତାଳପତ୍ର ପୋଥି ସାତସପନ । ହେଲେ ମୋର ଏଇ କ୍ଷୁଦ୍ର ଜୀବନକାଳ ଭିତରେ କେତେ ପରିବର୍ତ୍ତନ ଘଟିଗଲାଣି, ସେଇ କଥା ଭାବିଲେ ମନ ବିସ୍ମୟରେ ଅଭିଭୂତ ହୁଏ ।

ଗ୍ରୀଷ୍ମଛୁଟିଟି ଏହିପରି ଆନନ୍ଦ ଉତ୍ସବ ଭିତରେ କଟିଯାଏ । ଛୁଟି ଶେଷ ଆଡ଼କୁ ପଡ଼େ ରଜ । ସେ ପର୍ବକୁ ଅବଶ୍ୟ ବେଶି ଉପଭୋଗ କରନ୍ତି ଝିଅମାନେ । ଆମ ଭାଗରେ ପଡ଼େ ଦୋଳଖେଳ ଓ ବାଗୁଡ଼ିଗୁଡ଼ୁ । ସବୁ ଛୁଟିରେ ବୋଉ ପିଠାପଣା କରି ଖୁଆଏ । ଦୁଧ ଘିଅର ଅଭାବ ନ ଥାଏ ଆମ ଘରେ । ଗୁଣ୍ଡଦୁଧ ନୁହେଁ କି ବନସ୍ପତି ନୁହେଁ, ଖାଣ୍ଟି ଗାଈ ଦୁଧ ଓ ଘିଅ । ଛୁଟି ପୂରିଗଲେ ପୁଣି ନନାଙ୍କର ତାଗିଦା, ଦିନେ ବି ଡେରି ହେବ ନାହିଁ । ଗୁଡ଼ଲ ଓ ପେଡ଼ିପେଟରା ଧରି ସ୍କୁଲକୁ ଯିବାକୁ ପଡ଼େ ।

## କଟକ ଆସିଲି ପଢ଼ିବାକୁ (୧୯୧୯)

ବର୍ଷକ ଆଗରୁ ଭାଇନା ଓ କକେଇ କଟକ ଆସି ପି.ଏମ୍. ଏକାଡେମୀରେ ପଢୁଥାନ୍ତି । ତେଣୁ ମତେ ତାଙ୍କରି ସଙ୍ଗେ ଏକା ବସାରେ ରହିବାକୁ ହେଲା । ଆମ ଗ୍ରାମର ବାଞ୍ଛାନିଧି ଆଚାର୍ଯ୍ୟଙ୍କ ତତ୍ତ୍ୱାବଧାନରେ ଆମେ ତିନିଜଣ ଏକାଠି ରହି ପଢ଼ିଲୁ ।

ମୁଁ ରେଭେନ୍ସା କଲେଜିଏଟ୍ ସ୍କୁଲରେ ନାମ ଲେଖାଇଲି । ମୋତେ ମାସକୁ ପାଞ୍ଚ ଟଙ୍କା ଲେଖାଏଁ ମାଇନର ବୃତ୍ତି ମିଳିଲା । ତଥାପି ଆମ ଦୁଇଜଣଙ୍କୁ ପାଠ ପଢ଼ାଇବା ନନାଙ୍କ ପକ୍ଷରେ କଷ୍ଟକର ହେଉଥିଲା । ସେ କିଛି ଜମି ବନ୍ଧକ କରି ଆମର ପଢ଼ାଖର୍ଚ୍ଚ ତୁଲାଇବାର ପ୍ରସ୍ତାବ କରିବାରୁ ବାପା ତାଙ୍କ ଉପରେ ବିରକ୍ତ ହୋଇ ତାଙ୍କ ସଙ୍ଗେ କଥାବାର୍ତ୍ତା କଲେ ନାହିଁ । ଏହି କାରଣରୁ ବାପ ପୁଅଙ୍କ ମଧ୍ୟରେ ମନାନ୍ତର ଘଟିଲା । ତେଣୁ ବୋଉର ଅଳଙ୍କାରକୁ ଆମ ଗ୍ରାମର ଜଣେ ମହାଜନ ଘରେ ବନ୍ଧା-ପକାଇ ନନା କିଛି ଟଙ୍କା ଋଣ ଆଣିଲେ ଏବଂ ଆମ ଦୁହିଁଙ୍କୁ ପଢ଼ାଇଲେ ।

ଯେଉଁ କୋଠାରେ ବର୍ତ୍ତମାନ କଟକର ସିଟି ହସପିଟାଲ ହୋଇଛି, ସେଇ ଘରେ ହେଉଥିଲା ରେଭେନ୍ସା କଲେଜିଏଟ୍ ସ୍କୁଲ । ଗୌରୀଶଙ୍କର ପାର୍କ ସେତେ-

ବେଲକୁ ଜନ୍ମ ହୋଇ ନ ଥାଏ । ସେଠାରେ ଥାଏ ଆବର୍ଜନାପୂର୍ଣ୍ଣ ଗୋଟାଏ ପଡ଼ିଆ । କଟକର ରାସ୍ତାରେ ଚାଲୁଥାଏ ବେଶି ସଂଖ୍ୟାରେ ଘୋଡ଼ାଗାଡ଼ି ଏବଂ ବଳଦଗାଡ଼ି । ହାକିମ, ଜମିଦାର, ସେଠ ଓ ରାଜାମହାରାଜାମାନେ ଭଲ ଭଲ ବଗି ଗାଡ଼ି ରଖିଥାନ୍ତି । ଯେଉଁ କେତେଖଣ୍ଡ ମଟର କାର୍ ଦେଖିବାକୁ ମିଳୁଥାଏ, ଆଙ୍ଗୁଠିରେ ଗଣିହେବ ଭଳି । ରିକ୍ସା ତ ଆଦୌ ନ ଥାଏ । କଲେଜିଏଟ ସ୍କୁଲରେ କେତେକ ରାଜା, ଜମିଦାର ଓ ବଡ଼ ଲୋକଙ୍କର ପିଲା ପଢ଼ୁଥାନ୍ତି । ସେମାନେ ଯେତେବେଳେ ଭଲ ଭଲ ଘୋଡ଼ା ଲାଗିଥିବା ବଗି ଗାଡ଼ିରେ ଆସନ୍ତି, ସେ ଦୃଶ୍ୟ ବେଶ୍ ଉପଭୋଗ୍ୟ ହୁଏ ।

ଆମର ହେଡ଼ମାଷ୍ଟର ଥିଲେ ଜମାପଡ଼ାର ମଧୁସୂଦନ ଦାସ । ତାଙ୍କର ଦୀର୍ଘ ବିଶାଳ ବପୁ ଏବେ ମଧ୍ୟ ସ୍ମୃତିପଟରେ ଅଙ୍କିତ ରହିଛି । ଅନ୍ୟାନ୍ୟ ଶିକ୍ଷକଙ୍କ ମଧ୍ୟରେ ମୃତ୍ୟୁଞ୍ଜୟ ରଥ କାବ୍ୟତୀର୍ଥ, ଚିନ୍ତାମଣି କର, ଲଳିତମୋହନ ଘୋଷ, ଅଗଣି ଦାସ, ଶଙ୍କର ରାଓ, ପୁରୁଷୋତ୍ତମ ତର୍କାଲଙ୍କାର, ସନନ୍ତ କୁମାର ବୋଷ, ଦାମୋଦର ମିଶ୍ର ଇତ୍ୟାଦିଙ୍କ ନାମ ମନେ ପଡ଼ୁଛି ।

କ୍ଲାସରେ ମୋର ନିକଟତମ ପ୍ରତିଦ୍ୱନ୍ଦ୍ୱୀ ଥିଲେ କାଡୁଅପଡ଼ାରୁ ବୃତ୍ତି ପାଇ ଆସିଥିବା ମାସ୍କାଧର ମିଶ୍ର ଓ ଅଧ୍ୟାପକ ଗୋପାଳ ଚନ୍ଦ୍ର ଗାଙ୍ଗୁଲିଙ୍କ ପୁତ୍ର ଅନିଲଚନ୍ଦ୍ର । ଆମ ତିନିଜଣଙ୍କ ମଧ୍ୟରେ କୃତିତ୍ୱ ଅର୍ଜନ ପାଇଁ ବରାବର ସୁସ୍ଥ ପ୍ରତିଯୋଗିତା ଚାଲୁଥାଏ । ସେତେବେଳେ ଜାନୁଆରୀରୁ ପାଠବର୍ଷ ଆରମ୍ଭ ହୋଇ ଡିସେମ୍ବରରେ ଶେଷ ହେଉଥିଲା ଏବଂ ବାର୍ଷିକ ପରୀକ୍ଷା ହେଉଥିଲା ବଡ଼ଦିନ ଛୁଟି ପୂର୍ବରୁ । ମୁଁ ଏହି ଶେଷ ପରୀକ୍ଷାରେ କ୍ଲାସରେ ପ୍ରଥମ ସ୍ଥାନ ଅଧିକାର କଲି, ମାତ୍ର ଏଥିଲାଗି ପୂର୍ଣ୍ଣ ଭାବରେ ଆନନ୍ଦ ଉପଭୋଗ କରିବା ମୋ ଭାଗ୍ୟରେ ନ ଥିଲା । ମୋତେ ପାଠ ପଢ଼ାଇବା ଲାଗି ଯାହାଙ୍କର ଅନ୍ତର ସବୁଠାରୁ ଅଧିକ ବ୍ୟାକୁଳ ଥିଲା, ମୋ କୃତିତ୍ୱରେ ଉଲ୍ଲସିତ ହେବାକୁ ସେ ସେତେବେଳକୁ ନ ଥିଲେ ।

## ପିତୃବିୟୋଗ

ସେ ବର୍ଷ ଗ୍ରୀଷ୍ମ ଛୁଟିରେ ଆମ୍ଭମାନଙ୍କ ସ୍କୁଲ ସବୁ ବନ୍ଦ ହେଲା ଯିନା, ଆମେ କିନ୍ତୁ ଗାଁକୁ ଯାଇପାରିଲୁ ନାହିଁ । ଠିକ୍ ସେହି ସମୟରେ ଆମ ଗ୍ରାମରେ ଭୀଷଣ ହଇଜା ଲାଗିଲା । ନନା ସାଂଘାତିକ ଜ୍ୱର ରୋଗରେ ଶଯ୍ୟାଶାୟୀ ହୋଇ ପଡ଼ିଲେ । ଏହି କାରଣରୁ ସେ ଆମ୍ଭମାନଙ୍କର ଅଭିଭାବକ ବାଞ୍ଛାନିଧି ଆଚାର୍ଯ୍ୟଙ୍କ ପାଖକୁ ଖବର ପଠାଇଲେ ଯେ ଆମ୍ଭେମାନେ ଛୁଟିରେ ଗାଁକୁ ନ ଯାଇ କଟକରେ ରହିବୁ । ତାହାହିଁ ହେଲା । ନନାଙ୍କୁ ଟାଇଫଏଡ୍ ହୋଇଥିବାର ଅନୁମାନ । ସେ ତ ସହଜେ ଶୀର୍ଣ୍ଣକାୟ ଲୋକ ଥିଲେ, ପୁଣି ଦୀର୍ଘକାଳ ରୋଗଶଯ୍ୟାରେ ପଡ଼ି ପଡ଼ି କଙ୍କାଳସାର ହୋଇଯାଇଥିଲେ । ଗାଁରେ ସେ କାଳରେ ଡାକ୍ତରୀ ଚିକିତ୍ସାର ସୁବିଧା ନ ଥିଲା । କ୍ରମେ ନନାଙ୍କର ରୋଗ ବଢ଼ିଲା । ଶେଷ ଅବସ୍ଥା ନିକଟ ଦେଖି ବୋଉ ପ୍ରସ୍ତାବ କଲା ଆମ୍ଭମାନଙ୍କୁ

କଟକରୁ ନେଇଯିବା ପାଇଁ, ମାତ୍ର ନନାଙ୍କର ରୋଗକ୍ଳିଷ୍ଟ ଶୀର୍ଣ୍ଣ ଶରୀର ଦେଖି କାଳେ ଆମ ମନରେ ଭୟ ଜାତ ହେବ, ସେଥିଲାଗି ନନା ବାରଣ କଲେ ।

ନିୟତିର ବିଧାନ ଅଲଙ୍ଘନୀୟ । ଯାହା ଘଟିବାର ତାହା ଘଟିଲା । କଟକ ବସାରେ ଥାଇ ଦିନେ ଖବର ପାଇଲୁ—ନନା ଆଉ ଇହଜଗତରେ ନାହାନ୍ତି ।

ମୋର ମନେ ଅଛି, ଆମର ଅଭିଭାବକ ଆଗ୍ୟର୍ଯ୍ୟ ମହାଶୟ ପ୍ରଥମେ ଗୋଟିଏ ଦୀର୍ଘ ଉପକ୍ରମ ଦ୍ୱାରା ସେହି ନିଦାରୁଣ ସମ୍ବାଦ ଶୁଣିବା ପାଇଁ ଆମ ମନକୁ ପ୍ରସ୍ତୁତ କରାଇ ଶେଷରେ ଇଂରାଜୀରେ କହିଲେ—"I am going to give you a bad news. Your father is dead."

କ୍ଷଣକ ପାଇଁ ମୁଁ ଶୋକରେ ଅଭିଭୂତ ହୋଇପଡ଼ିଲି; ମାତ୍ର ନନାଙ୍କ ମୃତ୍ୟୁରେ ମୁଁ କଣ ହରାଇଛି, ତାହା ପୂର୍ଣ୍ଣ ରୂପେ ହୃଦୟଙ୍ଗମ କରିବାର ଅବସ୍ଥା ସେତେବେଳେ ଆଉ ନ ଥିଲା । ସେହିଦିନ କଟକରୁ, ଭାଇନା ଓ ମୁଁ ଗାଁକୁ ଗଲୁ । ଘରେ ଆମେ ଦୁଇଭାଇ, ଆମ ତଳେ ଗୋଟିଏ ଛୋଟ ଭଉଣୀ । ସେତେବେଳେ ସେ ସେ ବୋଉ କୋଳରେ । ପୁଣି ଆମର ବାପା ଓ ମା (ପିତାମହ ଓ ପିତାମହୀ) ଜୀବିତ । ନନା ତାଙ୍କର ଏକମାତ୍ର ପୁତ୍ର । ଏହିଭଳି ଅବସ୍ଥାରେ ସମସ୍ତଙ୍କୁ ଛାଡ଼ି ୩୬-୩୭ ବର୍ଷ ବୟସରେ ନନା ଚାଲିଗଲେ । ପରିବାରରେ ଗମ୍ଭୀର ଶୋକର ଛାୟା । ସାନଭାଇ ଦୀନକୃଷ୍ଣଙ୍କୁ ଖ୍ରାପଣ ଜ୍ୱର । ବିଧବା ବୋଉକୁ ଦେଖି ଓ ତାର କନ୍ଦାକଟା ଶୁଣି ସେ ଜ୍ୱରଆଁରେ ପ୍ରଳାପ କରୁଥାଏ । ଏହି ପରିସ୍ଥିତିରେ ନନାଙ୍କ ଶୁଦ୍ଧିକ୍ରିୟା ସମ୍ପନ୍ନ ହେଲା ।

ସମୟ ସବୁ ଦୁଃଖଶୋକର ତୀବ୍ରତା ହରଣ କରେ । ତା ନ ହେଲେ ମନୁଷ୍ୟ ଜୀବନ ଦୁର୍ବହ ହୋଇ ପଡ଼ନ୍ତା । କ୍ରମେ ସମସ୍ତେ ପ୍ରକୃତିସ୍ଥ ହେଲେ । ନିତିଦିନିଆ ସଂସାର ପୂର୍ବପରି ତା ବାଟରେ ଚାଲିଲା ।

ନନାଙ୍କ ମୃତ୍ୟୁ ଫଳରେ ଆମ ପାରିବାରିକ କର୍ମଯୋଜନାରେ କେତେକ ପରିବର୍ତ୍ତନ ଘଟିଲା । ବୃଦ୍ଧ ବାପାଙ୍କୁ ପୁଣି ଘରର ଦାୟିତ୍ୱ ବହନ କରିବାକୁ ପଡ଼ିଲା । ଭାଇନା ଆଉ ପଢ଼ିଲେ ନାହିଁ । ସ୍ଥିର ହେଲା, ସେ ଘରେ ରହି ବାପାଙ୍କୁ ସାହାଯ୍ୟ କରିବେ ଏବଂ କେବଳ ମୁଁ ଏକୁଟିଆ ପଢ଼ିବି ।

କଟକ ଆସିଲି । ମୁଁ ପରୀକ୍ଷାରେ ପ୍ରଥମ ହୋଇ ମାଟ୍ରିକ ଥାର୍ଡ଼ କ୍ଲାସକୁ ଉଠିଥାଏ । ଅନଙ୍ଗଚନ୍ଦ୍ର ମୋଠାରୁ ଗୋଟିଏ ମାତ୍ର ନମ୍ବର କମ୍ ପାଇ ଦ୍ୱିତୀୟ ହୋଇଥାଆନ୍ତି । ପୁରସ୍କାର ବିତରଣ ବେଳେ କୌଣସି ଶିକ୍ଷକ କହିବାର ଶୁଣିଥିଲି, "ସେ ଗୋପାଳ ବାବୁଙ୍କ ପୁଅ । ଗୋଟିଏ ନମ୍ବର କମ୍‌ରେ ଯାଏ ଆସେ କେତେ ? ତେଣୁ ତାକୁ ପ୍ରଥମ ପୁରସ୍କାର ଦିଆଯାଉ ।" କିନ୍ତୁ ସନଲବାବୁ ଓ ଆଉ କେତେଜଣ

ଶିକ୍ଷକ ମୋ ପାଇଁ ଲଢ଼ିଥିଲେ । ଶେଷରେ ମୁଁ ପ୍ରଥମ ପୁରସ୍କାର ପାଇଲି । କେବଳ ଏତିକି ମନେ ଅଛି ଯେ ବିଭିନ୍ନ ବିଷୟରେ ପାଇଥିବା ସମସ୍ତ ପୁସ୍ତକକୁ ଏକାଥରକେ ଆଣିବା ମୋ ପକ୍ଷରେ କଷ୍ଟକର ହୋଇଥିଲା ।

ଆମ ଶ୍ରେଣୀରୁ 'ଚନ୍ଦ୍ରିକା' ନାମରେ ଗୋଟିଏ ହାତଲେଖା ପତ୍ରିକା ବାହାରୁଥିଲା । ମୁଁ ସେଥିରେ ନିୟମିତ ଲେଖାଲେଖି କରୁଥିଲି । ଜଗବନ୍ଧୁ ସିଂହଙ୍କ 'ଗୃହଲକ୍ଷ୍ମୀ' ବହିରୁ ଶୈବ୍ୟା ବିଷୟ ପଢ଼ି ମୁଁ ସେ ବିଷୟରେ ଗୋଟିଏ କବିତା ଲେଖି ଉକ୍ତ ପତ୍ରିକାରେ ଦେଇଥିଲି । ତାହା ମୋ ଜୀବନର ପ୍ରଥମ ରଚିତ କବିତା ।

କଟକରେ ମୋର ପଢ଼ାପଢ଼ିର ସମସ୍ତ ଖର୍ଚ୍ଚ ଠିକ୍ ସମୟରେ ଯୋଗାଇବା ବାପାଙ୍କ ପକ୍ଷରେ ସମ୍ଭବ ହେଲା ନାହିଁ । ସେହି ସମୟରେ ଗଣେଶଘାଟ ନିକଟରେ ରହୁଥିବା ଓକିଲ ମାୟାଧର ଦାସ ତାଙ୍କ ଘରେ ମୋତେ ରଖିବା ପାଇଁ ଇଚ୍ଛା ପ୍ରକାଶ କଲେ । ତାଙ୍କର ପୁଅ ହରପ୍ରିୟ ଓ ମୁଁ ଏକା ଶ୍ରେଣୀରେ ପଢୁଥିଲୁ । ଦୁହେଁ ଏକତ୍ର ପଢ଼ାପଢ଼ି କଲେ ସୁବିଧା ହେବ ବିଚାରି ସେ ଉକ୍ତ ପ୍ରସ୍ତାବ ଦେଲେ । ମୁଁ ବିନା ଦ୍ୱିଧାରେ ରାଜି ହୋଇ ତାଙ୍କ ଘରେ ଯାଇ ରହିଲି ।

ଦିନେ ବହିପତ୍ର ଧରି ସ୍କୁଲକୁ ବାହାରିଛି, ହଠାତ୍ ଅସୁସ୍ଥ ବୋଧକଲି । ତାପରେ କଣ ଘଟିଲା, ମୋର କିଛି ମନେ ନାହିଁ । ପରେ ଶୁଣିଲି, ମୋର ଭୀଷଣ ଝାଡ଼ା ହେଲା । ଓକିଲଙ୍କ ଘରେ ସମସ୍ତେ ଆଶଙ୍କା କଲେ ମୋତେ ହଇଜା ଧରିଛି । ମୋର ଆତ୍ମୀୟ ଜଣେ କଟକରେ ଅଛି ଖୋଜି ଖୋଜି ପି.ଏମ୍. ଏକାଡେମିରେ ପଢ଼ୁଥିବା ମୋର କକେଇଙ୍କୁ ଖବର ଦେଲେ । ସେ ଆସି ମୋର ଲୁଗାପଟା ଧୋଇ ମୋର ସେବା ଶୁଶ୍ରୂଷା କଲେ ଏବଂ ଗ୍ରାମକୁ ଖବର ପଠାଇଲେ । ମୁଁ କିନ୍ତୁ ଏସବୁ କିଛି ଜାଣିନାହିଁ । ଭୀଷଣ ଟାଇଫଏଡ୍ ଜ୍ୱରର କବଳରେ ପଡ଼ି ମୁଁ ସମ୍ପୂର୍ଣ୍ଣ ଅଚେତ ଅବସ୍ଥାରେ ଥିଲି । ପ୍ରାୟ ଛଅଦିନ ପରେ ଯେତେବେଳେ ଗାଁରୁ ବାପା ଆସି ମୋ ଶେଯ ପାଖରେ ବସି ମୋର ହାତଗୋଡ଼ ଆଉଁଷୁଥିଲେ, ମୋର ସେତିକି କେବଳ ମନେ ଅଛି । ପୁଣି ସେହି ବିସ୍ମୃତିର ଅନ୍ଧକାର ମଧ୍ୟରେ ମୁଁ ବୁଡ଼ି ରହିଲି ।

କବିରାଜ ବାଳୁଙ୍କେଶ୍ୱର ଆଚାର୍ଯ୍ୟଙ୍କ ଚିକିତ୍ସାଫଳରେ ଆରୋଗ୍ୟ ଲାଭକରି ମୁଁ ନୂତନ ଜୀବନ ପାଇଲି । ମାସାଧିକକାଳ ରୋଗଶଯ୍ୟାରେ ପଡ଼ି ପଡ଼ି ମୋର ଦେହରୁ ପ୍ରସ୍ତ ପ୍ରସ୍ତ ଚମ ଉଠିଯାଇଥିଲା । ଆଣ୍ଠୁ ଦୁଇଟିରେ ଯେଉଁ ଘା (Bed sore) ହୋଇଥିଲା, ଆଜିଯାଏ ସେ ଦାଗ ଲିଭିନାହିଁ କି ଲିଭିବ ନାହିଁ । ମୋର ଶିକ୍ଷକମାନେ ମୋତେ ମଝେ ମଝେ ଦେଖିବାକୁ ଆସୁଥିଲେ । ଭଉଣୀ ମୋ ପାଖରେ ରହି ମୋ ସେବା କରୁଥାନ୍ତି । ଭଗବାନଙ୍କର ଅପାର କରୁଣାବଳରୁ ଆରୋଗ୍ୟ ଲାଭ କରି

କଣ୍ଟାଦନପାଙ୍କ ଗ୍ରାମକୁ ଗଲି ଏବଂ ଫେରିଆସି ପୁନର୍ବାର କ୍ଲାସରେ ଯୋଗ ଦେଲି । ସେଇ ମାଷ୍ଟ୍ରାଧରବାବୁଙ୍କ ବସାରେ ରହିବାକୁ ହେଲା ।

ଶ୍ୟାମଚନ୍ଦ୍ର ତ୍ରିପାଠୀ ବିଲାତରୁ I.E.S. ପାସ୍ କରି ସେତେବେଳେ କଲେଜିଏଟ୍ ସ୍କୁଲର ହେଡ୍‌ମାଷ୍ଟର ହୋଇଥାଆନ୍ତି । ଏହି ସମୟରେ ମୁଁ ଏକ ନୋଟିସ୍ ପାଇଲି— ଦରଖାସ୍ତ ନ ଦେଇ ଦୀର୍ଘକାଳ ସ୍କୁଲରୁ ଅନୁପସ୍ଥିତ ରହିଥିବା ହେତୁ ମୋର ମାଇନର ବୃତ୍ତି କଟିଯାଇଛି ଏବଂ ଏକକାଳୀନ ଛଅ ସାତ ମାସର ଦରମା ଦାଖଲ ନ କଲେ ମୁଁ ଆଉ ପଢ଼ିପାରିବି ନାହିଁ । ପ୍ରାୟ ପଚିଶ ଟଙ୍କା ଖଟଣ୍ତି ଦେବାକୁ ପଡ଼ିବ । ମୁଁ ଏତେ ଟଙ୍କା କେଉଁଠୁ ପାଇବି ? ସଙ୍ଗେ ସଙ୍ଗେ ମୋର ଶିକ୍ଷକମାନଙ୍କ ଉଦ୍ୟମରେ ସହୃଦୟ ସହପାଠୀମାନେ ଚାନ୍ଦା କରି ମୋତେ ସେ ଟଙ୍କା ଦେଇଦେଲେ । କେବଳ ସେତିକି ନୁହେଁ, ହେଡ୍‌ମାଷ୍ଟରଙ୍କୁ କହି, ସରକାରଙ୍କୁ ଲେଖାଲେଖି କରି ମୋ ବୃତ୍ତି ମୁଁ ଯେପରି ପୁଣି ପାଇବି, ସେ ଦିଗରେ ଶିକ୍ଷକମାନେ ଉଦ୍ୟମ ଚଳାଇଲେ । ସେମାନଙ୍କର ଚେଷ୍ଟା ସଫଳ ହେଲା ଏବଂ ମୁଁ ପୁଣି ବୃତ୍ତି ପାଇଲି । * *

## ଅସହଯୋଗରେ ଯୋଗଦାନ (୧୯୨୧)

ମୋର ମାଟ୍ରିକ୍ ସେକେଣ୍ଡ କ୍ଲାସ୍ । ପିତାଙ୍କର ଅକାଳ ମୃତ୍ୟୁ, ମୋର ଦୀର୍ଘ ଅସୁସ୍ଥତା, ଅଭାବ ଅନଟନ ଆଦି ଘାତ ପ୍ରତିଘାତ ଭିତରେ ଯେତେବେଳେ ମୋର ଜୀବନତରୀ ଏକ ଅସ୍ଥିର ସମୁଦ୍ରରେ ଆନ୍ଦୋଳିତ ହୋଇ ଚାଲିଥାଏ, ଠିକ୍ ସେତିକିବେଳେ ଗୋଟାଏ ଐତିହାସିକ ଘଟଣା ଘଟି ଆମ ଜାତିର ଜୀବନକୁ ବଦଳାଇ ଦେଲା ଏବଂ ସେହି ଘଟଣାର ଘୂର୍ଣ୍ଣି ଭିତରକୁ ହଜାର ହଜାର ଛାତ୍ରଙ୍କ ସହିତ ମୁଁ ମଧ୍ୟ ଟାଣି ହୋଇଗଲି । ମହାତ୍ମା ଗାନ୍ଧୀ ସ୍ୱାଧୀନତା ସଂଗ୍ରାମର ନେତୃତ୍ୱ ନେଇ ଅସହଯୋଗ ଆନ୍ଦୋଳନ ଆରମ୍ଭ କଲେ । କଲିକତା କଂଗ୍ରେସରୁ ଫେରି ଗୋପବନ୍ଧୁ ଦାସ ଓଡ଼ିଶାର ପୁରପଲ୍ଲୀରେ ପ୍ରଚାର କଲେ ସେହି ବିପ୍ଳବର ବାଣୀ । କଟକ ତିନିକୋଣିଆ ବଗିଚା ସଭାରେ ମୁଁ ସେ ମହାପୁରୁଷଙ୍କୁ ପ୍ରଥମେ ଦେଖିଲି । ସେଦିନ ସ୍କୁଲ ଛୁଟି ପରେ ହାତରେ ବହିପତ୍ର ଧରି କେତେକ ସହପାଠୀଙ୍କ ସହ ଗଲି ସେ ସଭା ଦେଖିବାକୁ । ସେତେବେଳେ ମୁଁ ସ୍ୱପ୍ନରେ ସୁଦ୍ଧା ଭାବି ନ ଥିଲି ଯେ ଏହି ବକ୍ତୃତା ମୋ ଜୀବନର ଗତିପଥକୁ ସମ୍ପୂର୍ଣ୍ଣ ବଦଳାଇ ଦେବ ।

ପଣ୍ଡିତ ଗୋପବନ୍ଧୁ ଅସହଯୋଗ ଆନ୍ଦୋଳନ ବିଷୟରେ ବୁଝାଉଥାଆନ୍ତି । ଜାଲିଆନାୱାଲାବାଗ ହତ୍ୟାକାଣ୍ଡ, ରାଓଲାଟ ଆଇନ, ଇଂରେଜ ସରକାରର ଶୋଷଣ ଓ ଦମନଲୀଳା, ମହାତ୍ମାଙ୍କ ନେତୃତ୍ୱ, ସ୍ୱରାଜର ଅର୍ଥ, ଅସହଯୋଗ ଓ ତାର ବିଭିନ୍ନ କାର୍ଯ୍ୟକ୍ରମ ଇତ୍ୟାଦି ବିଷୟରେ ସେ ଅନର୍ଗଳ କହି ଚାଲିଥାଆନ୍ତି । ଭାବାବେଶରେ ତାଙ୍କର ଗଳା ଫୁଲି ଉଠୁଥାଏ । ଗୋଟିଏ ଗୋଟିଏ ବାକ୍ୟ ଲମ୍ବିଯାଉଥାଏ ଯେପରି ତାଙ୍କ ଶ୍ୱାସଯନ୍ତ୍ରର ଚୂଡ଼ାନ୍ତ ଶକ୍ତିକୁ ପରଖ କରିବାପାଇଁ । ମୁଁ ଏଥିପୂର୍ବରୁ କେବେ ଏପରି ବକ୍ତୃତା ଶୁଣି ନ ଥିଲି । ଛାତ୍ରଜୀବନର ଶୃଙ୍ଖଳାଭିତରେ ଗୋଟିଏ ପୁସ୍ତକକୀଟ ହୋଇ ରହିଥିଲି । ଦେଶଦୁନିଆଁ ବିଷୟରେ ଚିନ୍ତା କରିବାକୁ କେହି ମୋତେ ଶିଖାଇ ନ ଥିଲେ । ସେଦିନ ସଭାରେ ଯାହା ସବୁ ଶୁଣିଲି, ତାହା ମୋ ମନରେ ଏକ ଗଭୀର ଆଲୋଡ଼ନ ସୃଷ୍ଟି କଲା । ଉଦ୍‌ବେଳିତ ହୃଦୟରେ ବସାକୁ ଫେରିଲି ।

ତା ପରଦିନ କଟକର ବାତାବରଣ ସରଗରମ ହୋଇ ଉଠିଲା । ଛାତ୍ରମହଲରେ ତାର ପ୍ରଥମ ପ୍ରତିକ୍ରିୟା ଦେଖାଦେଲା । ସ୍କୁଲକୁ ଯାଇ ଦେଖିଲି, ମୋର ପରି ଅନେକ ଛାତ୍ର ଉତ୍ତେଜିତ ଭାବରେ ଗତ ସନ୍ଧ୍ୟାର ବକ୍ତୃତା ବିଷୟ ଆଲୋଚନା କରୁଛନ୍ତି । ପାଠପଢ଼ାରେ କାହାରି ମନ ଲାଗୁନାହିଁ । ଶିକ୍ଷକ ନ ଥିଲାବେଳେ କେହି କେହି ବ୍ଲାକ୍‌ବୋର୍ଡରେ ଗାନ୍ଧୀ, ଅସହଯୋଗ, ସ୍ୱରାଜ୍ୟ ଇତ୍ୟାଦି ଲେଖିପକାଇ କୁହୃତ୍ତୃପ୍ତି ଅନୁଭବ କରୁଥାଆନ୍ତି । ବେଶି ସମୟ ରହି ହେଲା ନାହିଁ । ଗୋଟାଏ ଦୁଇଟା ପିରିଅଡ଼ ପରେ ଆମ ଶ୍ରେଣୀର ଅଧିକାଂଶ ଛାତ୍ର ସ୍କୁଲ ଛାଡ଼ି ରାସ୍ତାକୁ ବାହାରି ଆସିଲେ । ଶିକ୍ଷକମାନେ ଯେତେ ବୁଝାଇଲେ, ଆମ ଉତ୍ତେଜନା ଆଗରେ ସବୁ ବ୍ୟର୍ଥ ହେଲା ।

ବୀର ଦର୍ପରେ ଚାଲିଲୁ ପି.ଏମ୍. ଏକାଡେମି ଆଡ଼େ । ତା ପରେ ମସ୍‌ଲେମ୍ ସେମିନାରି (ସସ୍ୱେଦ ସେମିନାରି), ଟାଉନ ଭିକ୍ଟୋରିଆ (ଭକ୍ତମଧୁ ବିଦ୍ୟାପୀଠ); ସବୁ ଆଡ଼ୁ ଦଳ ଦଳ ଛାତ୍ର ଆସି ଆମ ସଙ୍ଗେ ଯୋଗ ଦେଲେ । ହାଇସ୍କୁଲ ଛାତ୍ରମାନଙ୍କର ଏକ ବିରାଟ ଶୋଭାଯାତ୍ରା ନ୍ୟାସଡ଼କ ଓ ବାଲୁବଜାର ଦେଇ କଟେଜ୍‌ଘାଟେ ସତ୍ୟବାଦୀ ମେସ୍ (ବର୍ତ୍ତମାନର ସ୍ୱରାଜ୍ୟ ଆଶ୍ରମ) ଅଭିମୁଖେ ଚାଲିଲା । ରେଭେନ୍‌ସା କଲେଜର ଛାତ୍ର ଓ ଅଧ୍ୟାପକମାନେ କୌତୂହଳୀ ହୋଇ ଆମ୍ଭମାନଙ୍କୁ ଚାହିଁଥାଆନ୍ତି । କଲେଜ ସେତେବେଳେ ହେଉଥାଏ ବର୍ତ୍ତମାନର କଲେଜିଏଟ୍ ସ୍କୁଲ ହତା ଭିତରେ ।

ସମ୍ବାଦ ପାଇ ପଣ୍ଡିତ ଗୋପବନ୍ଧୁ ଦାସ ଆମ୍ଭମାନଙ୍କୁ ଭେଟିବା ପାଇଁ ଘରଭିତରୁ ବାହାରି ଆସିଲେ । ଆଗୁଆ ଛାତ୍ରନେତାମାନଙ୍କ ସଙ୍ଗେ ତାଙ୍କର କଣ କଥାବାର୍ତ୍ତା ହେଲା, କହିପାରିବି ନାହିଁ । ମୁଁ ପଛରେ ଥାଏ । ତେବେ ଶୁଣିଲି, ସେ ଲୁଆଡ଼େ ପଚାରିଲେ, "Strike କାହିଁକି କରିଛ ?"

"ଆମ୍ଭେମାନେ ଜାତୀୟ ବିଦ୍ୟାଳୟରେ ପଢ଼ିବୁ । ଆଉ ଇଂରେଜ ସରକାରର ସ୍କୁଲରେ ପଢ଼ିବୁ ନାହିଁ ।"

"ତେବେ ସେଇ କଥା ଆଗ କର୍ତ୍ତୃପକ୍ଷଙ୍କୁ ଜଣାଅ । ସେ ଯଦି ନ ଶୁଣିବେ, ତେବେ ସିନା ଷ୍ଟ୍ରାଇକ୍ କରିବା ଉଚିତ ହେବ । ପୂର୍ବରୁ ତାହାଙ୍କୁ କିଛି ନ ଜଣାଇ ଏପରି ହଠାତ୍ ସ୍କୁଲ ଛାଡ଼ି ଆସିବାକୁ ମୁଁ କିଏ କହିଥିଲି ? ବର୍ତ୍ତମାନ ସ୍କୁଲକୁ ଫେରିଯାଅ ।"

ଉପରେ ମଧ୍ୟାହ୍ନର ପ୍ରଖର ରୌଦ୍ରତାପ, ସମ୍ମୁଖରେ ବୃଦ୍ଧପ୍ରତିମ ଗୋପବନ୍ଧୁଙ୍କର ସୌମ୍ୟ ମୂର୍ତ୍ତି, ବୁକୁ ଭିତରେ ହତାଶା ଓ ବ୍ୟର୍ଥତାର ବେଦନା । କେଡ଼େ ବଡ଼ ଅଭିଯାନର କି ପରିଣତି ହେଲା ! କ୍ଷଣକାଳ ନ ଯଯୌ ନ ତସ୍ଥୌ ଅବସ୍ଥାରେ ରହି ଯେ ମୁଁ ଆସ୍ତେ ଫେରି ଆସିଲୁ ।

ଧୀର ସ୍ଥିର ଭାବରେ ବିଚାର ନ କରି ଭାବପ୍ରବଣ ଛାତ୍ରମାନେ ଏହିପରି ହୁଜୁଗ୍‌ରେ ମାତି ଉଠନ୍ତି । ସାମୟିକ ଉତ୍ତେଜନା ସେମାନଙ୍କୁ ବିଭ୍ରାନ୍ତ କରେ । ଦଳର ବଳରେ ବଳୀୟାନ୍ ହୋଇ ସେମାନେ ପରିଣତିକୁ ପାସୋରି ଦିଅନ୍ତି । 'ଦାସେ ଆପଣେ'ଙ୍କଠାରୁ ଚେତାବନୀ ପାଇ ଅଧିକାଂଶ ପିଲା ସ୍କୁଲକୁ ଫେରିଗଲେ । ଏତେ ଶୀଘ୍ର ଶିକ୍ଷକମାନଙ୍କ ଆଗରେ ପରାଜିତ ମୁହଁ ଦେଖାଇବାକୁ ମୋତେ ଲାଜ ମାଡ଼ିଲା । ସ୍ୱର ଛଅଦିନ ଛୁଟି ନେଇ ଗାଁକୁ ବାହାରିଗଲି । ତା'ପରେ ଆସି ସ୍କୁଲରେ ଯୋଗ ଦେଲି ।

ତେଣେ ନୂଆମାସ ପର୍ଯ୍ୟନ୍ତ ପାଠପଢ଼ାରେ କିନ୍ତୁ ମନ ଲାଗିଲା ନାହିଁ । ପ୍ରାୟ ପ୍ରତିଦିନ କୌଣସି ନା କୌଣସିଠାରେ ସଭା ହେଉଥାଏ; କେଉଁ ଦିନ କାଠଯୋଡ଼ି ନଈବାଲିରେ । କିଏ ସ୍କୁଲ ଛାଡ଼ିଲା, କିଏ ଓକିଲାତି ଛାଡ଼ିଲା, କିଏ ବା ଉପାଧି ବର୍ଜନ କଲା । ଚନ୍ଦ୍ରମଣି ମହାରାଜ, ହରେକୃଷ୍ଣ ବୋଷ ପ୍ରଭୃତି ଯୁବନେତାଗଣ କଲେଜ ଓ ମେଡ଼ିକାଲ ଛାତ୍ର ସଭାମାନଙ୍କରେ ଉତ୍ତେଜନାମୟୀ ବକ୍ତୃତା ଦେଲେ । ସ୍ତୂପୀକୃତ ବିଲାତି ଲୁଗା ନଈବାଲିରେ ପୋଡ଼ା ହେଲା । ନେତା ଓ କର୍ମୀମାନଙ୍କ ସମାଗମରେ ଦିନକୁ ଦିନ ସ୍ୱରାଜ୍ୟ ଭୂମି ହୋଇଉଠିଲା କର୍ମମୁଖର ।

ମୁଁ ଏ ସବୁ ଦେଖୁଥାଏ, ଶୁଣୁଥାଏ । ନାନାଙ୍କ ମୃତ୍ୟୁ ପରଠାରୁ ମୋର ପାଠପଢ଼ା ନାନା ବାଧାବିଘ୍ନ ଭିତରେ ଗତି କରୁଛି । ମନରେ ସେ ଆଗ୍ରହ ବା ନିଷ୍ଠା ଭବ ନାହିଁ । ସବୁବେଳେ ଅର୍ଥାଭାବର ତାଡ଼ନା । ଏତିକିବେଳେ ପୁଣି ଏ ଆନ୍ଦୋଳନର ଅସହଯୋଗ ଆହ୍ୱାନ !

ବର୍ଷକ କପାଳକୁ ଯେପରିକି ଯିବା ଛୁଟିଲା ! ତୈମାସିକ ପରୀକ୍ଷା ଆସିଗଲା, କିନ୍ତୁ ମୁଁ ସେଥିପାଇଁ ପ୍ରସ୍ତୁତ ନ ହୋଇ ମନେ ମନେ ବିଚାର କରୁଥାଏ—ପାଠପଢ଼ା ଛାଡ଼ିଦେବି କି ? ଦିନେ ରାତିରେ ପଢ଼ାଘରେ ବସିଛି, କାଠଯୋଡ଼ି ନଈକୂଳରୁ ଭାସି ଆସିଲା ସମବେତ କଣ୍ଠରେ 'ଭାରତ ଜନନୀ ତେଜସ୍ୱୀ ଜୟ ତେଜସ୍ୱୀ ଜୟ ହୋ' । କୌଣସି ସ୍ୱେଚ୍ଛାସେବକର ଶବକୁ କାନ୍ଧରେ ବହନ କରି କେତେକ ଆଶ୍ରମବାସୀ

ଖାନନଗର ଶ୍ମଶାନ ଅଭିମୁଖରେ ଏଇ ଗୀତଟି ଗାଇ ଗାଇ ଚାଲିଥାନ୍ତି । ଏକ ଅପୂର୍ବ ଉନ୍ମାଦନାରେ ପ୍ରାଣ ମୋର ନାଚ ଉଠିଲା । ମନ ହେଲା, ଧାଇଁଯାଇ ସେମାନଙ୍କ ସଙ୍ଗରେ ମିଶି ଭାରତଜନନୀର ସେଇ ବନ୍ଦନାଟି ଗାଆନ୍ତି । କିନ୍ତୁ..... ଥରେ ଏକୁଟିଆ ଭୁଲ କରିଛି । ଏଥର ଯାହା କରିବ, ବିବେଚନା କରିବା; ଆଉ ସେପରି ପଥରେ ପଦେ଼ଇବାକୁ ନ ପଡ଼େ ।

ଷୈମାସିକ ପରୀକ୍ଷା ହେଲ, କିନ୍ତୁ ଉତ୍ତର ଖାତାରେ କଣ ଲେଖିଲି, ତାର ଠିକଣା ନାହିଁ । ଯେ ଆଉ ପାଠ ପଢ଼ିବ ନାହିଁ, ତା ନିକଟରେ ପରୀକ୍ଷାର ମୂଲ୍ୟ କଣ ଅଛି ? ପରୀକ୍ଷା ପରେ ପରେ ସ୍କୁଲକୁ ଯିବା ବନ୍ଦ କରିଦେଲି । ମୋର ପରି ଶହ ଶହ ଛାତ୍ର ସେତେବେଳକୁ ପାଠପଢ଼ା ଛାଡ଼ି ସ୍ୱରାଜ୍ୟାଶ୍ରମରେ ଭିଡ଼ ଜମେଇଥାନ୍ତି । ମୁଁ ବି ମୁକ୍ତି ଆଶାରେ ସେଇ 'ଗୋଦାବରୀ'କୁ ଗଡ଼ି ଚାଲି ।

## ବଢ଼ିଚଣା ଅଞ୍ଚଳରେ କଂଗ୍ରେସ କାର୍ଯ୍ୟ (୧୯୨୧)

ଗାଁ ଗହଳରେ ଅସହଯୋଗର ବାର୍ତ୍ତା ପ୍ରଚାର କରିବା ଲାଗି ସ୍ୱେଚ୍ଛାସେବକମାନେ ବିଭିନ୍ନ ସ୍ଥାନକୁ ପଠାହେଉଥାନ୍ତି । ସାନ ବଡ଼, କର୍ମୀ ଅ-କର୍ମୀ, ଶିକ୍ଷିତ ଅଶିକ୍ଷିତ, ସବୁ ପ୍ରକାର ଲୋକଙ୍କ ସମାଗମରେ ଆଶ୍ରମ ଏକ ପ୍ରଦର୍ଶନୀ ଗୃହରେ ପରିଣତ ହୋଇଥାଏ । କିଏ ମୋରି ପରି ଅଭିଭାବର ତାଡ଼ନାରେ ପାଠ ଛାଡ଼ି ଆସିଛି, କିଏ ବା ବାରମ୍ବାର ପରୀକ୍ଷାରେ ଫେଲ ହୋଇ ଦେଶସେବାର ଦୀକ୍ଷା ନେଇଛି; କାହାର ନେତୃତ୍ୱର ଲାଳସା, କାହାର ବା ଲାଭ ଉଠାଇବାର ଇଚ୍ଛା; କିନ୍ତୁ ଅଧିକାଂଶ ଦେଶପ୍ରେମରେ ଉଦ୍‌ବୁଦ୍ଧ ହୋଇ ଏଠି ଜମା ପଡ଼ୁଥାନ୍ତି । ସମସ୍ତେ ଖଦଡ଼ଧାରୀ; କିଏ ଭଦ୍ର, କିଏ ଠକ, ଜାଣିବାର ଉପାୟ ନାହିଁ । ମଧୁଫେଣାରେ ସବୁ ପ୍ରକାର ମାଛି ବେଢ଼ି ରହିଲା ପରି ଆଶ୍ରମରେ ଅନବରତ ଗହଳଚହଳ ଲଗାଇଥାନ୍ତି ମୁକ୍ତିସଂଗ୍ରାମର ଏହି ପ୍ରଥମ ସୈନିକମାନେ । ଏମାନଙ୍କୁ ନିୟନ୍ତ୍ରଣ କରିବା ଭାର ବୋଧହୁଏ ନ୍ୟସ୍ତ ଥାଏ ନିତ୍ୟାନନ୍ଦ 'ଅଟଳଦା'ଙ୍କ ଉପରେ । ଯେ ଆସିଲା, ତାକୁ ଖଦଡ଼ ଗେଟେ ଦେଇ କାର୍ଯ୍ୟର ନିର୍ଦ୍ଦେଶ ଦେବେ ସେ । ମୁଁ ତାଙ୍କଠାରୁ କୌଣସି ନିର୍ଦ୍ଦେଶ ପାଇବା ପୂର୍ବରୁ କୃଷ୍ଣଚନ୍ଦ୍ର ପ୍ରଧାନ ନାମକ ଜଣେ ସ୍ୱେଚ୍ଛାସେବକ ମୋତେ ତାଙ୍କ ସଙ୍ଗେ ପ୍ରଚାର କାର୍ଯ୍ୟରେ ଯିବାପାଇଁ ଡାକିଲେ । ଆଶ୍ରମରେ ଆଉ କାହାକୁ ଚିହ୍ନି ନ ଥିବାରୁ ମୁଁ ତାଙ୍କର ସଙ୍ଗରେ ମଫସଲକୁ ବାହାରିଲି ।

ଧାମନଗର ଷ୍ଟେସନରୁ ବଢ଼ିଚଣା ବାଟେ 'ବଡ଼ଧୁମୁରି' ଗାଁକୁ ଗଲୁ । ସେଇଠାରେ କୃଷ୍ଣବାବୁ ଅଗରୁ ଆସି 'ଆଶ୍ରମ'ଟିଏ କରିଥାନ୍ତି । ସେତେବେଳେ ଆଶ୍ରମ କହିଲେ ସାଧାରଣତଃ କଂଗ୍ରେସ କର୍ମୀଙ୍କ ବାସସ୍ଥାନ ଓ କର୍ମକେନ୍ଦ୍ରକୁ ବୁଝାଉଥିଲା । ଆମେ ତିନି ଚାରିଜଣ କର୍ମୀ ସେଇଠାରେ ରହି ଅସହଯୋଗ ବାର୍ତ୍ତା ପ୍ରଚାର କରୁ । ଗାଁ ଗାଁ ବୁଲି ଲୋକମାନଙ୍କୁ କହୁ, "ଉପାଦ୍ଧ କର, ଅରଟରେ ସୂତା କାଟ,

ବଲାତ୍‌ ଲୁଗା ଛାଡ଼, ନିଶା ଅଭ୍ୟାସ ଛାଡ଼, ଛୁଆଁ ଅଛୁଆଁ ଭେଦ ଦୂର କର”
ଇତ୍ୟାଦି । ‘ତିଳକ ସ୍ୱରାଜ୍ୟ ପାଣ୍ଠି’ ପାଇଁ ଚାନ୍ଦା ମଧ୍ୟ ଆଦାୟ କରୁ । ମୁଷ୍ଟିଭିକ୍ଷା କରି ନିଜର ଅନ୍ନସଂସ୍ଥାନ କରିବାକୁ ପଡ଼େ ।

ଏ ଏକ ସମ୍ପୂର୍ଣ୍ଣ ନୂଆ ଜୀବନ । ସହରର ରୁଟିନବନ୍ଧା ଜୀବନଠାରୁ ଏ ପୃଥକ୍ । ତ୍ରିକୋଣମିତିର ଫର୍ମୁଲା ମନେ ରଖିବାକୁ ନାହିଁ କି ସଂସ୍କୃତର ଧାତୁରୂପ ଘୋଷିବାକୁ ନାହିଁ । ହାତରେ ଘୋଷାଇବାସ କରି, ଖଦଡ଼ ପିନ୍ଧି, ଗାଁ ଲୋକଙ୍କ ମେଳରେ ଆମେ ବେଶ୍ ଫୂର୍ତ୍ତିରେ ଥାଉ । ‘ଗାନ୍ଧୀ ମାହାପୁରୁଙ୍କ ଲୋକ’ ବୋଲି କହି ବୁଢ଼ାବୁଢ଼ୀମାନେ ଆମକୁ ସମ୍ମାନ ଦେଖାନ୍ତି । ସେମାନଙ୍କର ପ୍ରତ୍ୟୟ ଜନ୍ମାଇବା ପାଇଁ ଆମର ନେତା କୃଷ୍ଣବାବୁ ସଭାରେ ବକ୍ତୃତା ଦେଲାବେଳେ କହନ୍ତି—‘ସତ୍ୟଯୁଗରେ ର ଅକ୍ଷରରେ ରାମ ରାବଣକୁ ମାରିଥିଲେ, ତ୍ରେତାଯୁଗରେ ବ ଅକ୍ଷରରେ ବାମନ ବଳୀକୁ ମାରିଥିଲେ, ଦ୍ୱାପର ଯୁଗରେ କ ଅକ୍ଷରରେ କୃଷ୍ଣ କଂସକୁ ମାରିଲେ, କଳିଯୁଗରେ ସେହିପରି ଗ ଅକ୍ଷରରେ ଗାନ୍ଧୀ ଆସିଛନ୍ତି ଗୋରାଲୋକଙ୍କୁ ମାରିବାପାଇଁ । କେତେବେଳେ ଗୋରା-ବଦଳରେ ‘ଗଭର୍ଣ୍ଣମେଣ୍ଟ’ ମଧ୍ୟ କହିଦିଅନ୍ତି । ତା ପଛକୁ ଅଚ୍ୟୁତାନନ୍ଦ ଦାସଙ୍କ ମାଳିକାରୁ ‘ଆସିବେ ମହନା ମୋଗଲ, ପୃଥିବୀକୁ କରିବେ ସଲ’ ପଦକ ଉଦ୍ଧାର କରି ତାର ଅର୍ଥ ଏହିପରି ବୁଝାନ୍ତି—ମହନା ଅର୍ଥାତ୍ ମୋହନଦାସ କରମଚାନ୍ଦ ଗାନ୍ଧୀ, ଏବଂ ମୋଗଲ ଅର୍ଥ ସୌକତ ଅଲି ଓ ମହମ୍ମଦ ଅଲି ଦୁଇଭାଇ । ଏମାନେ ମିଶି ପୃଥିବୀକୁ ‘ସଲ’ ଅର୍ଥାତ୍ ଶାସନ କରିବେ । ତାଙ୍କର ଏ ଅକାଟ୍ୟ ବେଦବାକ୍ୟକୁ ଖଣ୍ଡନ କରିବାକୁ ବା ଅବିଶ୍ୱାସ କରିବାକୁ ସରଳମତି ପଲ୍ଲୀବାସୀର ସାଧ କାହିଁ ?

ବ୍ରିଟିଶ ଶାସନରେ ଲୋକେ ସବୁଠାରୁ ବେଶି ଭୟ କରୁଥିଲେ ପୋଲିସକୁ । ‘କିବା ଦୁଃଖୀ ରଙ୍କୀ କି କୋଟିପତିଏ, ନାଲିପଗଡ଼ିକି ନ ଡରନ୍ତି କିଏ ?’ କବିବର ରାଧାନାଥ ‘ଦରବାର’ରେ ଏକଥା ଠିକ୍ କହିଛନ୍ତି । ତେଣୁ ସେଇ ପୁଲିସକୁ ସଭା ଭିତରେ ଦୁଇ ଚାରିପଦ ଗାଳିଗୁଲଜ କରି କୃଷ୍ଣବାବୁ ବେଶ୍ ଲୋକପ୍ରିୟତା ଅର୍ଜନ କରିଥାନ୍ତି । ପୋଲିସ୍‌ର ଧମକକୁ ତାଙ୍କର ମୋଟେ ଭୟ ନ ଥାଏ । ଓଲଟି ଆଶ୍ରମରେ କୁକୁରଟିଏ ପୋଷି ସେ ତା ନାଁ ଦେଇଥାନ୍ତି ‘ପୁଲିସ୍’ ।

ଦିନେ କଣ ଜାତିଆଣ କଥା ନେଇ କୃଷ୍ଣବାବୁ ଓ ମୋ ମଧ୍ୟରେ ଯୁକ୍ତିତର୍କ ଚାଲିଲା । ମୁଁ କହୁଥାଏ ଯେ ବ୍ରାହ୍ମଣ ସବୁଜାତି ମଧ୍ୟରେ ଶ୍ରେଷ୍ଠ । ସେ କହୁଥାନ୍ତି ତଥାକଥିତ ସବୁ ପଇତାଧାରୀ ବ୍ରାହ୍ମଣ ପ୍ରକୃତ ବ୍ରାହ୍ମଣ ନୁହନ୍ତି । କେବଳ ବ୍ରାହ୍ମଣ ଘରେ ଜନ୍ମ ହୋଇ କେହି ଉଚ୍ଚ ସମ୍ମାନର ଅଧିକାରୀ ହୋଇ ନ ପାରେ । ଶୁଚି, ନିଷ୍ଠା, ପବିତ୍ରତା ଓ ଶୁଦ୍ଧ ଆଚାର ବିଚାର ଆଦି ଥିବା ଦରକାର । ସେ ମୋତେ ପଚାରିଲେ, “ଜଣେ ଅଶୁଚି, ଅପରିଷ୍କାର, ପାପାଚାରୀ ବ୍ରାହ୍ମଣ ଓ ଜଣେ ଶୁଚିମନ୍ତ, ନୈଷ୍ଠିକ, ନିଷ୍ପାପ ଅବ୍ରାହ୍ମଣ—ଏ ଦୁହିଁଙ୍କ ମଧ୍ୟରୁ କାହା ହାତରେ ଖାଇବାକୁ ତୁମର ରୁଚି

ହେବ ?" ମୁଁ ପୂର୍ବରୁ କେବେ ଗମ୍ଭୀର ଭାବରେ ଏ ବିଷୟରେ ଚିନ୍ତା କରି ନ ଥିଲି । କେବଳ ବ୍ରାହ୍ମଣ ଘରେ ଜନ୍ମ ହୋଇ ପଇତାରୂପ ସାର୍ଟିଫିକେଟ ଖଣ୍ଡେ ପାଇଗଲେ ଜଣେ 'ଛତିଶ ପାଟକର ରଜା' ହୋଇଯିବ ବୋଲି ମୋର ଧାରଣା ଥିଲା । ବର୍ତ୍ତମାନ ତାଙ୍କ ସଙ୍ଗେ ଆଲୋଚନା କରି ବୁଝିଲି ମୋର ଧାରଣା ଠିକ୍ ନୁହେଁ । ଗୁଣ ଓ କର୍ମ ଅନୁସାରେ ମନୁଷ୍ୟ ବ୍ରାହ୍ମଣ ବା ଶୂଦ୍ର ହୁଏ । କହିବା ବାହୁଲ୍ୟ, ଏହି ଆଲୋଚନା ମୋ ମନରୁ କେତେକ ଭ୍ରାନ୍ତ ବିଶ୍ୱାସକୁ କେବଳ ଯେ ଦୂର କରିଦେଲା ତା ନୁହେଁ, ମୋର ପରବର୍ତ୍ତୀ ଜୀବନକୁ ମଧ୍ୟ ପ୍ରଭାବିତ କଲା । 'ବ୍ରାହ୍ମଣରେ ଭିକ୍ଷାବୃତ୍ତି' ଶୀର୍ଷକ ମୋର ଯେଉଁ କେତୋଟି ଲେଖା 'ସହକାର'ରେ ପ୍ରକାଶିତ ହୋଇଥିଲା, ସେଥିରେ ଏହି ବିଚାରଧାରାର ଗ୍ରୁଷ୍ଟାପାତ ହୋଇଛି ।

କୃଷ୍ଣବାବୁଙ୍କ ସଙ୍ଗେ ବେଶି ଦିନ କାମ କରିବାର ସୁଯୋଗ ମୋତେ ମିଳି ନ ଥିଲା । ବଡ଼ଚଣା ଥାନା ପୁଲିସ ଅଫିସରଙ୍କ ଅନ୍ୟାୟ ଆଚରଣ ସମ୍ପର୍କରେ ସେ ଏକ ସମ୍ବାଦ ପଣ୍ଡିତ ନୀଳକଣ୍ଠ ଦାସଙ୍କ ସମ୍ପାଦିତ 'ସେବା' ସମ୍ବାଦପତ୍ରରେ ପ୍ରକାଶ କରିଥିବାରୁ ମାନହାନି ଅଭିଯୋଗରେ ତାଙ୍କୁ ଗିରଫ କରାଯାଇ କଟକ ଜେଲରେ ରଖାଯାଇଥିଲା । ତାଙ୍କୁ ଦେଖିବା ପାଇଁ ମୁଁ ଥରେ କଟକ ଜେଲକୁ ଆସିଥିଲି ଏବଂ ଲୁହା ଜାଲିବାଡ଼ାର ବାହାରେ ରହି ତାଙ୍କ ସଙ୍ଗେ କଥାବାର୍ତ୍ତା କରିଥିଲି ।

## କୁଦାନଗରୀ ଆଶ୍ରମରେ

ଏହା ପରେ ମୁଁ ଆଉ ବଡ଼ଚଣା ନ ଯାଇ ଅନ୍ୟ ଏକ କେନ୍ଦ୍ରରେ କର୍ମୀ ଭାବରେ ଯୋଗଦେଲି । କିପରି ସେଠାକୁ ଗଲି, ମନେନାହିଁ । ବୋଧହୁଏ କଟକ ସ୍ୱରାଜ୍ୟାଶ୍ରମରୁ ନିର୍ଦ୍ଦେଶ ପାଇ ଗଲି । ଏକା ଏକା ଅବଶ୍ୟ ସେଠାକୁ ଯିବାକୁ ହେଲା । ଏଥିପୂର୍ବରୁ ମୁଁ ଖୁବ୍ ଲାଜକୁଳା, ଡରକୁଳା ଏବଂ ପରନିର୍ଭରଶୀଳ ଥିଲି, ମାତ୍ର କିଛିଦିନ କଂଗ୍ରେସ କାର୍ଯ୍ୟ କରିବାପରେ ମୋ ସାହସ ବଢ଼ିଗଲା ଏବଂ ଏକୁଟିଆ କୌଣସି ନୂଆ ଜାଗାକୁ ଯିବାପାଇଁ ମୁଁ ପଛେଇଲି ନାହିଁ ।

ଏଥର ମୁଁ ଗଲି କୁଦାନଗରୀ ଆଶ୍ରମକୁ । ଚିତ୍ରୋତ୍ପଳା ନଦୀତଟରେ କୁଦାନଗରୀ ଏକ ରମଣୀୟ ସ୍ଥାନ । ନିକଟସ୍ଥ ମଧୁଶାସନ ଶିମିଳିଆ ଗ୍ରାମର ହରିଚରଣ ମହାନ୍ତିଙ୍କର ଗୋଟିଏ ବାହାର ଘରେ ଶ୍ରୀ ଚନ୍ଦ୍ରଶେଖର ମିଶ୍ର ଏକ ସେବାକେନ୍ଦ୍ର ଖୋଲି ରହିଥାନ୍ତି । ସେଠାରେ ରହି ସେ ଚତୁର୍ଦ୍ଦିଗସ୍ଥ ଗ୍ରାମମାନଙ୍କରେ ବୁଲି ହୋମିଓପ୍ୟାଥିକ ଔଷଧ ବିତରଣ କରନ୍ତି ଏବଂ କଂଗ୍ରେସ ବାର୍ତ୍ତା ପ୍ରଚାର କରନ୍ତି । ଆମ୍ଭେମାନେ ତାଙ୍କ ନିର୍ଦ୍ଦେଶରେ ଗ୍ରାମବାସୀଙ୍କୁ ଜଣାଗ୍ରହ କରିବାକୁ ଏବଂ ଅରଟରେ ସୂତା କାଟିବାକୁ ପ୍ରବର୍ତ୍ତିନା ଦେଉ ।

ଆମେ ଯେଉଁ ଘରଟିରେ ଆଶ୍ରମ କରି ରହୁଥାଉ, ସେଇ ଘରେ ଆମ ସହିତ ଶ୍ରୀ ଶିଶିର କୁମାର ଦେ ନାମକ ଜଣେ ସ୍କୁଲ ସବ୍‌ଇନସପେକ୍ଟର ରହୁଥାନ୍ତି । ସେ ପ୍ରତିଦିନ କିଛି ସମୟ ଘର ବନ୍ଦ କରି ଯୋଗ ଅଭ୍ୟାସ କରନ୍ତି । ଧୂପ ଗନ୍ଧରେ ଆଶ୍ରମ ଗୃହ ଆମୋଦିତ ହୁଏ । ମୁଁ ଯୋଗ ସମ୍ବନ୍ଧରେ ସେତେବେଳେ ବିଶେଷ କିଛି ଜାଣି ନ ଥିଲେ ସୁଦ୍ଧା ତାଙ୍କର ସୁଗଠିତ ବପୁ ଓ ତେଜୋଦୀପ୍ତ ଚେହେରା ଦେଖି ଅଲକ୍ଷ୍ୟରେ ଏକ ପବିତ୍ର ଆଧ୍ୟାତ୍ମିକ ପରିବେଶ ମଧ୍ୟକୁ ଆକୃଷ୍ଟ ହୋଇଯାଇଥିଲି ।

ଶ୍ରୀଯୁକ୍ତ ଚନ୍ଦ୍ରଶେଖର ମିଶ୍ର ପରେ ସାଲେପୁରଠାରେ ଗୋଟିଏ ସେବାଶ୍ରମ ପ୍ରତିଷ୍ଠା କରି ରହିଥିଲେ । ଅନ୍ୟାନ୍ୟ ସମାଜମଙ୍ଗଳ କାର୍ଯ୍ୟରେ ଯୋଗଦେବା ସଙ୍ଗେ ସଙ୍ଗେ ସେ ଆମ ପ୍ରାଚୀନ ଶାସ୍ତ୍ରର ପର୍ଯ୍ୟାଲୋଚନା କରନ୍ତି । ଶ୍ରୀ ରାମକୃଷ୍ଣ ପରମହଂସଙ୍କର ସେ ଜଣେ ଭକ୍ତ । କୁଦାନଗଡ଼ରେ ଥିଲାବେଳେ ମଧ୍ୟ ସେ ଶ୍ରୀ ରାମକୃଷ୍ଣ ଜନ୍ମୋତ୍ସବ ପାଳନ କରୁଥିଲେ । ହରିଶରଣ ବାବୁଙ୍କ ପ୍ରଦତ୍ତ ଅର୍ଥରେ ସେ ଯେଉଁ ରଘୁନାଥଙ୍କ ମନ୍ଦିରଟି ତୋଳାଇଥିଲେ, ସେଠାରେ ଆଜି ପର୍ଯ୍ୟନ୍ତ ସେହିପରି ସେବା-ପୂଜା ଚାଲିଥିବାର ଶୁଣାଯାଏ ।

ଚନ୍ଦ୍ରଶେଖରବାବୁ ମୋତେ ଅଧିକ ପାଠ ପଢ଼ିବା ପାଇଁ ପ୍ରେରଣା ଦେଇଥିଲେ । ମୋର ପରବର୍ତ୍ତୀ ଜୀବନରେ ସେ ମୋର ପରମ ହିତାକାଂକ୍ଷୀ ଥିଲେ । ମୋ ଦ୍ୱାରା ସମ୍ପାଦିତ 'ସଂସାର' ପତ୍ରିକାରେ ସେ ମଧ୍ୟେ ମଧ୍ୟେ ଲେଖାଲେଖି କରୁଥିଲେ ଏବଂ ଏହାର ପ୍ରଚାର ଓ ପ୍ରସାର ଦିଗରେ ଉଦ୍ୟମ କରି ମୋତେ ଉତ୍ସାହିତ କରୁଥିଲେ ।

## କଟକ ସ୍ୱରାଜ୍ୟାଶ୍ରମରେ (୧୯୨୨)

କୁଦାନଗଡ଼ ଆଶ୍ରମରେ କିଛିଦିନ ରହି କଟକ ସ୍ୱରାଜ୍ୟାଶ୍ରମକୁ ଫେରି ଆସିଲି । ମୋର ପରି ଆଉ କେତେଜଣ ସ୍ୱେଚ୍ଛାସେବକ ଓଡ଼ିଶାର ବିଭିନ୍ନ ସ୍ଥାନରୁ ଆସି ସେଠାରେ ଥାନ୍ତି । ଆମ୍ଭେମାନେ ମିଳିମିଶି ରୋଷାଇବାସ କରୁ, ରାସ୍ତାରେ ବୁଲି 'ସମାଜ' 'ଦୈନିକ ବସୁମତୀ' ପ୍ରଭୃତି ଖବରକାଗଜ ବିକୁ ଏବଂ ମୁଷ୍ଟିଭିକ୍ଷା ସଂଗ୍ରହ କରୁ । କେହି ଚାହିଁଲେ ତାଙ୍କ ଘରେ ଖଦଡ଼ ଦେଇଆସୁ । କେତେବେଳେ କେମିତି ସଭା ଓ ଶୋଭାଯାତ୍ରାରେ ଯୋଗ ଦେଉ । ମଦଦୋକାନ ଆଗରେ ମଧ୍ୟ ପିକେଟିଂ କରିବାକୁ ପଡ଼େ । ଡାକ୍ତର ଅଟଳବିହାରୀ ଆଚାର୍ଯ୍ୟ ଥାଆନ୍ତି ଆମର ପ୍ରଧାନ ପରାମର୍ଶଦାତା ଓ ପରିଚାଳକ ।

ଏହି ସମୟରେ ଏକ ବିଶିଷ୍ଟ ଘଟଣା ଘଟିଲା । ସେ ବର୍ଷ ଗ୍ରୀଷ୍ମ ଋତୁରେ ଆଇନ ଅମାନ୍ୟ ଅନୁସନ୍ଧାନ କମିଟି ( Civil Disobedience Enquiry Committee )ର ସଭ୍ୟମାନେ ଓଡ଼ିଶା ଗସ୍ତରେ ଆସି କଟକରେ ପହଞ୍ଚିଲେ । ସେମାନଙ୍କୁ ରେଲଷ୍ଟେସନରୁ ଆଣିବା ପାଇଁ ଗାଡ଼ି ନେଇ ନେତା ଓ ସ୍ୱେଚ୍ଛାସେବକମାନେ

ଯାଇଥିଲେ । ଅନ୍ୟାନ୍ୟ ସହକର୍ମୀଙ୍କ ସଙ୍ଗରେ ମୁଁ ମଧ୍ୟ ସେଦିନ ଷ୍ଟେସନକୁ ଯାଇଥିଲି । ଗଣେଶଲାଲ ପଣ୍ଡିତଙ୍କ ବଗିଗାଡ଼ିରେ ପଣ୍ଡିତ ଜବାହରଲାଲଙ୍କ ପିତା ମୋତିଲାଲ ନେହେରୁ ଓ ଅନ୍ୟ ତିନିଜଣ ବିଶିଷ୍ଟ କଂଗ୍ରେସ ନେତା ଆସିଥିଲେ । ସେହି ଗାଡ଼ିର ଗୋଟିଏ ପାଖରେ ଗ୍ୟାସ୍ ଆଲୁଅ ( କାରବାଇଡ଼ ଷ୍ଟାଣ୍ଡ୍ )ଟିଏ ଧରି ମୁଁ ଠିଆ ହୋଇଥିଲି ଏବଂ ଅନ୍ୟ ପାଖରେ ଥିଲେ ରାଜକୃଷ୍ଣ ବାବୁ । ସ୍ୱେଚ୍ଛାସେବକ ଭାବରେ ହେଲେ ମଧ୍ୟ କିଛି ସମୟ ପାଇଁ ଏତେ ବଡ଼ ଜଣେ ସର୍ବଭାରତୀୟ ନେତାଙ୍କ ସାନ୍ନିଧ୍ୟ ଲାଭ କରି ମୁଁ ସେଦିନ ନିଜକୁ ଭାଗ୍ୟବାନ ମନେ କରିଥିଲି ଏବଂ ଆଜି ମଧ୍ୟ ସେ ସ୍ମୃତି ମୋ ମନରେ ଗର୍ବ ସଞ୍ଚାର କରେ ।

କଟକ ଆଶ୍ରମରେ ଥିଲାବେଳେ ଗୋପବାବୁ (ଗୋପବନ୍ଧୁ ଚୌଧୁରୀ)ଙ୍କ ସଙ୍ଗେ ପରିଚୟର ସୁଯୋଗ ମିଳିଥିଲା । ସେ ପ୍ରତିଦିନ ପ୍ରତ୍ୟୁଷରୁ ସ୍ନାନାଦି ନିତ୍ୟକର୍ମ ସାରି ଆଶ୍ରମରେ ଆସି ପହଞ୍ଚୁଥିଲେ । ଡାକ୍ତର ଅଟଳବିହାରୀ ଆଚାର୍ଯ୍ୟ, ଯଦୁମଣି ମଙ୍ଗରାଜ, ରାଜକୃଷ୍ଣ ବୋଷ, ପ୍ରାଣକୃଷ୍ଣ ପଡ଼ିହାରୀ, ଭଗୀରଥ ମହାପାତ୍ର, ବୀରକିଶୋର ଦାସ, ନାରାୟଣ ବୀରବର ସାମନ୍ତ, ସହଦେବ ଦାସ ପ୍ରମୁଖ ନେତୃସ୍ଥାନୀୟ ବ୍ୟକ୍ତିମାନଙ୍କ ସଙ୍ଗେ ମଧ୍ୟ ସେହିଠାରେ ପରିଚୟ ହୋଇଥିଲା ।

ଜାତୀୟ କବି ବୀରକିଶୋରଙ୍କ ‘ମୋହନ ବଂଶୀ’ କବିତା ପୁସ୍ତିକାଟି ସେତିକି-ବେଳେ ପ୍ରକାଶ ପାଇଥିଲା । ତାକୁ ପଢ଼ି ମୁଁ ସାତିଶୟ ମୁଗ୍ଧ ହୋଇଥିଲି । କିଶୋର ବୟସର ଭାବପ୍ରବଣ ମନରେ ସେ ଦେଶାତ୍ମବୋଧ କବିତାଗୁଡ଼ିକ ଗଭୀର ରେଖାପାତ କରିଥିଲା । ଆଜି ମଧ୍ୟ ତାର ପଦଗୁଡ଼ିକ ମନେରହିଛି—

ରାଧାନାଥ ପରି ତୋହର ସନ୍ତାନ ଚିଲିକା କୂଳରେ ବସି
ଗୃହିଣୀ ରାତିରେ ଗାଇଲା ଯେ ଗୀତ ଶୁଣିଥିଲୁ ହସି ହସି ।
ଅନନ୍ତ ଆକାଶେ କୋଟି କୋଟି ତାରା ଗୋଟି ଗୋଟି କରି ଗଣି
ଭାରତୀ ମନ୍ଦିରେ ରଖି ଦେଇଗଲା ଶ୍ରୀ ସାମନ୍ତ ଶିରୋମଣି ।
ନୀଳ ଅମ୍ବୁକୂଳେ ଝଙ୍କା ଆମ୍ବ ମୂଳେ ରହିଛୁ ତୋ କାଙ୍ଗାଳୀ,
ଆମେ ସବୁ ଆଜି ଦାନାକନା ଲାଗି ଖୋଜୁଛୁ କର୍ଣ୍ଣଗିରି ।
......ଇତ୍ୟାଦି

କବି ଏ ବହିଟିକୁ ଉତ୍କଳଗୌରବ ମଧୁସୂଦନଙ୍କ ନାମରେ ଉତ୍ସର୍ଗ କରିଥିଲେ ହେଁ ଏହାକୁ ଛାପିବାକୁ ସେତେବେଳେ କେହି ସାହସ କଲେ ନାହିଁ । ପରିଶେଷରେ କବିଙ୍କର ଜଣେ ବନ୍ଧୁଙ୍କ ସହାୟତାରେ ମୁକୁର ପ୍ରେସରେ ଏହା ମୁଦ୍ରିତ ହୋଇ ପ୍ରକାଶ ପାଇଲା । ସେଥିଲାଗି ସେ ପ୍ରେସର ମାଲିକ ବ୍ରଜସୁନ୍ଦରବାବୁଙ୍କୁ ବହୁ ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼ିଥିଲା ।

ପଣ୍ଡିତ ନୀଳକଣ୍ଠ ଦାସ, ଶ୍ରୀଯୁକ୍ତ ହରେକୃଷ୍ଣ ମହତାବ, ଗଞ୍ଜାମର ଅନ୍ୟତମ କଂଗ୍ରେସ ନେତା ଶ୍ରୀଯୁକ୍ତ ବିଶ୍ୱନାଥ ଦାସ ଓ ନିରଞ୍ଜନ ପଟ୍ଟନାୟକ ମଝିରେ ମଝିରେ ଆଶ୍ରମକୁ ଆସୁଥିଲେ । ପରେ ବ୍ରହ୍ମପୁରରେ ନିଖିଳ ଉତ୍କଳ କଂଗ୍ରେସ କର୍ମୀ ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା । କଟକର ଅନ୍ୟାନ୍ୟ କର୍ମୀମାନଙ୍କ ସହ ମୁଁ ସେଥିରେ ଯୋଗ ଦେବାକୁ ଯାଇଥିଲି । ମୋ ଜୀବନରେ ବ୍ରହ୍ମପୁର ଯିବା ଓ ବାଟରେ ଚିଲିକା ଦେଖିବା ସେଇ ପ୍ରଥମ । ସମ୍ମିଳନୀରେ କି କି ବିଷୟ ଆଲୋଚିତ ହେଲା, ଜାଣେ ନାହିଁ । କେବଳ ମନେ ଅଛି, ଆମ୍ଭମାନଙ୍କର ଗୋଟିଏ ଗ୍ରୁପ୍ ଫଟୋ ସେଠାରେ ନିଆ-ଯାଇଥିଲା । ଫଟୋଟିକୁ କିଣିବାର ମୋର ସମ୍ବଳ ନ ଥିଲା । ବହୁଦିନ ପର୍ଯ୍ୟନ୍ତ ଅଟଳବାବୁଙ୍କ ପ୍ରିନ୍‌ସିପାଲ୍ ଔଷଧାଳୟର କାନ୍ଥରେ ସେ ଫଟୋଟିକୁ ମୁଁ ଦେଖିଥିଲି ।

**ଅଳକାଶ୍ରମରେ** (୧୯୨୨-୨୩)

କଟକ ଛାଡ଼ି ମୁଁ କିପରି ପୁଣି ଜଗତ୍‌ସିଂହପୁର ଅଳକାଶ୍ରମରେ ପହଞ୍ଚିଲି, ମନେ ନାହିଁ । ସେଠାରେ ଯେଉଁ କେତେ ମାସ ରହିଲି, କଠୋର ଶୃଙ୍ଖଳା ଓ କର୍ମର ଆବେଷ୍ଟନୀ ମଧ୍ୟରେ ମୁଁ ନିଜକୁ ହଜାଇ ଦେଇଥିଲି । ପୂଜ୍ୟ ଗୋପବନ୍ଧୁ ଚୌଧୁରୀ ଓ ଭଗୀରଥ ମହାପାତ୍ରଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ସେଠାରେ ସମସ୍ତ କାର୍ଯ୍ୟ ପରିଚାଳିତ ହେଉଥିଲା । ପୂର୍ବରୁ ତ ସୂତାକଟା ଶିଖିଥିଲି, ଏଠାରେ ଲୁଗାବୁଣା ଶିଖିଲି । ଜଣେ ଶିକ୍ଷକ ଆମକୁ ଲୁଗାବୁଣାର ବିଭିନ୍ନ ପ୍ରକ୍ରିୟା ଶିଖାଉଥିଲେ । ହାତକଟା ସୂତାକୁ ମୋଡ଼ାରୁ ନେଇ ଫ୍ଲାଇ ସଟଲ୍ ବା ଠକ୍‌ଠକି ତନ୍ତରେ ବୁଣି ଲୁଗାରେ ପରିଣତ କରିବାପର୍ଯ୍ୟନ୍ତ ସମସ୍ତ କାର୍ଯ୍ୟ ମୁଁ ଏଠାରେ ରହି ଶିଖିଥିଲି ଏବଂ ଦିନକୁ ଆଠ ଦଶ ହାତ ଲୁଗା ବୁଣି ପାରୁଥିଲି ।

ସୁଦର୍ଶନ ପ୍ରହରାଜ, ବିଶ୍ୱନାଥ ନନ୍ଦ, କୃଷ୍ଣଚନ୍ଦ୍ର ପ୍ରଧାନ ଓ ଉଦୟନାଥ ଷଡ଼ଙ୍ଗୀ ପ୍ରମୁଖ କର୍ମୀମାନେ ମଧ୍ୟ ସେଠାରେ ରହି ଲୁଗାବୁଣା ଇତ୍ୟାଦି କାମ ଶିଖୁଥିଲେ । ଆମ ଏଇ କେତେଜଣଙ୍କ ମଧ୍ୟରେ ଘନିଷ୍ଠ ବନ୍ଧୁତା ଜନ୍ମିଥିଲା । କୃଷ୍ଣବାବୁ ଏଥିପୂର୍ବରୁ ରାମକୃଷ୍ଣ କଲେଜର ଛାତ୍ର ଥିବାରୁ ବେଳେବେଳେ ରାମକୃଷ୍ଣ ପରମହଂସ ଓ ସ୍ୱାମୀ ବିବେକାନନ୍ଦଙ୍କ ଉପଦେଶ ଅନୁଯାୟୀ ଚରିତ୍ର ଗଠନ କରିବାକୁ ଆମକୁ ପରାମର୍ଶ ଦେଉଥିଲେ । ଯେଉଁ ବୟସରେ ନୈତିକ ସ୍ଖଳନର ସହଜ ଅବକାଶ ଥାଏ, ସେତେବେଳେ ତାଙ୍କର ତଦ୍‌ବିଷୟକ ସୁପରାମର୍ଶ ଓ ଆଲୋଚନା ମୋତେ ସୁପଥଗାମୀ ହେବାରେ ଯଥେଷ୍ଟ ସାହାଯ୍ୟ କରିଥିଲା । ସେହିଦିନଠାରୁ ମୁଁ ମହାତ୍ମା ଗାନ୍ଧୀ ଓ ଶ୍ରୀରାମକୃଷ୍ଣ ପରମହଂସଙ୍କୁ ମୋ ଜୀବନର ଶ୍ରେଷ୍ଠ ଗୁରୁରୂପେ ବାଛି ନେଇଥିଲି ।

ଗୋପବାବୁ ଥିଲେ ଆମ୍ଭମାନଙ୍କର ମୁଖ୍ୟ ଅଭିଭାବକ । ତାଙ୍କର ବଳିଷ୍ଠ ବ୍ୟକ୍ତିତ୍ୱ, ନିରଳସ ସ୍ୱଭାବ ଏବଂ କଠୋର ନିୟମାନୁବର୍ତ୍ତିତା ଯୋଗୁ ସେ ସମସ୍ତଙ୍କର

ଭକ୍ତି ଓ ସମ୍ମାନର ପାତ୍ର ହୋଇଥିଲେ । ସେ ଆମ୍ଭମାନଙ୍କ ସଙ୍ଗେ ମିଶି ତୂଳାଭିଣା, ସୂତାକଟା ଓ ଲୁଗାବୁଣା ଇତ୍ୟାଦି ସକଳ କାର୍ଯ୍ୟ କରୁଥିଲେ । ମଝିରେ ମଝିରେ ନିକଟବର୍ତ୍ତୀ ଗ୍ରାମମାନଙ୍କରେ ବୁଲି ଦୁଃଖୀ ଓ ରୋଗୀମାନଙ୍କର ସେବା କରିବା, ହୋମିଓପ୍ୟାଥିକ୍ ଔଷଧ ବିତରଣ କରିବା ଏବଂ କଂଗ୍ରେସର ବାର୍ତ୍ତା ପ୍ରଚାର କରିବା ତାଙ୍କ କାର୍ଯ୍ୟକ୍ରମର ଅନ୍ତର୍ଭୁକ୍ତ ଥିଲା । ଅନେକଥର ସେ ମୋତେ ତାଙ୍କ ସଙ୍ଗରେ ନେଇ ଗ୍ରାମମାନଙ୍କୁ ଯାଉଥିଲେ । ମୋ ପ୍ରତି ତାଙ୍କର ଅକୃତ୍ରିମ ସ୍ନେହର ପରିଚୟ ମୁଁ ଅନେକ ଘଟଣାରୁ ପାଇଛି । ଅଳକାଶ୍ରମର ଆମ୍ବତୋଟାରେ ମୋତେ ଏକୁଟିଆ ବସାଇ ସେ କେତେଥର ଲାଲା ଲଜପତ ରାୟଙ୍କ ଲିଖିତ କେତେକ ବହି ଓ ମହାତ୍ମାଙ୍କ 'ୟଙ୍ଗ୍ ଇଣ୍ଡିଆ' ପ୍ରଭୃତି ପଢ଼ାଉଥିଲେ । ମୋର ଜ୍ଞାନର ପରିସର ବଢ଼ାଇବା ବୋଧହୁଏ ତାଙ୍କର ଅଭିପ୍ରାୟ ଥିଲା । ଅଳକାଶ୍ରମରେ ଥିଲାବେଳେ ତାଙ୍କର ପ୍ରେରଣାରେ ଖଣ୍ଡିଏ ହାତଲେଖା ପତ୍ରିକା ଆମ୍ଭେମାନେ ପ୍ରକାଶ କରିଥିଲୁ । ସେଥିରେ ମୋର କେତେଗୋଟି କବିତା ଓ ଗଳ୍ପ ସ୍ଥାନ ପାଇଥିଲା ।

ଥରେ ମୁଁ ଆଶ୍ରମରୁ କିଛି ଦିନ ଛୁଟି ନେଇ ଗ୍ରାମକୁ ଯାଇଥାଏ । ଦିନେ ବାପା ମୋର ବିବାହ ପ୍ରସ୍ତାବ ଆଗତ କଲେ । ପାଖରେ ଜେକେଇ ଓ ଗ୍ରାମର ଆଉ ଜଣେ ମୁରବିସ୍ଥାନୀୟ ଲୋକ ବସିଥାନ୍ତି । ଏକେ ତ ମୋତେ ଅଳ୍ପ ବୟସ, ଦ୍ୱିତୀୟରେ ମୋ ଜୀବନ ଏକ ଅନିଶ୍ଚୟତା ମଧ୍ୟରେ ଗତି କରୁଛି; ତେଣୁ ମୁଁ ସେ ପ୍ରସ୍ତାବରେ ରାଜି ହେଲି ନାହିଁ, ଓଲଟି ସେମାନଙ୍କ ସଙ୍ଗେ ଯୁକ୍ତି କରିବାକୁ ଆରମ୍ଭ କଲି । ବାପା ଟିକିଏ ବିରକ୍ତ ହୋଇ କହିଲେ, "ଆଚ୍ଛା, ଆମେ ତ ବିଭା କରିଦେବୁ, ଏ ନାହିଁ କଲେ କଣ କାମଟା ଅଟକିଯିବ ? ପୁଅର କଥାରେ କଥା ?" ମୁଁ କହିଲି, "ଯଦି ବିଭାଘର ଦିନ ମୁଁ ଉପସ୍ଥିତ ନ ରହେ, କିମ୍ବା ବେଦୀ ଉପରୁ ଉଠି ଚାଲିଯାଏ, ତେବେ ତୁମେ କିପରି ବିଭାଘର କରିବ ?"

ମୋର ଏ ଔଦ୍ଧତ୍ୟ ପାଇଁ ବାପା ଆଦୌ ପ୍ରସ୍ତୁତ ନ ଥିଲେ । "ସତ କଥା, ଟୋକାଟା କଂଗ୍ରେସରେ ପଶିଛି । ତା ପକ୍ଷରେ ଏପରି ଗୋଟାଏ କିଛି କରିଦେବା ଅସମ୍ଭବ ନୁହେଁ । ହେଲେ ମୁଁ କି ଲୋକହସା ନ ହେବି !" ଏହିପରି ଭାବି "ହଉ, ତୁମ ଇଚ୍ଛା ଯାହା, ତା' କର" କହି ବାପା ସେଠାରୁ ଦୁଃଖ ଓ ବିରକ୍ତିରେ ଉଠି ଚାଲିଗଲେ । ଆଲୋଚନା ସେତିକିରେ ରହିଲା ।

ମୁଁ ଘରୁ ବାହାରି ଆସିଲାବେଳକୁ ଦେଖିଲି ବୋଉ ପିଣ୍ଡାରେ ଠିଆ ହୋଇଛି । ମୋତେ ଦେଖି ସେ କାନ୍ଦି କାନ୍ଦି କହିଲା, "ନନା ତ ମରିଗଲେ । ବାପା ବୁଢ଼ା ହେଲେଣି । ଗୋଟିଏ ଗୋଟିଏ କାମ ଛିଣ୍ଡାଇଦେବେ ବୋଲି ସେ ଲାଗିଛନ୍ତି । ତୁ ମନାକଲୁ କାହିଁକି ? ତାଙ୍କ ମନରେ କେଡ଼େ କଷ୍ଟ ହୋଇ ନ ଥିବ ।"

ମୁଁ ଦେଖିଲି ବୋଉ ଯାହା କହୁଛି, ତାହା ଯୁକ୍ତିଯୁକ୍ତ । ମୋ ଆପତ୍ତିର ଯଥାର୍ଥତା ତାଙ୍କୁ ବୁଝାଇବା ଅସମ୍ଭବ । ଅଠର ବର୍ଷରୁ ଯଥେଷ୍ଟ କମ୍ ବୟସରେ ମଧ୍ୟ ଶହ ଶହ ବ୍ରାହ୍ମଣ ବାଳକ ସେତେବେଳେ ବିବାହ କରୁଥାନ୍ତି । ମୋର ବିବାହ ବୟସ ହୋଇନାହିଁ କହିଲେ ସେ କଣ ବୁଝିବ ? ତେଣୁ ତାଙ୍କୁ ବୁଝେଇଶୁଝେଇ ଦେଇ ସେଠାରୁ ଚାଲି ଆସିଲି । ସେହିଦିନଠାରୁ ମୋ ବିବାହ ପ୍ରସଙ୍ଗ ଉଠାଇବାକୁ ଆଉ କେହି ସାହସ କଲେ ନାହିଁ ।

ମୁଁ ଗ୍ରାମରେ ଥାଏ, ଗୋପବାବୁଙ୍କଠାରୁ ଦିନେ ଖଣ୍ଡେ ଚିଠି ପାଇଲି । ସେ ମୋତେ 'ଶ୍ରୀନିକେତନ'କୁ କିଛିଦିନ ପାଇଁ ପଠାଇବାକୁ ଇଚ୍ଛା କରି ମୋର ମତାମତ ପୁଚ୍ଛିଥିଲେ । ତାଙ୍କ ପାଖରେ ଥିଲେ ମୁଁ କି କଷ୍ଟଭିତ୍ତି କରିଥାନ୍ତି କେଜାଣି, ଗ୍ରାମରେ ଥିବାରୁ ଭଲ ଭାବରେ ଚିନ୍ତା ନ କରି ମୁଁ ମୋର ଅସମ୍ମତି ଜଣାଇ ଉତ୍ତର ଖଣ୍ଡେ ପଠାଇଦେଲି ।

ଛୁଟି ପୂରିଯିବାରୁ ଅଲକାଶ୍ରମରେ ପୁଣି ଯାଇ ଯୋଗ ଦେଲି ।

କ୍ରମେ ଅଲକାଶ୍ରମ ସୂତାକଟା ଓ ଲୁଗାବୁଣାର ଗୋଟିଏ ବଡ଼ କେନ୍ଦ୍ର ହୋଇ ଉଠିଲା । ମୋତେ କିଛିଦିନ ଏହି ଖଦୀକେନ୍ଦ୍ରର ଦାୟିତ୍ୱ ନେବାକୁ ପଡ଼ିଥିଲା । ପ୍ରତି ହାଟ ପାଳିରେ ସୂତା କଟାଳିମାନେ ଆଶ୍ରମରେ ସୂତା ଦେଇ ତୁଳା ଓ ମଜୁରି ନେଇଯାନ୍ତି । ହାତକଟା ସୂତାରେ ଘରଟି ପୂର୍ଣ୍ଣ ହୋଇଯାଏ । ମୋର ଯେତେଦୂର ମନେ ଅଛି, ପ୍ରାୟ ତିନି ହଜାର ଟଙ୍କାର ସୂତା ଲୁଗା କାରବାର ସେହି କେନ୍ଦ୍ରରେ ହେଉଥିଲା ।

ଅଲକାଶ୍ରମ ଯେତେବେଳେ ଖ୍ୟାତିର ଶୀର୍ଷତମ ଶିଖରରେ ଉପନୀତ ହେଲା, ସେତେବେଳେ ବହୁ କର୍ମୀ ଓ ନେତୃସ୍ଥାନୀୟ ବ୍ୟକ୍ତି ସେଠାକୁ ଆକୃଷ୍ଟ ହୋଇ ଆସୁଥିଲେ । ଶ୍ରୀ ନବକୃଷ୍ଣ ଚୌଧୁରୀ, ବାବାଜୀ ରାମଦାସ, ପ୍ରାଣକୃଷ୍ଣ ପଡ଼ିଆରୀ, ଅଲେଖପ୍ରସାଦ ଦାସ, ଗୁଣନିଧି ସାହୁ, ଗୋକୁଳାନନ୍ଦ ମହାନ୍ତି, ବିନୋଦଚନ୍ଦ୍ର ପଣ୍ଡା, କଣୋଇମୋହନ କାନୁନଗୋ, ଫକୀରଚରଣ ସାହୁ ପ୍ରଭୃତିଙ୍କୁ ଆମେ ଅନେକ ସମୟରେ ସେଠାରେ ଦେଖୁଥିଲୁ ।

## ପୃଥିବୀ ପର୍ଯ୍ୟଟନ ପରିକଳ୍ପନା

ଏହି ସମୟରେ ଇଂରେଜ ସରକାର ଜାତୀୟ ଆନ୍ଦୋଳନକୁ ଦବାଇ ଦେବା ଉଦ୍ଦେଶ୍ୟରେ କଠୋର ଦମନ ନୀତି ପ୍ରୟୋଗ କଲେ । ବଡ଼ ବଡ଼ ନେତାମାନଙ୍କୁ ଧରି ନେଇ ଜେଲରେ ଆବଦ୍ଧ କରି ରଖିଲେ । କିଛି ସମୟପାଇଁ କଂଗ୍ରେସ କାର୍ଯ୍ୟ ଶିଥିଳ ହୋଇ ଆସିଲା ପରି ଜଣାଗଲା । କେତେକ କର୍ମୀ ଆଶ୍ରମ ଛାଡ଼ି ପଳାଇଗଲେ । ଆମ କେତେଜଣଙ୍କ ମନରେ ମଧ୍ୟ ସେତେବେଳେ ଟିକିଏ ସାମୟିକ ଅବସାଦ ଆସିଲା ।

ସୁଦର୍ଶନ ପ୍ରହରାଜ, କୃଷ୍ଣଚନ୍ଦ୍ର ପ୍ରଧାନ, ବିଶ୍ୱନାଥ ନନ୍ଦ ଓ ମୁଁ—ଆମେ ଚାରିଜଣ ଘରେ ବସି ଆମର ଭବିଷ୍ୟତ କର୍ମପନ୍ଥା ବିଷୟ ବିଚାର କରୁଥିଲୁ । ନେତାମାନେ ଜେଲ୍‌ରେ; ଆମର ବୟସ ଓ ବିଦ୍ୟାବୁଦ୍ଧି ଦୃଷ୍ଟିରୁ ନେତା ସାଜିବାର ଯୋଗ୍ୟତା ନାହିଁ । ସମସ୍ତେ ଅଧାପାଠୁଆ, କିନ୍ତୁ ସ୍କୁଲ୍‌କୁ ଯାଇ ଆଉ ପଢ଼ିବୁ, ଏ ଦୁରାକାଂକ୍ଷା କାହାରି ନ ଥିଲା । ଘରର ଆକର୍ଷଣକୁ ଅବଲୀଳାରେ ଏଡ଼ି ଦେଇ ହେବ । କିନ୍ତୁ କରିବୁ କଣ ? ମନ ସିନା ଉଡ଼ୁଛି, ରକ୍ତମାଂସର ଦେହଗୁଡ଼ାକୁ ଉଡ଼ାଇନେବା କଣ ଏତେ ସହଜ ? କିଛି ନ ହେଲେ ଖାଇବା ଗଣ୍ଡାକ ଦରକାର, ପିନ୍ଧିବାକୁ ଲୁଗା ଖଣ୍ଡେ ଦରକାର, ମୁଣ୍ଡ ଗୁଞ୍ଜିବାକୁ ଥାନ ଟିକିଏ ଦରକାର ତ ! କିନ୍ତୁ ଭାବି ଭାବି ସ୍ଥିର କଲୁ ପୃଥିବୀ ପର୍ଯ୍ୟଟନରେ ବାହାରିବୁ !

ବର୍ତ୍ତମାନ ଏହା ଏକ ଉଦ୍ଭଟ କଳ୍ପନା ପରି ଲାଗୁଛି, କିନ୍ତୁ ସେତେବେଳେ ଆମ ଶକ୍ତିର ଅସାଧ୍ୟ ବୋଲି ମନେ ହେଉ ନ ଥିଲା । କଂଗ୍ରେସରେ ଦୁଇ ବର୍ଷ କାମ କରି କେତେ ଅସାଧ୍ୟକୁ ଦେହସୁହା କରି ନେଇଛୁ । କେବଳ ମୁଢ଼ି ପାଣି ଖାଇ ଦିନ ଦିନ କଟାଇଛୁ । ବିଲାତି କନାର ଛତା ଧରିବୁ ନାହିଁ ବୋଲି କେତେ ବର୍ଷାପାଣିରେ ଦେହକୁ ଭିଜାଇଛୁ—ଅଥଚ ମନର ବଳରେ ସବୁ ପାର୍ ହୋଇ ଯାଇଛୁ । ଆଗ୍ରହ ଓ ସାହସ ଥିଲେ ସବୁ ଅସାଧ୍ୟ ମଧ୍ୟ ସାଧ୍ୟ ହୋଇପାରେ । ରେଲ ଓ ଜାହାଜରେ କୁଲିଗିରି କରି ଖର୍ଚ୍ଚ ତୁଲାଇ ହେବ । ଭୟ କଅଣ ?

ଏଇଥିପାଇଁ କହନ୍ତି କିଶୋର ବୟସ ବଡ଼ ବିପଜ୍ଜନକ ସମୟ । ସଂସାରକୁ ଆସକ୍ତି ଦୃଢ଼ ହୋଇ ନ ଥିବା ଯୋଗୁ ସାମାନ୍ୟ ପ୍ରରୋଚନାରେ ମୁକୁଳା ମନ ଯେ କୌଣସି ଦୁଃସାହସିକ ପଦକ୍ଷେପ ନେବାପାଇଁ ଆଗଭର ହୋଇ ଉଠେ । ସଙ୍ଗେ ସଙ୍ଗେ କଳ୍ପନାକୁ କାର୍ଯ୍ୟରେ ପରିଣତ କରିବାପାଇଁ ବନ୍ଧୁମାନେ ବ୍ୟଗ୍ର ହେବାରୁ ମୁଁ କହିଲି, "ଏତେଗୁଡ଼ାଏ ଟଙ୍କାର ଖଦୀକେନ୍ଦ୍ର ଦାୟିତ୍ୱ ଛାଡ଼ି ଦେଇ ପଳାଇବା ଆମ ପକ୍ଷରେ ଠିକ୍ ହେବ ନାହିଁ । ଦେଶର ଧନ ଆମ ହାତରେ ନ୍ୟସ୍ତ କରାଯାଇଛି । ଅଳ୍ପଦିନ ଭିତରେ କେନ୍ଦ୍ର ହିସାବ ସମୀକ୍ଷା କରିବାକୁ ଅଡିଟର ଦୁଃଖିଶ୍ୟାମ ମିଶ୍ର ଆସିବେ । ସେଇ ସୁଯୋଗରେ ମୁଁ ଚାଲିଯାଇ ପାରିବି ।"

ମୋ କଥା ସମସ୍ତଙ୍କ ମନକୁ ପାଇଲା । ସ୍ଥିର ହେଲା, କଟକରେ ଥିବା ଅଟଳବାବୁଙ୍କ ଡାକ୍ତରଖାନାରେ ନିରୂପିତ ଦିବସରେ ଆମ୍ଭେମାନେ ଏକତ୍ର ହୋଇ ପୂର୍ବକଳ୍ପିତ ଅଭିଯାନରେ ବାହାରିବୁ ।

ମୁଁ ତଦନୁଯାୟୀ ନିର୍ଦ୍ଦିଷ୍ଟ ଦିନ କଟକ ଆସି ସ୍ୱରାଜ୍ୟ ଔଷଧାଳୟ ବାରଣ୍ଡାରେ ଗୋଟିଏ ବେଞ୍ଚ ଉପରେ ବସିଥାଏ । ଅଟଳବାବୁ ମୋତେ ଦେଖି କଣ ପଚାରିଲେ ଏବଂ ମୁଁ ତାଙ୍କୁ କି ଉତ୍ତର ଦେଲି, ଠିକ୍ ମନେ ନାହିଁ । ନିଶ୍ଚୟ କିଛି ମିଛ କଥା

କହୁଥିବ । ସକାଳ ପ୍ରାୟ ୧୧ଟା ସମୟ । ବନ୍ଧୁମାନଙ୍କ ଆଗମନକୁ ଉତ୍କଣ୍ଠିତ ଚିତ୍ତରେ ଅପେକ୍ଷା କରି ରହିଥାଏ ।

ଏହି ସମୟରେ ପଣ୍ଡିତ ନୀଳକଣ୍ଠ ଦାସ ଗୋଟିଏ ଘୋଡ଼ାଗାଡ଼ିରୁ ଓହ୍ଲାଇ କଣ କାର୍ଯ୍ୟ ଉପଲକ୍ଷରେ ସେହି ଦୋକାନ ଭିତରେ ପ୍ରବେଶ କଲେ । ଅଟଳବାବୁଙ୍କ ସଙ୍ଗେ କଥାବାର୍ତ୍ତା ସାରି ସେ ଯେତେବେଳେ ବାହାରି ଯାଉଥିଲେ, ସେତିକବେଳେ ଅଟଳବାବୁ ମୋ ଆଡ଼କୁ ଦେଖି ତାଙ୍କ ସ୍ୱାଭାବିକ ସ୍ୱରରେ ହସି ହସି ତାଙ୍କୁ କହିଲେ, "ଏ ପିଲାଟିକୁ ସାଙ୍ଗରେ ନେଇଗଲେ ହୁଅନ୍ତା ନାହିଁ ? ଭଲ ପଢ଼ାଶୁଣା କରୁଥିଲା, ପାଠପଢ଼ା ଛାଡ଼ି କଂଗ୍ରେସରେ ମିଶିଛି । ଏହାକୁ ତୁମ ଜାତୀୟ ବିଦ୍ୟାଳୟରେ ଭର୍ତ୍ତି କରାଇଦେବ, ନେଇଯାଅ ।" ପଣ୍ଡିତ ନୀଳକଣ୍ଠ ସଙ୍ଗେ ସଙ୍ଗେ ମୋ ବାହାକୁ ଧରି, 'ଆସ, ଏହି ଗାଡ଼ିରେ ମୋ ସହିତ ଚାଲିଯିବ' କହି ମୋତେ ଘୋଡ଼ାଗାଡ଼ି ପାଖକୁ ନେବାର ଉପକ୍ରମ କଲେ । ସେଇ ତୁଙ୍ଗ ଭଦ୍ରଲୋକ ନେତାଙ୍କୁ ମୁଁ ବା କି ଉତ୍ତର ଦେଇଥାନ୍ତି ? ମୋ ଆପତ୍ତି ଶୁଣିବାକୁ ତାଙ୍କର ବେଳ ନ ଥିଲା । ସେ ଟ୍ରେନ୍‌କୁ ଯିବାକୁ ତତ୍ପର ହୋଇଥିଲେ । ନୀରବରେ, ସୁନାପୁଅ ପରି ବିନା ଓଜର ଆପତ୍ତିରେ ତାଙ୍କ ସଙ୍ଗେ ଯାଇ ଗାଡ଼ିରେ ବସିଲି । ମୋ ପୃଥିବୀ ପର୍ଯ୍ୟଟନର ଉଚ୍ଚାଙ୍ଗ ସୌଧ ଏହିପରି ମୁହୂର୍ତ୍ତକ ମଧ୍ୟରେ ଧୂଳିସାତ୍ ହେଲା ।

## ସତ୍ୟବାଦୀ ଜାତୀୟ ବିଦ୍ୟାଳୟରେ ବର୍ଷେ (୧୯୨୩)

ମୁଁ ଅଦୃଷ୍ଟକୁ ବିଶ୍ୱାସ କରେ ନାହିଁ । ପିଲାଦିନେ ସଂସ୍କାରବଶରୁ ଭାଗ୍ୟବାଦୀ ଥିଲି, କିନ୍ତୁ ବର୍ତ୍ତମାନ ନାହିଁ । ତେବେ ଜୀବନର ଗୋଟାଏ ଗୋଟାଏ ଘଟଣା ମନେ ପଡ଼ିଲେ ମନ ଟିକିଏ ଦୋଳାୟିତ ହୁଏ । 'ଦଇବ ଦଉଡ଼ି ମଣିଷ ଗାଈ' କଥାଟା କଣ ତେବେ ସତ ନୁହେଁ ? ଦୁଇ ଘଣ୍ଟା ତଳେ ପୃଥିବୀଭ୍ରମଣର କେତେ କଳ୍ପନା-ଜଳ୍ପନା ମୁଣ୍ଡ ଭିତରେ ଖେଳୁଥିଲା, ଅଥଚ ଜଣେ ଲୋକର ପଦେ କଥାରେ କୁହୁକ ମନ୍ତ୍ର ସବୁ ବଦଳିଗଲା ! ମୁଁ ଆସି ସତ୍ୟବାଦୀର ବକୁଳବଣରେ ବିଦ୍ୟାର୍ଥୀ ଜୀବନ ପୁଣି ଆରମ୍ଭ କଲି ! ଅଟଳବାବୁଙ୍କ ପାଟିରୁ ସେଇ କଥାପଦକ ବାହାରି ନ ଥିଲେ ମୋ ଜୀବନ କେଉଁ ମାର୍ଗରେ ଗତି କରିଥାନ୍ତା, କିଏ କହିବ ?

ସତ୍ୟବାଦୀର ବନବିଦ୍ୟାଳୟ ସେତେବେଳେ ଜାତୀୟ ବିଦ୍ୟାଳୟରେ ପରିଣତ ହୋଇଥାଏ । ପଣ୍ଡିତ କୃପାସିନ୍ଧୁ ମିଶ୍ର ପ୍ରଧାନ ଶିକ୍ଷକ ଥାନ୍ତି । ପଣ୍ଡିତ ଲିଙ୍ଗରାଜ ମିଶ୍ର, ଆଚାର୍ଯ୍ୟ ହରିହର ଦାସ, ଶ୍ରୀ ନନ୍ଦକିଶୋର ଦାସ, ଶ୍ରୀ ବାସୁଦେବ ମହାପାତ୍ର ପ୍ରମୁଖ ପୂଜ୍ୟ ବ୍ୟକ୍ତିମାନେ ଅଧ୍ୟାପନା କାର୍ଯ୍ୟରେ ଅଂଶ ଗ୍ରହଣ କରୁଥାନ୍ତି । ଛାତ୍ରାବାସର ମୁଖ୍ୟ

ତତ୍ତ୍ୱାବଧାରକ ଥାନ୍ତି ଆଚାର୍ଯ୍ୟ ହରିହର । ଜାତୀୟ ଆଭିମୁଖ୍ୟ ନେଇ ବିଦ୍ୟାଳୟରେ ଏକ ସ୍ୱତନ୍ତ୍ର ପାଠ୍ୟପଦ୍ଧତି ପ୍ରବର୍ତ୍ତିତ ହୋଇଥାଏ । ପ୍ରବେଶିକା ପରୀକ୍ଷାର ଶେଷ ଶ୍ରେଣୀରେ ମୁଁ ଭର୍ତ୍ତି ହେଲି ଏବଂ ଛାତ୍ରାବାସରେ ରହିଲି ।

ଏ ଏକ ନୂତନ ଜୀବନ । ଜାତୀୟ ଆନ୍ଦୋଳନରେ ପ୍ରଥମେ ଯୋଗ ଦେବା ବେଳର ସେ ଉନ୍ମାଦନା, କର୍ମୀ ଜୀବନର ସେ ମୁକ୍ତ ଗତିବିଧି ଓ ଆଚରଣ ଏଠାରେ ନାହିଁ । ବିଦ୍ୟାର୍ଥୀ ଜୀବନର କଠୋର ଶୃଙ୍ଖଳା ଭିତରେ ପୁଣି ପଡ଼ିବାକୁ ହେଲା । ଖୁବ୍ ଭୋରରୁ ଉଠି ପ୍ରାର୍ଥନା, ନିତ୍ୟକର୍ମ ଓ ଗାଧୁଆପାଧୁଆ ସାରି ସମବେତ ବ୍ୟାୟାମ କଲାବେଳକୁ ସୂର୍ଯ୍ୟ ଉଇଁ ଆସୁଥାନ୍ତି । ଦଣ୍ଡ, ବୈଠକ, ଡ୍ରିଲ୍, ମାର୍ଚ୍ଚିଂ କରୁ କରୁ ମୋ ଅଣ୍ଟାପିଠି କଟ୍‌କଟ୍ ଡାକେ । ବ୍ୟାୟାମ ଶିକ୍ଷକଙ୍କ କଡ଼ା ଦୃଷ୍ଟିରୁ ଖସିଯିବାର ଉପାୟ ନାହିଁ । ସେଇଠାରେ ଥାଇ ସିଝା ଜିମପାଣିରୁ ଢୋକେ ଢୋକେ ସମସ୍ତେ ପିଉ । ତା’ପରେ ସେପେଇ ଘରକୁ ଆସି ମୁଠାଏ ମୁଠାଏ ଖେଚେଡ଼ି ଖାଇ କ୍ଲାସକୁ ଯାଉ ।

ବଉଳ ଚୁଇଅନାର ବିସ୍ତୀର୍ଣ୍ଣ ବଣ ଭିତରେ ଠାଏ ଠାଏ ସଫା ଜାଗା ଦେଖି କ୍ଲାସ କରାଯାଇଥାଏ । ଉପରେ ଗହଳିଆ ପତ୍ରର ଛାଇ ଆ । ଗଛ ମୂଳରେ ଝୁଲୁଥାଏ ଖଣ୍ଡେ ଖଣ୍ଡେ ବ୍ଲାକ୍‌ବୋର୍ଡ । ଗୋଟିଏ କ୍ଲାସରୁ ଅନ୍ୟ କ୍ଲାସ ଦେଖାଯାଏ ନାହିଁ । ସେଇ କୁଞ୍ଜଭିତରେ ବସି ଆମେ ପ୍ରାୟ ୧୧ଟା ପର୍ଯ୍ୟନ୍ତ ପାଠ ପଢ଼ୁ । ତା ପରେ ଛାତ୍ରାବାସକୁ ଫେରି ଖିଆପିଆ କରୁ । ଖରାବେଳେ ପତ୍ରପତ୍ରିକା ପଢ଼ିବା ପାଇଁ ଅବସର ମିଳେ । ଉପରବେଳା ଦୁଇଘଣ୍ଟା ସୂତାକଟା, ଲୁଗାବୁଣା ଓ ଅନ୍ୟାନ୍ୟ ହାତକାମ ଶିକ୍ଷା ଦିଆଯାଏ । ସନ୍ଧ୍ୟାରେ ପ୍ରାର୍ଥନା ସାରି ଯେଝା ପ୍ରକୋଷ୍ଠକୁ ଯାଇ ପଢ଼ାପଢ଼ି କରୁ । ରାତି ୯ଟାରେ ଖାଇପିଇ ଶୋଉ । ଶନିବାର ସଂଧ୍ୟାରେ ଶ୍ଳୋକାନ୍ତ ଓ ପଦ୍ୟାନ୍ତ ପ୍ରତିଯୋଗିତା ହୁଏ । କେବେ କେବେ ଆଲୋଚନା ସଭା ମଧ୍ୟ ହୁଏ ।

ମୁଁ ଯିବାର ଠିକ୍ ପରଦିନ ପ୍ରତ୍ୟୁଷରେ ଆଚାର୍ଯ୍ୟ ମହାଶୟ ମୋ କୋଠରୀକୁ ଯାଇ ମୋତେ ସ୍ନେହସିକ୍ତ ସ୍ୱରରେ କହିଲେ, “ରାମକୃଷ୍ଣ, ଏତେ ସକାଳୁ ଉଠି ଗାଧୋଇଲେ କାଳେ ଦେହରେ ନ ସିବ; ଦୁଇ ଚାରିଦିନ ଯାଉ । ଆସ୍ତେ ଆସ୍ତେ ଅଭ୍ୟାସରେ ପକାଇବୁ ।” ମୁଁ ବିନୀତ ଭାବରେ ଉତ୍ତର ଦେଲି, “ମୋର ପୂର୍ବରୁ ସକାଳୁ ଗାଧୋଇବା ଅଭ୍ୟାସ ଥିଲା; ତେଣୁ କୌଣସି ଅସୁବିଧା ହେବନାହିଁ ।”

ପାହାନ୍ତାରୁ ଉଠି ଘର ଘର ବୁଲି ଆଚାର୍ଯ୍ୟ ମହାଶୟ ଦେଖି ଆସୁଥିଲେ ସମସ୍ତେ ଉଠିଲେଣି କି ନାହିଁ, କାହାର କି ଅସୁବିଧା ବା ଦେହପା’ ହୋଇଛି । କି ମଧୁର କଅଁଳ କଥା, ହସ ହସ ମୁହଁ, ସ୍ନେହଆଦରସିକ୍ତ ଉପଦେଶ ! ପ୍ରାଚୀନ ଯୁଗର ଗୁରୁକୁଳ ଓ ଋଷିଆଶ୍ରମ କଥା ସ୍ମରଣ କରାଇ ଦିଏ ।

ଥରେ ଜଣେ ଅନ୍ତେବାସୀଙ୍କର କୌଣସି ଗୁରୁତର ଅପରାଧ କଥା ଆଚାର୍ଯ୍ୟଙ୍କ କାନକୁ ଗଲା । ସେ ସମସ୍ତଙ୍କର ଏକ ସଭା ଡକାଇ ସେଥିରେ ଏହି ଅଭିଯୋଗର ବିଚାର କଲେ । ଦୋଷ ପ୍ରମାଣିତ ହେଲା । ଅପରାଧୀକୁ କି ଶାସ୍ତି ଦିଆଯିବ, ଏ ବିଷୟରେ ମତ ନିଆଗଲା । କିଏ କେତେ ପ୍ରକାର ପ୍ରସ୍ତାବ ଦେଲେ । ସବୁ ଶୁଣିସାରି ଆଚାର୍ଯ୍ୟ ମହାଶୟ କହିଲେ, "ଦୋଷୀ ମୁଁ । ଛାତ୍ରାବାସର ତତ୍ତ୍ୱାବଧାରକ ହିସାବରେ ମୁଁ ସମସ୍ତ ସ୍ଖଳନ ପାଇଁ ଦାୟୀ । ତେଣୁ ମୁଁ ଶାସ୍ତି ଗ୍ରହଣ କରିବି ।"

ସମସ୍ତେ ଅବାକ୍ । ଗାନ୍ଧିଜୀଙ୍କର ନୀତି ଏ । ବେତମାଡ଼ ଅପେକ୍ଷା ଏହାର ସଂଶୋଧନୀ ଶକ୍ତି ଯଥେଷ୍ଟ ବେଶି ।

ଉତ୍କଳଭୂମି ପଦ୍ମଚରଣ, ଚନ୍ଦ୍ରମଣି ମିଶ୍ର, ନୀଳମଣି ମିଶ୍ର, ଗୌରୀପଦ ନିପାଠୀ, ମୋହନ ଦାସ ଓ ସ୍ୱର୍ଗୀୟ ଭଗବତୀଚରଣ ପାଣିଗ୍ରାହୀ ପ୍ରଭୃତି ସେତେବେଳେ ଜାତୀୟ ବିଦ୍ୟାଳୟରେ ପଢ଼ୁଥିଲେ । ଭଗବତୀବାବୁ ଭଲ ବଂଶୀ ବଜାଇ ଆମ୍ଭମାନଙ୍କୁ ମୁଗ୍ଧ କରୁଥିଲେ ।

ପଣ୍ଡିତ କୃପାସିନ୍ଧୁ ମିଶ୍ରଙ୍କ ବହୁତଥ୍ୟସମ୍ବଳିତ 'କୋଣାର୍କ' ଏବଂ ପଣ୍ଡିତ ନୀଳକଣ୍ଠଙ୍କ 'କୋଣାର୍କେ' କାବ୍ୟର କିୟଦଂଶ ଆମର ପାଠ୍ୟ ଅନ୍ତର୍ଭୁକ୍ତ ଥିଲା । ତେଣୁ କର୍ତ୍ତୃପକ୍ଷଙ୍କ ଅନୁମତି ନେଇ ଆମେ କେତେଜଣ ଛାତ୍ର ଚାଲି ଚାଲି ସେଠାରୁ ଥରେ କୋଣାର୍କ ଯାଇଥିଲୁ । ମନ୍ଦିରର ବଣାଲତା ଆଗରେ ମୋର କ୍ଷୁଦ୍ର ପ୍ରାଣଟି ବିସ୍ମୟ ଓ ଆନନ୍ଦରେ ମିଳାଇ ଯାଇଥିଲା । ଚନ୍ଦ୍ରଭାଗାରୁ ଫେରିଲାବେଳେ ସିକତାପ୍ରାନ୍ତରରେ 'ଗୁଡ଼କଙ୍କ' ଧରିବାକୁ ଚେଷ୍ଟାକରି ପଥଭ୍ରମ ଭୁଲିଥିଲୁ । ମୋ ଜୀବନରେ କୋଣାର୍କ ଦର୍ଶନ ସେଇ ପ୍ରଥମ ।

ଆମ ପାଠ୍ୟକ୍ରମରେ ଗୋଟିଏ ପତ୍ର ଥିଲା ହିନ୍ଦୀ । ତେଣୁ ଏହିଠାରେ ମୋତେ ଭଲରୂପେ ଦେବନାଗରୀ ଲିପିରେ ଲେଖିବାକୁ ଅଭ୍ୟାସ କରିବାକୁ ପଡ଼ିଥିଲା । ମୁଁ ସ୍କୁଲ ଲାଇବ୍ରେରୀରୁ ହିନ୍ଦୀ ଓ ଅନ୍ୟାନ୍ୟ ବହି ଆଣି ନିୟମିତ ପଢ଼ାପଢ଼ି କରୁଥିଲି । ଓଡ଼ିଆକୁ ପରୀକ୍ଷାରେ ଦୁଇଟି ପତ୍ର କରାଯାଇଥିବାରୁ ତା ଉପରେ ଛାତ୍ରମାନେ ଅଧିକ ଗୁରୁତ୍ୱ ଦେବାକୁ ବାଧ୍ୟ ହେଉଥିଲେ । ଗୋଦାବରୀଶ ମହାପାତ୍ରଙ୍କ ରାଜପୁତ କାହାଣୀ-ଗୁଡ଼ିକ ମୋତେ ବିଶେଷ ଅନୁପ୍ରାଣିତ କରିଥିଲା । ତାଙ୍କ ରଚନାଶୈଳୀର ସୌନ୍ଦର୍ଯ୍ୟରେ ମୁଁ ମୁଗ୍ଧ ହୋଇଯାଇଥିଲି । ସେଠାରୁ ପ୍ରକାଶିତ 'ସତ୍ୟବାଦୀ' ପତ୍ରିକାର କେତେଗୁଡ଼ିଏ ପ୍ରାଚୀନ ସଂଖ୍ୟା ପଢ଼ିବାର ସୁଯୋଗ ମଧ୍ୟ ଏହିଠାରେ ମିଳିଥିଲା ।

'ସମାଜ' ସମ୍ପାଦକ ଶ୍ରୀ ରାଧାନାଥ ରଥଙ୍କ ସଙ୍ଗେ ମୋର ପ୍ରଥମ ପରିଚୟ ହୁଏ ଏଇ ଜାତୀୟ ବିଦ୍ୟାଳୟରେ । ମୋର ହସ୍ତାଙ୍କିତ କେତେଗୋଟି ଚିତ୍ର ଦେଖି ସେ ବିଶେଷ ପ୍ରୀତ ହୋଇଥିଲେ ଏବଂ ମୋତେ ଉତ୍ସାହିତ କରିଥିଲେ ।

ବର୍ଷଟିଏ କପର କଟିଗଲା ଜାଣିପାରିଲି ନାହିଁ । ପାଠବର୍ଷ ଶେଷରେ ପରୀକ୍ଷା ଦେଇସାରି ଗ୍ରାମକୁ ଗଲି । କିଛିଦିନ ପରେ ଖବର ପାଇଲି, ମୁଁ ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇ ପାସ କରିଛି ।

ଜାତୀୟ ବିଦ୍ୟାଳୟରୁ କୃତିତ୍ୱ ସହକାରେ ଉତ୍ତୀର୍ଣ୍ଣ ହେଲି ସିନା, ସେ କୃତିତ୍ୱର ମୂଲ୍ୟ କଣ ? ଆଉ ଉପରକୁ ପଢ଼ିବାର ଇଚ୍ଛା ଥିଲେ ବି ସୁବିଧା କାହିଁ ? ସତ୍ୟବାଦୀରେ ଛାତ୍ର ଥିଲାବେଳେ ଆମର ଶିକ୍ଷକ ଶ୍ରୀଯୁକ୍ତ ବାସୁଦେବ ମହାପାତ୍ର ଥରେ ବାଟରେ ମୋତେ ପଚାରିଲେ, "ତୁମେ ଏହାପରେ କେଉଁଠି ପଢ଼ିବ ?" ମୁଁ କହିଲି, "ଆଉ ପଢ଼ିବି ନାହିଁ ।" ସେ ଆଶ୍ଚର୍ଯ୍ୟ ହୋଇ କହିଥିଲେ, "ସେପରି ତ ଜଣା ଯାଉନାହିଁ ।" (ଅର୍ଥାତ୍ ତୁମଠାରେ ଆହୁରି ପଢ଼ିବାର ଲକ୍ଷଣ ବା ପ୍ରବୃତ୍ତି ମୁଁ ଦେଖିପାରୁଛି । ) ତାଙ୍କ କଥା ମନେ ପଡ଼ିଲା । ସତ୍ୟବାଦୀ ଜାତୀୟ ବିଦ୍ୟାଳୟରେ କଲେଜ ଶ୍ରେଣୀ ଖୋଲିବ ବୋଲି ଶୁଣୁଥିଲୁ; ମାତ୍ର କଣ ହେଲା କେଜାଣି, ସେଠାରେ ସେପରି କିଛି ବ୍ୟବସ୍ଥା ହୋଇପାରିଲା ନାହିଁ । ଆମ ଦଳର ଛାତ୍ରମାନେ ମଧ୍ୟ ସେଠାରେ ଆଉ ଅଧିକ ପଢ଼ିବାକୁ ଆଗ୍ରହ ପ୍ରକାଶ କଲେ ନାହିଁ ।

ପଣ୍ଡିତ ଗୋପବନ୍ଧୁ ପ୍ରମୁଖ ନେତୃବର୍ଗ ସେତେବେଳକୁ ଜେଲରେ । ସି. ଆର୍. ଦାସ ଓ ପଣ୍ଡିତ ମୋତିଲାଲଙ୍କ ନେତୃତ୍ୱରେ 'ସ୍ୱରାଜିଷ୍ଟ' ଦଳ କାଉନସିଲ ଓ ଆସେମ୍ବ୍ଲିରେ ପ୍ରବେଶ କରିବା ପାଇଁ ପ୍ରସ୍ତୁତ ହେଉଥାନ୍ତି । ଏଥିଲାଗି ମହାତ୍ମା ଗାନ୍ଧୀଙ୍କ ସଙ୍ଗେ ସେମାନଙ୍କର ମତଭେଦ ଉପୁଜିଥାଏ । ଦୁଇ ନେତାମାନଙ୍କ ଭିତରେ ଏ ବିଭେଦ ଜାତ ହେବା ଫଳରେ କର୍ମୀମାନେ ମଧ୍ୟ ଫାଙ୍କ ଫାଙ୍କ ହୋଇ ଯାଇଥାନ୍ତି । ଦେଶର ଏହି ଅନିଶ୍ଚିତତା ଓ ଅସ୍ଥିରତା ବେଳେ ଆମପରି ପିଲାମାନଙ୍କର ଗତି କୁଆଡ଼େ, ଆମେ ବିଚାର କରି ଠିକ୍ କରି ପାରୁ ନ ଥାଉ ।

## ଏରସମାରେ ଭୋଟ ପ୍ରଚାର (୧୯୨୪)

ଖବର ପାଇଲୁ ଯେ ସ୍ୱରାଜିଷ୍ଟ ଦଳର ନୀତି ଗ୍ରହଣ କରି ଗୋପବନ୍ଧୁ ଚୌଧୁରୀ ଏରସମା ଥାନାରୁ କଟକ ଜିଲାବୋର୍ଡ ସଭ୍ୟପଦ ପାଇଁ ପ୍ରାର୍ଥୀ ହେଉଛନ୍ତି । ଅବସର-ପ୍ରାପ୍ତ ଡେପୁଟି କଲେକ୍ଟର ରାଜକିଶୋର ଦାସ ତାଙ୍କର ପ୍ରତିଦ୍ୱନ୍ଦ୍ୱୀ । ବାବାଜୀ ରାମଦାସ (ହୃଷୀକେଶରେ ଯାହାଙ୍କର ଦେହାନ୍ତ ହୋଇଯାଇଛି) ଭୋଟ ପ୍ରଚାର କାର୍ଯ୍ୟରେ ସେ ଅଞ୍ଚଳକୁ ଯାଉଛନ୍ତି । ତାଙ୍କର କେତେଜଣ କର୍ମୀ ଦରକାର । ବାବାଜୀଙ୍କୁ ଅଲକାଶ୍ରମରେ ଭଲରୂପେ ଜାଣିଥିଲି । ସେ ଗୋପବାବୁଙ୍କୁ ବଡ଼ ଭାଇ ଜ୍ଞାନରେ 'ଭାଇ' ସମ୍ବୋଧନ କରୁଥିଲେ । ଜଣେ ନିରଳସ ସଂଗଠକ ଏବଂ ନିଷ୍ଠାପର କର୍ମୀ ସେ । ବନ୍ଧୁ ବିଶ୍ୱନାଥ ନନ୍ଦ ଓ ମୁଁ ଦୁଇଜଣ ବାବାଜୀଙ୍କ ସଙ୍ଗେ ପ୍ରଚାର କାର୍ଯ୍ୟରେ ଯିବାପାଇଁ ବାହାରିଲୁ ।

କଷ୍ଟଦନ ପାଇଁ ଅନ୍ତତଃ ଗୋଟାଏ କାମ ମିଳିଗଲା । ପୂର୍ବ ମୁଁ ଥିବାଟା ନ ହେଲେ ବି ତାର ଗୋଟାଏ ଅଂଶ ତ ଦେଖି ଆସିବୁ ! ବାବାଜୀ ଗାଁ ଗାଁ ବୁଲି ଗୋପବାବୁଙ୍କ ପାଇଁ ଜୋର ପ୍ରଚାରରେ ଲାଗିଗଲେ । ବାଟରେ ଘାଟରେ ସଭା ଓ ବକ୍ତୃତା ଚାଲିଲା । ଆମେ ଦୁଇଜଣ ଚେଲା ସାଜି ବାବାଜୀଙ୍କ ସାଙ୍ଗରେ ଚାଲିଥାଉ ।

ନୂଆଗାଁ ନଈ, ଲୁଣୀ ହାଉଆ । ଦିଗ୍‌ବଳୟବ୍ୟାପୀ ଧାନକ୍ଷେତ । ମଝିରେ ମଝିରେ ଖଣ୍ଡେ ଖଣ୍ଡେ ଗାଁ । ଭଲ ପିଇବା ପାଣି ମିଳେ ନାହିଁ । ସେଥିପାଇଁ ବୋଧହୁଏ ପ୍ରକୃତରାଣୀ ସେ ଅଞ୍ଚଳକୁ ଲଙ୍କା ଆମ୍ବ ଗଛରେ ଭରି ଦେଇଛନ୍ତି, ଯାହାର ରସାଳ ଫଳର ପ୍ରଲୋଭନ ଏଡ଼ା ହୁଏ ନାହିଁ । ତାକୁ ଦେଖି କବିବରଙ୍କ ବର୍ଣ୍ଣନା ମନେ ପଡ଼ିଲା—

'ହେମଫଳେ ନମ୍ର ଯହିଁ ଲଙ୍କା ଆମ୍ର ପାଦପପନ୍ତ
ତୃଷାର୍ତ୍ତ ପଥିକେ ଶାଖାସଞ୍ଚାଳନ ଛଳେ ଡାକନ୍ତ ।'

ସମୁଦ୍ରକୂଳ ଆଡ଼କୁ ଗଲେ ଅନେକ ଯାନବରଜ ଦେଖିବାକୁ ମିଳେ । ଷାଠିଏ ବର୍ଷରୁ ଅଧିକ ତଳର କଥା । କେତେ ପରିବର୍ତ୍ତନ ଏଥିମଧ୍ୟରେ ଘଟିସିବଣି । ମୋ ସ୍ମୃତିରୁ ସେ ଦୃଶ୍ୟ ସବୁ ଲିଭିଆସିଲାଣି ।

ଗୋଟାଏ ଦିନର ଘଟଣା କିନ୍ତୁ ପରିଷ୍କାର ମନେ ଅଛି । ଦିନଯାକ ବୁଲି ବୁଲି ସନ୍ଧ୍ୟାବେଳକୁ ଗୋଟାଏ ବଡ଼ ଗାଁରେ ପହଞ୍ଚିଲୁ । ସମୁଦ୍ର ସେଠାରୁ ଅଳ୍ପ ବାଟ । ସେ ଗାଁ ନାଁ ନୂଆଗାଁ ପରି ମନେ ହେଉଛି । ସେ ଗ୍ରାମର ମୁଖିଆ ଲୋକ ତହସିଲ ପଞ୍ଚାୟତ ହେବେ ନା କଅଣ । ତାଙ୍କର ବୈଠକଖାନାରେ ଅପେକ୍ଷା କରି ତାଙ୍କୁ ଡକାଇ ପଠାଇଲୁ । ଖଦଡ଼ପିନ୍ଧା କଂଗ୍ରେସବାଲା ଆସିଛନ୍ତି, ସଭା କରିବେ—ଏହା ଶୁଣି ସେ ମହାଶୟ ବୋଧହୁଏ ଭୟ କଲେ । ସେ ନିଜେ ଆସିଲେ ନାହିଁ କି ଲୋକମାନଙ୍କୁ ଡକାଇବାର କୌଣସି ବ୍ୟବସ୍ଥା କଲେ ନାହିଁ । ରାତି ପ୍ରାୟ ୯ଟା ବାଜିଲା ।

ଏଣେ ବସି ବସି ବାବାଜୀ ରାଗରେ ଅସ୍ଥିର ହେଲେଣି । ଏହି ସମୟରେ ଉକ୍ତ ଭଦ୍ରବ୍ୟକ୍ତିଙ୍କ ଘରୁ ବଡ଼ ବଡ଼ ଥାଳିରେ ଜଳଖିଆ ସାମଗ୍ରୀ ସଜଡ଼ା ହୋଇ ଆସିଗଲା ଏବଂ ତା ପଛେ ପଛେ ସେ ନିଜେ ଆସି ବୈଠକ ଘରେ ଗୋଟିଏ ଖଟରେ ଲମ୍ବାୟମାନ ହେଲେ । ଜଣେ ଲୋକ ତାଙ୍କ ପାଦ ମଞ୍ଚାଳିବାରେ ଲାଗିଥାଏ । ବାବାଜୀ ତ ଏ ଦୃଶ୍ୟ ଦେଖି ଅଗ୍ନିଶର୍ମା ! କହିଲେ, "ଏ ଡକାଇତ ଘରେ ଜଳସ୍ପର୍ଶ କରିବି ନାହିଁ । ସଭା ନ କରାଇ ଦେବାପାଇଁ ଏ ଗୋଟାଏ ଫିକର କରିଛି । କାଲି ସକାଳେ ମୁଁ ନିଜେ ଲୋକଙ୍କୁ ଡକାଇ ସଭା କରିବି ।"

ବାବାଜୀଙ୍କ ରୁଦ୍ରମୂର୍ତ୍ତି ଦେଖି ଆମେ ଦୁଇଜଣ ପ୍ରମାଦ ଗଣିଲୁ । ଭୋକରେ ଜଠରାଗ୍ନି ଜଳୁଛି । ଲୋଭନୀୟ ଚର୍ବ୍ୟଚୋଷ୍ୟ ସାମଗ୍ରୀମାନ ଆମର ମୁଖବିବରକୁ

ଅପେକ୍ଷା କରି ରହିଛନ୍ତି । ବାବାଜୀଙ୍କ ମୁହଁକୁ ସତୃଷ୍ଣ ନୟନରେ ଅନାଇଥାଉଁ । ଶେଷରେ ତାଙ୍କଠାରୁ ମୌନ-ସମ୍ମତି ମିଳିଲା । ଆମେ ମନବୋଧ କରି ଯାହା ପାରିଲୁ ଉଦରସାତ୍ କଲୁ । ବାବାଜୀଙ୍କୁ ଲୋକମାନେ ଯେତେ ଅନୁରୋଧ କଲେ, ସେ କିନ୍ତୁ ତାଙ୍କ ପ୍ରତିଜ୍ଞାରୁ ଟଳେ ମାତ୍ର ଟଳିଲେ ନାହିଁ । ସମୁଦ୍ରତୀରବର୍ତ୍ତୀ ଏକ ମଠକୁ ଯାଇ ଉପବାସରେ ରାତି ଯାପନ କଲେ ।

କଂଗ୍ରେସ ସେ ବର୍ଷ ଜିଲ୍ଲାବୋର୍ଡକୁ ବିଭିନ୍ନ ଥାନାରୁ ପ୍ରାର୍ଥୀ ଠିଆ କରାଇଥାଏ । ଭୋଟ ଲଢ଼େଇରେ ବ୍ରିଟିଶ ସରକାରର ଗୋଡ଼ାଣିଆ ବଡ଼ ବଡ଼ ରଥୀ ଟଳି ପଡ଼ିଲେ । କଂଗ୍ରେସ ସଂଖ୍ୟାଗରିଷ୍ଠତା ହାସଲ କରି ଜିଲ୍ଲାବୋର୍ଡ ଦଖଲ କଲା । ଗୋପବାବୁ ନିର୍ବିବାଦରେ ଚେୟାରମ୍ୟାନ ନିର୍ବାଚିତ ହେଲେ ।

## ଜୀବନର ପ୍ରଥମ ଚାକିରି—ମାସକୁ ୨୦ ଟଙ୍କା

ଏରସମାରୁ ଫେରି ଗ୍ରାମକୁ ଗଲି । 'ପୁନର୍ମୂଷିକୋ ଭବ' ଦଶା । ଗ୍ରାମଠାରୁ ଅଳ୍ପ ଦୂରରେ ଆମର ଖମାର । ସେଇଠାରେ ଗୋରୁଗାଈ, ବାଗବଗିଚା, ଗୃହବାସ ଇତ୍ୟାଦିର ତଦାରଖ ନେବାକୁ ମୁଁ ନିଯୁକ୍ତ ହେଲି । କେତେକ କାରଣରୁ ଭାଇନା ବାପାଙ୍କର କୋପଦୃଷ୍ଟିରେ ପଡ଼ିଥାନ୍ତି । ମୁଁ ମନପ୍ରାଣ ଦେଇ ସେଠାରେ ଗୃହବାସ ଖବର ବୁଝିଲି । ମୂଲିଆଙ୍କ ସଙ୍ଗେ ଧାନ ବାଛିବା ଓ ଗୋଇବା କାମରେ ମଧ୍ୟ ବାପା ମୋତେ ତାଲିମ କଲେ । କିନ୍ତୁ ଏତେ ଇଂରାଜୀ ପାଠ (୧୦ମ ଶ୍ରେଣୀ ପର୍ଯ୍ୟନ୍ତ !) ପଢ଼ି ମୁଁ ଶେଷରେ ହଳବାଡ଼ି କାମ କଲି ବୋଲି ଘରେ କାହାରି ମନରେ ସୁଖ ନ ଥାଏ । ଏହି ସମୟରେ ଖବରକାଗଜରେ ଗୋଟିଏ ବିଜ୍ଞାପନ ଦେଖିଲି ଯେ ମାସିକ ୨୦ ଟଙ୍କା ବେତନରେ ଛଅଜଣ ସୂତାକଟା ଶିକ୍ଷକ କଟକ ଜିଲ୍ଲାବୋର୍ଡ ଅଧୀନରେ ନିଯୁକ୍ତ ହେବେ । ବୋର୍ଡ ଅଫିସରେ ପ୍ରାର୍ଥୀମାନଙ୍କର ଏକ ପରୀକ୍ଷା ହୋଇ ନିମନ୍ତ୍ରିତ ଦିଆଯିବ । ବାପାଙ୍କୁ ଏ ବିଷୟ ଜଣାଇବାରୁ ସେ ଆନନ୍ଦରେ ମୋତେ ଦରଖାସ୍ତ କରିବାକୁ କହିଲେ । ନାତି ତାଙ୍କର ଜିଲାବୋର୍ଡରେ ଚାକିରି କରିଛି—ଏତିକି ଅନ୍ତତଃ ଲୋକମାନଙ୍କ ଆଗରେ କହିପାରିବେ ତ !

କଟକ ଆସିଲି । ଜିଲ୍ଲାବୋର୍ଡ ଅଫିସରେ ସୂତାକଟା ପରୀକ୍ଷା ଦେବାକୁ ହେଲା । ମୁଁ ଦ୍ୱିତୀୟ ସ୍ଥାନ ଅଧିକାର କରି ନିଯୁକ୍ତି ପାଇଲି । ମୋର ପୁରୁଣା ଜାଗା ବଡ଼ଚଣା ଅଞ୍ଚଳକୁ ଯିବାକୁ ମୋତେ ଆଦେଶ ହେଲା ।

୧୯ ବର୍ଷ ବୟସରେ ଚାକିରି ଜୀବନ ଆରମ୍ଭ କଲି । ତୁଳାଭଣା ଯନ୍ତ୍ର ଖଣ୍ଡିଏ ହାତରେ ଧରି ଚାଲିଲି ମୋର ପ୍ରଥମ କର୍ମକ୍ଷେତ୍ରକୁ । ବଡ଼ଚଣା ନିକଟରେ ହାଇଲେଭଲ କେନାଲ କୂଳରେ ଇଜର୍ଟନ ଗାର୍ଲସ ସ୍କୁଲ । ସେଇଠାରେ ଶିକ୍ଷକ ଓ ଛାତ୍ରୀମାନଙ୍କୁ

ସୂତାକଟା ଶିଖାଇବାକୁ ହେଲା । ହେଡ଼ପଣ୍ଡିତ ବୃଦ୍ଧ, ସୁତରାଂ ତାଙ୍କୁ ଏ କଠୋର ସାଧନାରୁ ଅବ୍ୟାହତ ଦେଇ ଝିଅମାନଙ୍କୁ ଆଗେ ଶିଖାଇଲି । ସେଇଠାରେ ଥାଇ ଗୋପବାବୁଙ୍କୁ ଘରୋଇ ଖବରରେ ଚିଠି ଲେଖେ ଏବଂ ପରାମର୍ଶ ମାଗେ । ସେ ମଧ୍ୟ ତାଙ୍କ କର୍ମଜଞ୍ଜାଳ ଭିତରେ ମୋତେ ଉତ୍ତର ଦିଅନ୍ତି । ଥରେ ସେ ମୋତେ ନିୟମିତ ଗୀତା ପଢ଼ିବାକୁ ଉପଦେଶ ଦେଇଥିଲେ । ସେ ଥିଲେ ମୋର ଜଣେ ପରମ ହିତୈଷୀ ଓ ପ୍ରକୃତ ଅଭିଭାବକ ।

ବଡ଼ଚଣାରେ କାମ ଶେଷ କରି ନିକଟବର୍ତ୍ତୀ ଅନ୍ୟାନ୍ୟ ବାଳିକା ବିଦ୍ୟାଳୟକୁ ଗଲି ଏବଂ ସେଠାରେ ଶିକ୍ଷକ ଓ ଛାତ୍ରୀମାନଙ୍କୁ ସୂତାକଟା ଶିଖାଇଲି । ଶିକ୍ଷୟିତ୍ରୀ କେହି ନ ଥିଲେ । ଏହି ଉପଲକ୍ଷରେ ବଇଙ୍ଗା, ଗଡ଼ମଧୁପୁର, ଜେନାପୁର, ଛତିଆ ପ୍ରଭୃତି ସ୍ଥାନକୁ ଯିବାକୁ ପଡ଼ିଥିଲା । ସବୁଠାରେ ହାତରେ ରୋଷେଇ କରି ଖାଏ, କେଉଁଠି ସ୍କୁଲର ସେକ୍ରେଟେରୀ ଖାଇବାର ବ୍ୟବସ୍ଥା କରିଦିଅନ୍ତି । ଛତିଆରେ ଥିବା ସମୟରେ ମୋ ଜୀବନର ଏକ ବିଶେଷ ଘଟନା ଘଟିଲା ।

ବିବାହ (୧୯୨୫)

ମୋର ପିଉସା ଦୁଃଖିଶ୍ୟାମ ମିଶ୍ରଙ୍କଠାରୁ ଦିନେ ଖଣ୍ଡେ ଚିଠି ପାଇଲି । ମୋ ବିବାହ ବିଷୟରେ ସେ ଲେଖିଥିଲେ । ତାଙ୍କ ଗ୍ରାମ ସୁନ୍ଦରଗ୍ରାମର ବଳରାମ ମିଶ୍ରଙ୍କ କନ୍ୟାସଙ୍ଗେ ମୋର ବିବାହ ପ୍ରସଙ୍ଗରେ ସେ ଆମ ଘରକୁ ପ୍ରଥମେ ଯାଇଥିଲେ, ମାତ୍ର ମୋର ମତ ନ ଜାଣିଲାପର୍ଯ୍ୟନ୍ତ ବାପା ସେ ଦିଗରେ ଆଦୌ ଆଗେଇ ପାରିବେ ନାହିଁ ବୋଲି କହିବାରୁ ସେଠାରୁ ଫେରି ସେ ମୋତେ ଚିଠି ଲେଖିଥାନ୍ତି । ମୁଁ ସଙ୍ଗେ ସଙ୍ଗେ ତାଙ୍କୁ ନିମ୍ନ ମର୍ମରେ ଉତ୍ତର ଦେଲି । ମୁଁ ଲେଖିଲି—ପିଉସା ମୋର ପିତୃତୁଲ୍ୟ । ସେ ଯଦି ବିଚାରୁଥାନ୍ତି ଯେ କନ୍ୟା ମୋର ଉପଯୁକ୍ତ ଏବଂ ଏ ବିବାହଦ୍ୱାରା ମୋର କିଛି କ୍ଷତି ହେବ ନାହିଁ, ତେବେ ମୁଁ ରାଜି ହେବାରେ କୌଣସି ବାଧା ନାହିଁ । ମୁଁ କେବଳ ଚାହିଁଥିଲି ଯେ କନ୍ୟା କିଛି ପାଠଶାଠ ପଢ଼ିଥିବ ।

ଦିନେ ବାରଟାବେଳେ ସ୍କୁଲକାମ ସାରି ମୁଁ ବସାକୁ ଫେରିବାକୁ ବସିଛି, ଦୁଃଖିଶ୍ୟାମ ପିଉସା ଜଣେ ଦୀର୍ଘକାୟ ଖଦଡ଼ପରିହିତ ଶ୍ମଶ୍ରୁଧାରୀ ବ୍ୟକ୍ତିଙ୍କ ସହ ସ୍କୁଲରେ ଆସି ପହଞ୍ଚିଲେ । ତାଙ୍କ ଆଗମନର ଉଦ୍ଦେଶ୍ୟ ଅନୁମାନ କରିନେଲି । ଆଗନ୍ତୁକ ଭଦ୍ରବ୍ୟକ୍ତିଜଣକ ବୋଧହୁଏ କନ୍ୟାପିତା । ଉଭୟଙ୍କୁ ନମସ୍କାର ଜଣାଇ ବସାକୁ ଡାକିନେଲି । ମୋ ଉତ୍ତର ନ ପାଇବାରୁ ସେ ଏତେ ବାଟ ଚାଲିଆସିଥିଲେ, କାରଣ ବିବାହ ତିଥି ନିକଟ ହୋଇ ଆସୁଥିଲା । ମୁଁ ସମ୍ମତିସୂଚକ ଉତ୍ତର ଦେଇଛି ଶୁଣି ଆଶ୍ୱସ୍ତ ହେଲେ ।

ଗ୍ରାମରେ ମିଳାମିଶି ଗୋପାଳବାସ କଲୁ । ନାନା ବିଷୟ ଆଲୋଚିତ ହେଲା । ପ୍ରସିଦ୍ଧ ଛତ୍ରଆବାଟର ଦକ୍ଷିଣ ପଟେ ଥିବା ଗୋଟିଏ ପଡ଼ା ବସ୍ତିର ଶ୍ରେଷ୍ଠ ଖୁଲଘରଟିଏ । ସେହିଠାରେ ମୋର ଶ୍ୱଶୁର ତାଙ୍କ ଭାବୀ ଜାମାତାର ଉଙ୍ଗଚାଙ୍ଗ ନିଶ୍ଚୟ ଲକ୍ଷ୍ୟ କରିଥିବେ । ସେହି ଗ୍ରାମରେ ମୋର ଏବଂ ତାଙ୍କ କନ୍ୟାଙ୍କର ଭବିଷ୍ୟତ ଜୀବନର ଭାଗ୍ୟ ନିର୍ଣ୍ଣୀତ ହୋଇଗଲା ।

ପରଦିନ ସେମାନେ ଷ୍ଟେସନକୁ ଗଲାବେଳେ ମୋତେ ବିବାହ ତିଥିର ନିର୍ଦ୍ଦିଷ୍ଟ ଦିନ ଜଣାଇ ଛୁଟି ଦରଖାସ୍ତ କରିବାକୁ ପରାମର୍ଶ ଦେଇଗଲେ । ମୁଁ ମଧ୍ୟ ସେମାନଙ୍କୁ ବାପାଙ୍କ ନିକଟକୁ ଯାଇ ଏ ବିଷୟରେ ଶେଷ ନିଷ୍ପତ୍ତି କରିବାକୁ ଅନୁରୋଧ କରିଥିଲି ।

ସେହିଠାରେ ମୋର ବିବାହ ସ୍ଥିର ହୋଇଛି ବୋଲି ଭଉଣୀଙ୍କଠାରୁ ଚିଠି ପାଇ ମଙ୍ଗଳକୃତ୍ୟର ଠିକ୍ ପୂର୍ବଦିନ ସନ୍ଧ୍ୟାରେ ଗ୍ରାମରେ ପହଞ୍ଚିଲି । ମୋ ପହଞ୍ଚିବାର ଏତେ ବିଳମ୍ବ ଦେଖି ବାପା ନାନା ଆଶଙ୍କା କରି ହତାଶ ଭାବରେ ବସିଥିଲେ । ମୋତେ ଦେଖିବାମାତ୍ରେ ଆନନ୍ଦରେ ଉତ୍ଫୁଲ୍ଲ ହୋଇ ପୂର୍ଣ୍ଣ ଉତ୍ସାହରେ ବିବାହ ଆୟୋଜନରେ ଲାଗିପଡ଼ିଲେ ।

ବରବେଶରେ ସଜ୍ଜିତ ହୋଇ ପାଲିଙ୍କିରେ ବସି ବିବାହ ସ୍ଥାନକୁ ଗଲି । ୧୯ ବର୍ଷର ବରକୁ ୯ ବର୍ଷର କନ୍ୟା । ପାଞ୍ଚୁ, ବଜଲବାଟ ଆଦି ସବୁ ଖଦଡ଼ରେ ହୋଇଥିଲା, କାରଣ ଏ କ୍ଷେତ୍ରରେ ଶ୍ୱଶୁର, କୋଇଁ, ମଧ୍ୟସ୍ଥ, ଉନ୍ନାଣଯୋକ ଜାତୀୟ ବ୍ରତ ଗ୍ରହଣ କରି ବହୁଦିନ ପୂର୍ବରୁ ଖଦଡ଼ ପରିଧାନ କରୁଥିଲେ । ପ୍ରାୟ ୪ଟା ବେଳକୁ ବେଦୀକର୍ମ ସରିବା ପରେ ଶ୍ୱଶୁରଙ୍କର କେତେଜଣ ଛାତ୍ରଙ୍କ ସଙ୍ଗରେ ବସି କଥାବାର୍ତ୍ତା ହେଲି ।

ମୋ ଶ୍ୱଶୁର ବଲରାମ ମିଶ୍ର ଅନେକ ବର୍ଷ ଧରି ଦଶପଲ୍ଲା ମାଇନର ସ୍କୁଲର ଦ୍ୱିତୀୟ ଶିକ୍ଷକ ଥିଲେ ଏବଂ ସେଠା ପୋଷ୍ଟ ଅଫିସର କାର୍ଯ୍ୟ ମଧ୍ୟ ତୁଟାଉଥିଲେ । କାନ୍ଧମେଳର ଦାଉ ସେ ଅଙ୍ଗରେ ନିଭାଇଥିଲେ । ତାଙ୍କର ଆଦର୍ଶ ଚରିତ୍ର, ସେବା ମନୋବୃତ୍ତି ଏବଂ ସ୍ୱଦେଶପ୍ରୀତି ଯୋଗୁଁ ସେ ବିଶେଷ ଲୋକପ୍ରିୟ ହୋଇପାରିଥିଲେ । ସେତେବେଳେ ଦଶପଲ୍ଲାର ଯେଉଁ କେତେଜଣ ମୁଷ୍ଟିମେୟ ଛାତ୍ର ଉଚ୍ଚଶିକ୍ଷାଲାଭ ଆଶାରେ କଟକ ଆସିଥିଲେ, ସେମାନେ ପ୍ରାୟ ସମସ୍ତେ ତାଙ୍କ ଛାତ୍ର । ତେଣୁ ତାଙ୍କର ଏକମାତ୍ର କନ୍ୟାର ବିବାହ ଉତ୍ସବରେ ଯୋଗଦେବା ଲାଗି ସେମାନଙ୍କ ମଧ୍ୟରୁ ଅଧିକାଂଶ ସୁନ୍ଦରଗ୍ରାମ ଯାଇଥିଲେ ।

ନିଜ ଇଚ୍ଛାରେ ହେଉ କି ଶ୍ୱଶୁରଙ୍କ ପ୍ରରୋଚନାରେ ହେଉ, ଶ୍ୟାମସୁନ୍ଦର ହୋତା ନାମକ ଜଣେ କଲେଜ ଛାତ୍ର ମୋତେ ପାଠ ପଢ଼ିବାକୁ ବିଶେଷ ଭାବରେ ପ୍ରବର୍ତ୍ତାଇଲେ । ଯେଉଁ ଇଂରେଜ ସରକାର ସଙ୍ଗେ ଅସହଯୋଗ କରି ବ୍ରତବର୍ଷ ହେଲା

ସ୍କୁଲ ଛାଡ଼ିଛି, ଖଦଡ଼ ପିନ୍ଧିଛି, ବିଲାତି କନାର ଛତା ନ ଧରି ମାସ ମାସ ଖରାବର୍ଷା ସହିଛି, ଆଜି ପୁଣି ସେଇ ସ୍କୁଲକୁ ଯିବି ! ଏକେ ତ ତଳ ଶ୍ରେଣୀର ପିଲାଙ୍କ ସଙ୍ଗେ ବସି ପଢ଼ିବାକୁ ହେବ, ଦ୍ୱିତୀୟରେ ଅର୍ଥାଭାବ । ମାତ୍ର ମୋର ଏ ସବୁ ଆପତ୍ତି ଶ୍ୟାମବାବୁଙ୍କ ଯୁକ୍ତି ନିକଟରେ ହାର ମାନିଲା । ସେ କହିଲେ, "ଯାହା କରିବା ଠିକ୍ ବୋଲି ବୁଝୁଛ, ତାହା କରିବାରେ ଲାଜ କାହିଁକି ? ଏତିକି ମାନସିକ ଦୁର୍ବଳତାକୁ କଣ ଏଡ଼ି ଦେଇ ପାରିବ ନାହିଁ ? ତେବେ ଏତେଦିନ କଂଗ୍ରେସରେ ମିଶି କଣ ଶିଖିଛ ? ଦେଶ କାମ କର କି ଯାହା କର, ଏପରି ଅଧାପାଠୁଆ ହୋଇ ଜୀବନରେ କଣ କରିପାରିବ ?" ତାଙ୍କର ଯୁକ୍ତିକୁ ଖଣ୍ଡନ କରିବାକୁ ମୋର କିଛି ଆସ୍ଥା ନ ଥିଲା । ଭାବିଲି, ବାସ୍ତବିକ କଥା । ଲାଜ ମାଡ଼ିବାଟା ମାନସିକ ଦୁର୍ବଳତା । ମୁଁ ନିଶ୍ଚୟ ତାକୁ ଜୟ କରି ପାରିବି । ଗାନ୍ଧୀଙ୍କ ନୀତି ଗ୍ରହଣ କରି ମୁଁ ଅନ୍ତତଃ ସେତିକି ବଳ ହାସଲ କରିଛି, କିନ୍ତୁ ପଇସା କାହୁଁ ପାଇବି ଯେ ଆଉ ପଢ଼ିବି ? ଶ୍ୟାମବାବୁ ମୋର ଏ ଦ୍ୱିତୀୟ ଆପତ୍ତି ପାଇଁ ମଧ୍ୟ ପ୍ରସ୍ତୁତ ଥିଲେ । ସେ ଆହୁରି ଏକ ବଳିଷ୍ଠ ଯୁକ୍ତି ଦେଖାଇ କହିଲେ, "ମୁଁ ନିଜେ ଟିଉସନ କରି ବି.ଏ. ପଢ଼ିଲିଣି, ତୁମେ କାହିଁକି ନ ପାରିବ ? ପଢ଼ିଛ ପରା Where there is a will, there is a way."

ଶ୍ୟାମବାବୁ ମୋଠାରୁ ବୟସ୍କ, ଅଧିକ ଶିକ୍ଷିତ, ପୁଣି ଟିଉସନ କରି ପାଠ ପଢ଼ୁଛନ୍ତି । ତାଙ୍କପ୍ରତି ମୋର ଭକ୍ତି ଆସିଲା । ଆଉ ଅଧିକ ତର୍କ ନ କରି ମୁଁ ପୁଣି ପଢ଼ିବାକୁ ରାଜି ହୋଇଗଲି ।

* * *

## ପୁଣି ସେଇ ସାହେବୀ ପାଠ

ଶୁଭେ ଶୁଭେ ମୋର ବିବାହ କାର୍ଯ୍ୟ ସମ୍ପନ୍ନ ହେଲା । ସାତମଙ୍ଗଳା ସାରି ଘରକୁ ଫେରିବା ସଙ୍ଗେ ସଙ୍ଗେ ମୁଁ କଟକ ଜିଲ୍ଲାବୋର୍ଡର ସେ ୨୦ ଟଙ୍କିଆ ଚାକିରିରୁ ଇସ୍ତଫା ଦେଲି । ଶ୍ୱଶୁରଙ୍କର ପ୍ରରୋଚନା ଓ ସାହାଯ୍ୟ ମୋ ଜୀବନର ଗତିକୁ ପୁଣି ଏକ ନିର୍ଦ୍ଦିଷ୍ଟ ଦିଗକୁ ଫେରାଇ ଆଣିଲା । ସେଥିଲାଗି ମୁଁ ତାଙ୍କ ନିକଟରେ ଓ ତାଙ୍କର ଛାତ୍ର ଶ୍ୟାମସୁନ୍ଦରବାବୁଙ୍କ ନିକଟରେ ଚିରକୃତଜ୍ଞ । କଟକ ଆସି ଦଶପଲ୍ଲା ମେସ୍‌ରେ ପହଞ୍ଚିଲି । ସେହିଠାରେ ଶ୍ୟାମସୁନ୍ଦରବାବୁ ଓ ଅନ୍ୟାନ୍ୟ ଦଶପଲ୍ଲା ପିଲା ରହିଥାନ୍ତି । ସେମାନେ ସମସ୍ତେ ମୋ ଶ୍ୱଶୁରଙ୍କର ଛାତ୍ର । ଦଶପଲ୍ଲାର ପ୍ରଥମ ବିପ୍ଳବୀ ଗୋବିନ୍ଦଚନ୍ଦ୍ର ମିଶ୍ର ମଧ୍ୟ ସେଠାକୁ ଯିବାଆସିବା କରୁଥାନ୍ତି ।

ସେତେବେଳକୁ ମାଟ୍ରିକ୍ୟୁଲେଶନର ଫାଇନାଲ ପରୀକ୍ଷା ସରି ଯାଇଥାଏ । ସପ୍ଲିମେଣ୍ଟାରୀ ପରୀକ୍ଷା ଥାଏ ଆଉ ପ୍ରାୟ ଦୁଇ ମାସ । ସତ୍ୟବାଦୀ ଜାତୀୟ ବିଦ୍ୟାଳୟର ଅନେକ ଛାତ୍ର ମୋ ଭଳି ଆଉ ଥରେ ଏଇ ବଜାଡ଼ୀୟ ସ୍କୁଲକଲେଜରେ ପଢ଼ିବାର ଇଚ୍ଛା ଦୂର କରିଥାନ୍ତି । ପ୍ରାଇଭେଟ ଛାତ୍ରଭାବରେ ସମସ୍ତେ ପରୀକ୍ଷା ଦେବେ । ସେଥିପାଇଁ ରେଭେନ୍ସା କଲେଜିଏଟ୍ ସ୍କୁଲରେ ଆଗ ଟେଷ୍ଟ ପରୀକ୍ଷା ଦେବାକୁ ହେଲା ।

ପ୍ରାୟ ପନ୍ଦର ଦିନଯାଏ ପଢ଼ାପଢ଼ିରେ ଆଦୌ ମନ ଲାଗିଲା ନାହିଁ । ବହୁ ଦିନ ହେଲା ପାଠ ଛାଡ଼ିଛି, ପୁଣି ମାଟ୍ରିକ ସେକେଣ୍ଡ କ୍ଲାସର ବର୍ଷ ଆରମ୍ଭରୁ । ଯାହା ହେଉ, ବର୍ତ୍ତମାନ ଅନ୍ୟ ଗତି ନାହିଁ । ସ୍କୁଲରେ ପଢ଼ୁଥିବାବେଳେ ଇଚ୍ଛାଧୀନ ଗଣିତ ନେଇଥିଲି । ବର୍ତ୍ତମାନ କିନ୍ତୁ ସମୟର ସ୍ୱଳ୍ପତା ଦୃଷ୍ଟିରୁ ସାହସ ପାଇଲି ନାହିଁ, ସଂସ୍କୃତ ଅପ୍‌ସନାଲ୍ ନେଲି । ପଢ଼ାପଢ଼ି କରି ଯଥା ସମୟରେ ଟେଷ୍ଟ ପରୀକ୍ଷା ଦେଲି ।

ଫଳ ବାହାରିଲା । ମୁଁ sent up ହୋଇଛି ବୋଲି ଖବର ପାଇଲି । ତାପରେ ଦରଖାସ୍ତ ଫର୍ମ ପୂରଣ ଓ ଫିସ୍ ଦାଖଲ କରିବାର କଥା । ଦଶପଲ୍ଲାର ଗୋବିନ୍ଦବାବୁଙ୍କ ସଙ୍ଗେ ଦଶପଲ୍ଲା ମେସ୍‌ରେ ପରିଚୟ ହୋଇଥାଏ । ସେ ରହୁଥାନ୍ତି ଗୋପାଳଚନ୍ଦ୍ର ପ୍ରହରାଜଙ୍କର ଗୋଟିଏ ବାହାର ଘରେ । ମୋର ମୁରବିପରି ସେ ପରୀକ୍ଷା ଓ ପଢ଼ାପଢ଼ି କଥା ବୁଝାବୁଝି କରୁଥାନ୍ତି । ଦରଖାସ୍ତ ଫର୍ମ ପୂରଣ ହେଲା, ମାତ୍ର ମୋର ବୟସର ଘରଟି ପୂରଣ ନ ହୋଇ ଖାଲି ରହିଥାଏ । ସେଥିପାଇଁ ପ୍ରମାଣପତ୍ର ଆବଶ୍ୟକ । ତା ନ ହେଲେ ମୋଠାରୁ ଫିସ୍ ଗ୍ରହଣ କରାଯାଇପାରିବ ନାହିଁ ବୋଲି ଭାରପ୍ରାପ୍ତ ଶିକ୍ଷକ ମନା କରିଦେଲେ । ତା ସଙ୍ଗେ ସଙ୍ଗେ କହିଲେ, "ସତ୍ୟବାଦୀ ଜାତୀୟ ସ୍କୁଲ ଛାତ୍ରମାନଙ୍କ ପାଇଁ ଇନ୍‌ସପେକ୍ଟର ସ୍ୱତନ୍ତ୍ର ଆଦେଶ କରିଛନ୍ତି ଯେ ପଣ୍ଡିତ କୃପାସିନ୍ଧୁ ମିଶ୍ରଙ୍କ ସ୍ୱାକ୍ଷରରେ ସ୍କୁଲ-ତ୍ୟାଗ ସାର୍ଟିଫିକେଟ ଆଣିଲେ ତାହା ଗ୍ରହଣ କରାଯିବ ।"

ମୁଁ ଯଦିଓ ସେଇ କଲେଜିଏଟ ସ୍କୁଲରେ ଗୁରବର୍ତ୍ତିତରେ ପଢ଼ୁଥିଲି, ମୋର ବୟସର ପ୍ରମାଣ ପିଚୁଲା କାଗଜପତ୍ର ଦେଖି ବାହାର କରୁଛି ବା କିଏ ? ମୁଁ ତ ଘରୋଇ ଛାତ୍ରଭାବରେ ବର୍ତ୍ତମାନ ପରୀକ୍ଷା ଦେଉଛି, ଫିସ୍ ନ ଦେଇପାରିଲେ ସ୍କୁଲର ବା କ୍ଷତି କଣ ? ସୁତରାଂ ଗୋବିନ୍ଦବାବୁଙ୍କ ସଙ୍ଗେ ପରାମର୍ଶ କରି ସତ୍ୟବାଦୀ ଯାଇ ସେଠାରୁ ମୋର ସାର୍ଟିଫିକେଟ ଖଣ୍ଡି ଆଣିବାକୁ ସ୍ଥିର କଲି ।

ଦିନଗାଡ଼ିରେ ସତ୍ୟବାଦୀ ଯାଇ ସ୍କୁଲରେ ପହଞ୍ଚିଲି । ଅଫିସରେ ସେତେବେଳେ କରମୀବାବୁଙ୍କ ପାଖରେ ହେଡ଼ମାଷ୍ଟର କୃପାସିନ୍ଧୁବାବୁ ଓ ଆଚାର୍ଯ୍ୟ ହରିହର ବସିଥିଲେ । ମୋତେ ଅକସ୍ମାତ୍ ଦେଖି ହସ ହସ ମୁଖରେ ଆଚାର୍ଯ୍ୟ ମହାଶୟ ପଚାରିଲେ, "କତେ କୁଆଡ଼େ ଆସିଲୁ ?" ମୁଁ ମୋର ଆସିବାର ଅଭିପ୍ରାୟ ଜଣାଇବାକୁ

ହେଡ଼ମାଷ୍ଟରଙ୍କ ନିର୍ଦ୍ଦେଶରେ କିରାଣିବାବୁ ମୋର ପ୍ରବେଶିକା ପାସ୍ ସାର୍ଟିଫିକେଟ ଖଣ୍ଡି ବାହାର କରି ମୋତେ ଦେଲେ ।

'ଉତ୍କଳ ସ୍ୱରାଜ୍ୟ ଶିକ୍ଷା ପରିଷଦ' ଶିରୋନାମାରେ ସାର୍ଟିଫିକେଟଟି ଛପା ଯାଇଥାଏ । ସୁନ୍ଦର ଅକ୍ଷରରେ ମୋର ନାମଧାମ ଏବଂ ମୁଁ ପ୍ରଥମ ଶ୍ରେଣୀରେ ପ୍ରଥମ ସ୍ଥାନ ଅଧିକାର କରି ପାସ୍ କରିଛି ବୋଲି ସେଥିରେ ଉଲ୍ଲେଖ ଥାଏ । କିନ୍ତୁ ହାୟ ! ଯେଉଁଥିପାଇଁ ମୁଁ ଏତେ ପଥଶ୍ରମ କରି କଟକରୁ ଆସିଲି, ସେହି ବୟସ ଘରେ ଗୋଟିଏ ସ୍ପଷ୍ଟ ଛକ (X) ଚିହ୍ନ ଦିଆଯାଇଛି ! ଏହା ଦେଖି ମୋର ସମସ୍ତ ଆଶା ଓ ଆକାଂକ୍ଷା ଧୂଳିସାତ୍ ହେଲା । ଆଚାର୍ଯ୍ୟ ମହାଶୟଙ୍କୁ ମୋର ଦୁଃଖ ଜଣାଇବାରୁ ସେ ହେଡ଼ମାଷ୍ଟରଙ୍କୁ କହିଲେ ଏବଂ ସଙ୍ଗେ ସଙ୍ଗେ ଆଡ଼ମିସନ୍ ରେଜିଷ୍ଟର ଦେଖାହେଲା, ମାତ୍ର ମୋ ବୟସର କୌଣସି ପ୍ରମାଣ ସେଥିରୁ ମିଳିଲା ନାହିଁ । ପଣ୍ଡିତ ନୀଳକଣ୍ଠ ତ ମୋତେ ଅଟଳବାବୁଙ୍କ ଡାକ୍ତରଖାନାରୁ ଧରିନେଇ ସେଠାରେ ଭର୍ତ୍ତି କରି ଦେଇଥିଲେ, ତେଣୁ ବୟସର ପ୍ରମାଣ କେଉଁଠୁ ମିଳିବ ? କୃପାସିନ୍ଧୁବାବୁ ଆଚାର୍ଯ୍ୟଙ୍କୁ ଶୁଣି କହିଲେ, **"We can't manufacture an age for him."** ଅର୍ଥାତ୍ ତା ପାଇଁ ଆମେ ଗୋଟାଏ ବୟସ ଗଢ଼ି ଦେଇପାରିବୁ ନାହିଁ ।

ପୂଜ୍ୟ ଗୁରୁଜନମାନଙ୍କୁ ବିଦାୟ ନମସ୍କାର ଜଣାଇ ହତାଶ ମନରେ ଫେରି ଆସିବାକୁ ଉଦ୍ୟତ ହେଲି । ସାର୍ଟିଫିକେଟଟି ଆଣିବା ଆଉ ଆବଶ୍ୟକ ମନେ କଲିନାହିଁ । ତାହା ଦେଖି ଆଚାର୍ଯ୍ୟ ମହାଶୟ ହସି ହସି କହିଲେ, "ଆରେ ସାର୍ଟିଫିକେଟ ଖଣ୍ଡ ନେଇ ଯା, ପାଖରେ ରଖିଥିବୁ । ସ୍ୱରାଜ୍ୟ ହେଲେ ସୁନାର ଫାଉଣ୍ଟେନ ଖଣ୍ଡେ ମିଳିବ ।" ଶାସ୍ତ୍ରବଚନ ମନେ ପଡ଼ିଗଲା—ଆପଦ୍ କାଳରେ 'ବୃଦ୍ଧସ୍ୟ ବଚନଂ ଗ୍ରାହ୍ୟଂ ।' ଦ୍ୱିରୁକ୍ତି ନ କରି ଅଫିସରୁ ସାର୍ଟିଫିକେଟଟି ଧରି ସିଧା ରେଲଷ୍ଟେସନ ଅଭିମୁଖରେ ଚାଲିଲି ।

କଟକରେ ପହଞ୍ଚିଲି । ସେହିଦିନ ପରୀକ୍ଷା ଫିସ୍ ଦାଖଲ ହେବାର କଥା । ମନରେ ଦାରୁଣ ନୈରାଶ୍ୟ ଓ ବ୍ୟର୍ଥତା । ଟ୍ରେନ୍‌ରେ ଜରି ଆସିଗଲା । ବହୁକଷ୍ଟରେ ଗୋପାଳଚନ୍ଦ୍ର ପ୍ରହରାଜଙ୍କ ବାହାର ଘରେ ପହଞ୍ଚି ଗୋବିନ୍ଦବାବୁଙ୍କୁ ଦେଖାକଲି ଏବଂ ସମସ୍ତ ହାଲ ଜଣାଇଲି । କାନ୍ଦ ମାଡ଼ିଲା । କହିଲି, "ଜାଣି ତ ପାଠପଢ଼ା ଛାଡ଼ିଥିଲି, ପୁଣି କାହିଁକି ପଢ଼ିବାକୁ ମନ କରି ଏତେ ହଟହଟା ହେଲି !" ଗୋବିନ୍ଦବାବୁ ମୋତେ ଆଶ୍ୱାସନା ଦେଇ କହିଲେ, "ବ୍ୟସ୍ତ ହେଉଛୁ କାହିଁକି ? ଟଙ୍କା ତ ଯୋଗାଡ଼ ହୋଇଯାଇଛି । ଆଉ ଏଇ ଗୋଟାଏ ସାମାନ୍ୟ କଥା ଯୋଗୁ କଣ ତୋର ଜୀବନଟା ମାଟି ହେବ ? ସାର୍ଟିଫିକେଟଟା ଆଣିନ୍ଥୁ, ଦେଖିବା । ଅଚ୍ଛା, ତୋର ବର୍ତ୍ତମାନ ବୟସ କେତେ ?"

ସାର୍ଟିଫିକେଟ ଖଣ୍ଡି ପକେଟରୁ କାଢ଼ି ଗୋବିନ୍ଦବାବୁଙ୍କ ହାତକୁ ବଢ଼ାଇ ଦେଉ ଦେଉ କହିଲି, "୧୧ ବର୍ଷ" ।

ଗୋବର୍ଦ୍ଧନବାବୁ ବର୍ତ୍ତମାନ ସ୍ୱର୍ଗରେ ରହୁଛନ୍ତି । ମୋ ପାଇଁ ସେ ଠିକ୍ କଲେ କି ଭୁଲ୍ କଲେ ଭବିଷ୍ୟତ କହିବ । ଖଣ୍ଡେ ଛୁରୀରେ ସାର୍ଟିଫିକେଟରୁ ଏକ ଦାଗଟିକୁ ଘଷି ଉଠାଇ ଦେଇ ସେହି ସ୍ଥାନରେ ସେ ବୟସ ଘରେ ଇଂରାଜୀରେ ୧୯ ଓ ମାସ ଘରେ ୩ ଲେଖିଦେଲେ ଏବଂ ମୋତେ ଫିସ୍ ଦାଖଲ କରି ଆସିବାକୁ ପଠାଇଦେଲେ ।

କଲେଜିଏଟ୍ ସ୍କୁଲ ଅଫିସ୍ । ଦୁଇଜଣ ଶିକ୍ଷକ ପିଲମାନଙ୍କଠାରୁ ଫିସ୍ ନେଉଥାନ୍ତି । ମୋ ନାଁ ଡକାଗଲା । ଶିକ୍ଷକ ସାର୍ଟିଫିକେଟ ଦେଖିବାକୁ ମାଗିଲେ । ମୁଁ କମ୍ପିତ ହସ୍ତରେ ତାଙ୍କ ହାତକୁ ସେ ଖଣ୍ଡି ବଢ଼ାଇ ଦେଲି । ଠିକ୍ ସେତିକିବେଳେ ଅନ୍ୟ ଶିକ୍ଷକ ଜଣେ ସମ୍ମୁଖରେ ପଡ଼ିଥିବା ଟେଷ୍ଟ ପରୀକ୍ଷାର ମାର୍କ ଲିଷ୍ଟ ଦେଖି କହିଲେ, "ଏ ପିଲା ତ highest mark ରଖିଛି । ନିଶ୍ଚୟ ପାସ୍ କରିବ "

ସେ ଏକଥା କାହିଁକି କହିଲେ ଜାଣେ ନା । ତାଙ୍କ ମନ୍ତବ୍ୟ ଶୁଣି କିମ୍ବା ବା ଭଗବାନଙ୍କ ଅପାର କରୁଣା ଯୋଗୁ ହେଉ, ମୋ ସାର୍ଟିଫିକେଟର ଛୁରୀକର୍ମ ଫିସାଦ ପ୍ରଥମ ଶିକ୍ଷକଙ୍କ ଆଖିରେ ପଡ଼ିଲା ନାହିଁ । ସେ ମୋର ବୟସ ଦେଖି ନେଇ ସାର୍ଟିଫିକେଟ ଖଣ୍ଡି ମୋ ହାତକୁ ଫେରାଇ ଦେବାବେଳେ କହିଲେ, "ଏ ଖଣ୍ଡ ଯତ୍ନରେ ରଖିଥିବ, ପରେ ଦରକାର ହୋଇପାରେ ।" ମୁଁ ତାଙ୍କ ହାତରୁ ସେ କାଗଜଟିକୁ ଚଞ୍ଚଳ ନେଇ ଆସି ପକେଟରେ ପୂରାଇଦେଲି ଏବଂ ଫିସ୍ ଦେଇସାରି ବସାକୁ ଫେରିଲି । ସବୁ ଶୁଭେ ଶୁଭେ ହୋଇଗଲା ଶୁଣି ଗୋବର୍ଦ୍ଧନବାବୁ ଆଶ୍ୱସ୍ତ ଓ ଆନନ୍ଦିତ ହେଲେ ।

ଯଥା ସମୟରେ ମାଟ୍ରିକ୍ ପରୀକ୍ଷା ଦେଲି । ଫଳ ବାହାରିଲା । ମୁଁ ଦ୍ୱିତୀୟ ଶ୍ରେଣୀରେ ପାସ୍ କଲି । ପ୍ରଥମ ଶ୍ରେଣୀ ହୋଇ ପାରିଲି ନାହିଁ ବୋଲି ଦୁଃଖ କଲି ନାହିଁ । ସେକେଣ୍ଡ କ୍ଲାସ ଆରମ୍ଭରୁ ଗୃହବର୍ଷ ପାଠପଢ଼ା ଛାଡ଼ି କେବଳ ଦୁଇମାସର ପ୍ରସ୍ତୁତି ପରେ ପରୀକ୍ଷା ଦେଇଛି । ସ୍କୁଲରେ ନାମ ଲେଖାଇ ବର୍ଷେ ପଢ଼ିଥିଲେ ନିଶ୍ଚୟ ପ୍ରଥମ ଶ୍ରେଣୀ ପାଇଥାନ୍ତି । ଶ୍ୟାମବାବୁ ଓ ମୋର ଅନ୍ୟ କେତେକ ବନ୍ଧୁ ମୋତେ ସେହିପରି ପରାମର୍ଶ ଦେଉଥିଲେ । ମାତ୍ର ମୁଁ ଆଉ ଗୋଟାଏ ବର୍ଷ ନଷ୍ଟ କରିବାକୁ ଇଚ୍ଛା କଲି ନାହିଁ । ଇଂରେଜ କବି ପରା କହିଛନ୍ତି—

'Trust no future, however pleasant,
Let the dead past bury its dead,
Act, act in the living present,
Heart within and God overhead.'

ମନୁଷ୍ୟ ଯେତେବେଳେ କୌଣସି କାର୍ଯ୍ୟରେ ବିଫଳମନୋରଥ ହୁଏ ବା ଆଶାନୁରୂପ ଫଳ ନ ପାଏ, ସେ ନାନା ପ୍ରକାରରେ ତା ବିପର୍ଯ୍ୟସ୍ତ ମନକୁ ସାନ୍ତ୍ୱନା

ହଏ । କହେ, 'ଈଶ୍ୱର ଯାହା କରନ୍ତି, ମଙ୍ଗଳ ପାଇଁ' ବା 'ଭାଗ୍ୟରେ ଯାହା ଥିଲା, ହେଲା' । ଏହା ସାଙ୍ଗକୁ ମୋତେ ଆଉ ଗୋଟିଏ ପଦ ମିଳିଗଲା ମନକୁ ବୁଝାଇବାକୁ । କହିଲି, ମୁଁ ଦୁଇଟା ମାଟ୍ରିକ୍ୟୁଲେଶନ ପାସ୍ କରିଛି; ଗୋଟିଏ ଜାତୀୟ ବିଦ୍ୟାଳୟରୁ ଏବଂ ଅନ୍ୟଟି ଇଂରେଜ ସରକାରର ସ୍କୁଲରୁ । ଲୋକେ ଡବଲ ଏମ୍. ଏ.ପାସ୍ କରି ଗୌରବ ଅର୍ଜନ କରନ୍ତି; ଏ ସେହିପରି ଏକ ଶ୍ରେଷ୍ଠ ସ୍ତରର କୃତିତ୍ୱ !'

## ରେଭେନ୍ସା କଲେଜ

ଦଶପଲ୍ଲା ମେସ୍‌ରେ ରହି ଆଇ.ଏ. ପଢ଼ିବାର ସ୍ଥିର କଲି । ରେଭେନ୍ସା କଲେଜ ସେତେବେଳକୁ ତାର ବର୍ତ୍ତମାନ ସ୍ଥାନକୁ ଉଠି ଯାଇଥାଏ । କାଠଗଡ଼ା ସାହିରୁ ଚାଲିକରି ସେଠାକୁ ଯିବାକୁ ହୁଏ ।

ନାମ ଲେଖାଇଲା ବେଳେ ଶ୍ୱଶୁର କିଛି ଅର୍ଥ ସାହାଯ୍ୟ ଦେଇଥିଲେ, ମାତ୍ର ତା ପରେ ଖର୍ଚ୍ଚ ତୁଲାଇବା ମୋ ପକ୍ଷରେ କଷ୍ଟକର ହୋଇପଡ଼ିଲା । ଦ୍ୱିତୀୟ ବର୍ଷ ଅବଶ୍ୟ କଲେଜ 'ସୋସିଅଲ୍ ସର୍ଭିସ୍ ଗିଲ୍‌ଡ୍'ରୁ ମାସିକ ସ୍ୱଲ୍ପ ଟଙ୍କା ଖଣ୍ଡେ ସାହାଯ୍ୟ ମିଳିଲା । ପୂଜ୍ୟ ଅଧ୍ୟାପକ ରତ୍ନାକର ପତି ମୋତେ ଏ ଦିଗରେ ଖୁବ୍ ସାହାଯ୍ୟ କରିଥିଲେ । ପାଠ୍ୟପୁସ୍ତକ କିଛି କିଣିପାରିଲି ନାହିଁ । ସହପାଠୀମାନଙ୍କଠାରୁ ବହି ମାଗି ଆଣି କାମ ଚଳାଇଲି । ଦୁଇବେଳା ଟିଉସନ କରିବାକୁ ପଡୁଥାଏ । ଗୋଟିଏ ଟିଉସନରୁ ମାସିକ ପ୍ରାୟ ଛଅ ସାତ ଟଙ୍କା ମିଳେ । ଏହିପରି ବହୁ କଷ୍ଟରେ ଆଇ.ଏ. ଦୁଇ ବର୍ଷ କାଟିବାକୁ ହେଲା ।

ମୋର ପୂର୍ବତନ ବନ୍ଧୁ କୃଷ୍ଣଚନ୍ଦ୍ର ପ୍ରଧାନ ସେତେବେଳେ କଂଗ୍ରେସ କାମ ଛାଡ଼ି ପୁସ୍ତକ ବ୍ୟବସାୟ କରୁଥାନ୍ତି । ସେ ମୋଠାରୁ ମଧୁସୂଦନ ରାଓଙ୍କ 'ବାଳବୋଧ' ଓ 'ସାହିତ୍ୟ ପ୍ରସଙ୍ଗ'ର ଦୁଇଖଣ୍ଡ ଟୀକାବହି ଲେଖାଇ ନେଇ ମୋତେ ଏକଶହ ଟଙ୍କା ଦେଇଥିଲେ । ସେଥିରେ ମୁଁ ଖଣ୍ଡେ ହରକ୍ୟୁଲସ୍ ସାଇକେଲ କିଣିଲି । ତେଣୁ କଲେଜକୁ ଯିବା ଆସିବାରେ ଟିକିଏ ସୁବିଧା ହେଲା ।

ମୋର ଅତୀତ ଜୀବନ କଥା ଲେଖିଲାବେଳେ, ବିଶେଷତଃ 'ସାହିତ୍ୟ ପ୍ରସଙ୍ଗ ଟୀକା' ଓ ସାଇକେଲ କିଣା ବିଷୟ ଉଲ୍ଲେଖ କଲାବେଳେ ମୋର ପିତାମହ (ବାପା) ବୃନ୍ଦାବନ ନନ୍ଦଙ୍କ କଥା ମନେ ପଡ଼ୁଛି । ମୁଁ ଭାବୁଛି, ତାଙ୍କ ବିଷୟରେ ଏଠାରେ ଦୁଇପଦ ନ କହିଲେ ମୋର ଆତ୍ମଜୀବନୀ ଅପୂର୍ଣ୍ଣ ରହିଯିବ । ବାପାଙ୍କ ବିଷୟବୁଦ୍ଧି, ଏବଂ କର୍ମଦକ୍ଷତା ଅସାଧାରଣ ଥିଲା । ତାଙ୍କର ଉଦ୍ୟମ ଫଳରେ ଆମର ପୈତୃକ ବିଭବ ଯଥେଷ୍ଟ ବୃଦ୍ଧି ପାଇଥିଲା । ସେ କେତେବେଳେ ଆଳସ୍ୟରେ କାଳକ୍ଷେପଣ କରୁ ନ ଥିଲେ । କାହାସଙ୍ଗେ କଥାବାର୍ତ୍ତା କରୁଥିଲାବେଳେ ମଧ୍ୟ ତାଙ୍କର ହାତ ନିଶ୍ଚେଷ୍ଟ

ରହୁ ନ ଥିଲା; ହୁଏ ତ ବଗିଚାରୁ ଗୋଡ଼ି ବାଛୁ ଅଥବା ଲୁଆକାତରେ ଘୁଅ କାଟି ସେ ସେହିତକ ସମୟର ପୂର୍ଣ୍ଣ ସଦ୍‌ବ୍ୟବହାର କରୁଥିଲେ ।

ବିଲବାଡ଼ି ଓ ଗୃହବାସ କାର୍ଯ୍ୟରେ ଗ୍ରାମର କୌଣସି କୃଷୀ ତାଙ୍କର ସମକକ୍ଷ ନ ଥିଲେ । ମୌଜାର ପ୍ରତ୍ୟେକ ଜମିର ଆକାର ପ୍ରକାର ସେ ଏପରି ମନେ ରଖିଥିଲେ ଯେ ଭୂଇଁଉପରେ ନଖ ସାହାଯ୍ୟରେ ଗାର ଟାଣି ସେ ଚକଗୁଡ଼ିକର ନକ୍‌ସା ଅଙ୍କି ଦେଉଥିଲେ । କେବଳ ଆମ ଗ୍ରାମରେ ନୁହେଁ, ଅନ୍ୟାନ୍ୟ ପଡ଼ୋଶୀ ଗ୍ରାମର ଲୋକମାନେ ମଧ୍ୟ ହାକିମଭରେ ତାଙ୍କର ପରାମର୍ଶ ନେଉଥିଲେ । ତେଣୁ ପ୍ରାୟ ଅଧିକାଂଶ ସମୟରେ ସେ କେତେଜଣ ପାର୍ଶ୍ୱଚରଙ୍କ ଦ୍ୱାରା ପରିବେଷ୍ଟିତ ହୋଇ ରହୁଥିଲେ ।

ନିଜର ବଡ଼ିମା ନିଜେ ବଖାଣିବା ଶୋଭନୀୟ ନୁହେଁ; ଏହା ଗର୍ବ ବା ଅହମିକା ନାମରେ ପରିଗଣିତ ହୁଏ । କିନ୍ତୁ 'କହି ଜାଣିଲେ କଥା ସୁନ୍ଦର' ଏବଂ 'ବାନ୍ଧି ଜାଣିଲେ ମଥା ସୁନ୍ଦର' । ବାପାଙ୍କୁ ଏହି କଥାଟି ବେଶ୍ ଜଣା ଥିଲା । ସେ ଏପରି କୌଶଳରେ ନିଜର ବକ୍ତବ୍ୟ ପରିବେଷଣ କରୁଥିଲେ ଯେ ସରଳମତି ଗାଉଁଲି ଲୋକେ ତାଙ୍କର ପ୍ରଚ୍ଛନ୍ନ ଉଦ୍ଦେଶ୍ୟ ବୁଝି ନ ପାରି ତାଙ୍କ କଥାଗୁଡ଼ିକରେ ସମ୍ପୂର୍ଣ୍ଣରୂପେ ଭୁଲି ଯାଉଥିଲେ ।

ମୁଁ କଲେଜରେ ପଢୁଥିବାରୁ ବାପାଙ୍କର ଆନନ୍ଦର ସୀମା ନ ଥିଲା । ତାଙ୍କର ଧାରଣା ଥିଲା ଯେ କଲେଜରେ ପଢ଼ି ବି.ଏ. ପାସ୍ କଲେ ନିଶ୍ଚୟ ଦପୋଟି ଚାକିରି ମିଳିବ । ସେତେବେଳେ ଆମ ଗ୍ରାମରୁ ଦୁଇ ତିନିଜଣ ମାତ୍ର କଲେଜରେ ପଢ଼ୁଥିଲୁ । କିନ୍ତୁ ମୋ ପରି କେହି ବହି ଲେଖି ଛପାଇ ନ ଥିଲେ କି ସାଇକେଲ କିଣି ନ ଥିଲେ । ଏ ବିଷୟ ଲୋକମାନଙ୍କ ଆଗରେ କହି ଆତ୍ମସନ୍ତୋଷ ଲାଭ କରିବା ଉଦ୍ଦେଶ୍ୟରେ ବାପା ଖଣ୍ଡିଏ 'ସାହିତ୍ୟପ୍ରସଙ୍ଗ ଟୀକା' ମୋ ପାଖରୁ ନେଇ ନିଜ ବସ୍ତାନି ଭିତରେ ଯତ୍ନରେ ସାଇତି ରଖିଥିଲେ, କିନ୍ତୁ ସାଇକେଲଟିକୁ ତ ଆଉ ସେପରି ରଖି ପାରିବେ ନାହିଁ । ସେଥିପାଇଁ ସେ କପରି ଚତୁରତାର ସହ ସେ ପ୍ରସଙ୍ଗ ଉତ୍ଥାପନ କରୁଥିଲେ, ତାହା ମୁଁ ଭାଇନାଙ୍କ ପାଖରୁ ଶୁଣିଛି ।

ନଖରା-ମାଧବ ସଡ଼କ କଡ଼ରେ ସେ ଗୋଟିଏ ବଡ଼ ତେଜରାତି ଦୋକାନ କରି ସେହିଠାରେ ରହୁଥାନ୍ତି । ଦିନେ ମୁଁ ସାଇକେଲରେ ବସି ରାସ୍ତାରେ ଯାଉଥିଲି । ବାପାଙ୍କ ତୀକ୍ଷ୍ଣ ଦୃଷ୍ଟି ମୋ ଉପରେ ପଡ଼ିଲା । ସଙ୍ଗେ ସଙ୍ଗେ ସେ ଚାକରକୁ ଡାକ-ପକାଇ କହିଲେ, "ଆରେ ନଟିଆ, ଦେଖିଲୁ ସାଇକେଲରେ ସେ ଉପ୍ରେସର ବାବୁ (ଓଭରସିଅର) ଯାଉଛନ୍ତି କି ?" ନଟିଆ ଦେଖିଆସି କହିଲା, "ହେମବାବୁ ଯାଉଛନ୍ତି ।"

ଦୋକାନ ପିଣ୍ଡାରେ ପାଞ୍ଚଖଣ୍ଡି ଗାଁର ଲୋକ ବସିଛନ୍ତି । ବଙ୍କାପନ ପାଇଁ ଏ ମାହେନ୍ଦ୍ର ବେଳା । ବାପା ସଙ୍ଗେ ସଙ୍ଗେ କହିଲେ, "ଓଁ, ଆମ ହେମ ଯାଉଛି ।

ସେ ଆମ ମଟ୍ରିଆଁ ନାତ ନୁହେଁ କି ? ଘଣ୍ଟାକର ସେ ଏଇଲବେ ମୁକାମ ସହରରେ ପହଞ୍ଚିଯିବ ।"

କେହି ଜଣେ ହୁଏତ ଟିପ୍ପଣୀ ଦେଲା, "ନାତିଙ୍କ ପାଇଁ ମକଦ୍ଦମ ସାଇକେଲ ଖଣ୍ଡେ କିଣିଦେଇଛନ୍ତି ଆଜ୍ଞାନ୍ତେ । କେତେ ପଡ଼ିଲା, ଆଜ୍ଞା ?"

"ଛଅଷ୍ଟି ସତାବନ ଟଙ୍କା ଆଠଣା । (ପ୍ରକୃତରେ ୭୫ ଟଙ୍କାକୁ ମୁଁ ସେ ସାଇକେଲଟି କିଣିଥିଲି ।) ମୁଁ, କିନ୍ତୁ ଗୋଟିଏ ପଇସା ଦେଇନାହିଁ ।"

"ତେବେ ?" ଶ୍ରୋତାମାନେ ଜିଜ୍ଞାସୁ ନେତ୍ରରେ ବାପାଙ୍କ ମୁହଁକୁ ଅନାଇ ରହନ୍ତି । ଏହି ସୁଯୋଗରେ ବାପାଙ୍କର ବସ୍ତାନି ଫିଟେ । ଆଖିରେ ଚଷମା ଲଗାଇ କମ୍ପିତ ହସ୍ତରେ ବହିଖଣ୍ଡିକ ଧରି ପଢ଼ିବାକୁ ଆରମ୍ଭ କରନ୍ତି—

"ସାହିତ୍ୟ ପ୍ରସଙ୍ଗର ଟୀକା—ପଣ୍ଡିତ ଶ୍ରୀ ରାମକୃଷ୍ଣ ନନ୍ଦ ପ୍ରଣୀତ—ପ୍ରଥମ ସଂସ୍କରଣ—ପ୍ରକାଶକ କଟକ ଟ୍ରେଡିଂ କମ୍ପାନୀ, ବାଲୁବଜାର, କଟକ—ମୂଲ୍ୟ ଆଠଅଣା ମାତ୍ର ।"

ତା'ପରେ ମଲାଟ ପୃଷ୍ଠାଟିକୁ ଓଲଟାଇ ପୁଣି ପଢ଼ନ୍ତି—"ମନୁଷ୍ୟର ଧର୍ମବୃଦ୍ଧି—ଧର୍ମରେ ବୁଦ୍ଧି ଧର୍ମବୁଦ୍ଧି, ହିତାହିତ ବିବେଚନା କରିବାର ଶକ୍ତି—ଟୀକାକାର ତତ୍ପୁରୁଷ···ଦର୍ପଣ ବାଡ଼ପତ୍ରି ବିସ୍ତୋଲ ଭାବରେ ସବୁ ବୁଝାଇ ଲେଖିଦେଇଛୁ ··· ଅନ୍ଧ ବି ପଢ଼ି ବୁଝିଯିବ ।" ବ୍ୟାକରଣର ସନ୍ଧିବିସର୍ଗ ଜାଣି ନ ଥିବା ସାହୁ, ପଧାନ ଓ ସ୍ୱାଇଁମାନେ ବିସ୍ମୟବିସ୍ଫାରିତ ନେତ୍ରରେ କେବଳ ଚାହିଁ ରହିଥାନ୍ତି ବାପାଙ୍କ ମୁହଁକୁ ।

ବହିଟିକୁ ବସ୍ତାନି ଭିତରେ ରଖି ଦେଉଁ ଦେଉଁ ବାପା କହନ୍ତି, "ଏଇ ବହି ଖଣ୍ଡିକ ଲେଖି ସେ ଯେଉଁ ଟଙ୍କା ପାଇଥିଲି, ସେଇଥିରେ ସାଇକେଲ କିଣିଛୁ । ତାର ଏଇଲବେ ଖୁବ୍ ସରସ ପଢ଼ା । କଲେଜର ସାହାବ ତା ପିଠିରେ ହାତ ମାରି କହିଛନ୍ତି ପଢ଼ା—ତତେ ଡିପୋଟି କରିଦେବି ।" ଇତ୍ୟାଦି ଇତ୍ୟାଦି ।

'ସାହିତ୍ୟପ୍ରସଙ୍ଗର ଟୀକା' କି ଶ୍ରେଣୀର ବହି, ହର୍କ୍ୟୁଲସ୍ ସାଇକେଲର ଦାମ୍ କେତେ, ଡିପୋଟି ହୁକିମ କପରି ମିଳେ—ସେ ବିଷୟରେ ଯେଉଁମାନେ ସମ୍ପୂର୍ଣ୍ଣ ଅନଭିଜ୍ଞ, ସେମାନେ ବାପାଙ୍କ କଥାର ସତ୍ୟତାରେ ତିଳେମାତ୍ର ଅବିଶ୍ୱାସ କରନ୍ତି ନାହିଁ । ବିଜ୍ଞାପନର ଉଦ୍ଦେଶ୍ୟ ଏହିପରି ପୂର୍ଣ୍ଣମାତ୍ରାରେ ସାଧିତ ହୁଏ ।

ବାପାଙ୍କ କଥା କହି ବସିଲେ ବହି ପୂରିଯିବ । ବର୍ତ୍ତମାନ ମୋ କଲେଜ ଜୀବନକୁ ଫେରିଆସେଁ । ଆଇ.ଏ. ଟେଷ୍ଟ ପରୀକ୍ଷା ଦେଇ ସାରି ଗୋଟିଏ ସ୍ୱତନ୍ତ୍ର ବସାରେ ରହି ଶେଷ ପରୀକ୍ଷା ପାଇଁ ପ୍ରସ୍ତୁତ ହେଲି । ହାତରେ ରୋଷେଇ କରି ଖାଏ ଏବଂ ଅବଶିଷ୍ଟ ସମୟରେ ପଢ଼ାପଢ଼ି କରେ । ଏହିଠାରେ ଥିଲାବେଳେ ଥରେ ଅଧ୍ୟାପକ

ବିପିନବିହାରୀ ରାୟ ମୋତେ ଡକାଇ କହିଲେ, "କଟକର ଟିକାଏତ୍ ଶୈଳେନ୍ଦ୍ର-ନାରାୟଣଙ୍କ କୋଠିରେ ରହି ପଢ଼ାଶୁଣା କରିବ କି ? ଶୁଣିଛୁ ତୁମେ ଅସୁବିଧାରେ ରହିଛ । ସେଠାରେ ରହିଲେ ଟିକାଏତ୍‌ଙ୍କର ମଧ୍ୟ ପଢ଼ାପଢ଼ିରେ ଟିକିଏ ସୁବିଧା ହୁଅନ୍ତା । ଶିଶରାବାବୁ ଏବଂ ମୁଁ ସେଠାକୁ ଯାଉଛୁ । ତୁମର ଯଦି କିଛି ବୁଝିବାର ଥାଏ, ଆମଠାରୁ ବୁଝିନିଅନ୍ତୁ ।" ଏ ବିଷୟରେ ବିଚାରିବି କହିବି ବୋଲି ଚିନ୍ତାବିନ ସମୟ ମାଗି ବସାକୁ ଆସିଲି ।

ଘରେ ଆସି ଭାବିଲି ଟିକାଏତ୍‌ଙ୍କର ଏବଂ ମୋର ପାଠପଢ଼ାର ଉଦ୍ଦେଶ୍ୟ ଭିନ୍ନ । ତାଙ୍କ କୋଠିରେ ରହିଲେ କାଳେ ପଢ଼ାପଢ଼ି କରିବାକୁ ଯଥେଷ୍ଟ ସମୟ ପାଇବି ନାହିଁ, ଏହି ଆଶଙ୍କା କରି ବିପିନବାବୁଙ୍କୁ ବିନୀତ ଭାବରେ ମୋର ଅସମ୍ମତି ଜଣାଇ ଦେଲି । ସେ ମୋର ଅସୁବିଧା ହୃଦୟଙ୍ଗମ କରି ମୋତେ ସେ ଦିଗରେ ଆଉ ବଳାଇଲେ ନାହିଁ ।

ଆଇ.ଏ. ପରୀକ୍ଷା ଦେଇ ସେହି ବସାରେ ଏକୁଟିଆ ରହିଥାଏ । ମୋ ବସାକୁ ଲାଗି Star of Utkal ପ୍ରେସ୍ ଓ ଅଫିସ୍ । ରାଜକୃଷ୍ଣବାବୁ ପରିଚାଳକ । ସେଇ ପତ୍ରିକାରେ ସର୍ବପ୍ରଥମେ ଆମ ପରୀକ୍ଷାଫଳ ବାହାରିଲା । ମନେ ନାହିଁ କିଏ ଜଣେ ସହପାଠୀ ଦାଣ୍ଡ କବାଟରେ ଆଘାତ କଲେ । ମୁଁ ଦ୍ଵାର ଖୋଲିବାକୁ ଆସିବାରୁ ମୋତେ କହିଲେ, "ପରୀକ୍ଷାଫଳ ବାହାରିଲାଣି, ତୁମେ ଏତେବେଳେ ଘରଭିତରେ ପଶିଛ ! ଜାଣିଲଣି ତୁମ result ?" ମୁଁ 'ନାହିଁ' କରିବାରୁ ସେ କହିଲେ, "ତୁମେ ଫାଷ୍ଟ୍ ଡିଭିଜନ ମାରିଦେଇଛ ।"

ମୁଁ ଆନନ୍ଦରେ ବିହ୍ଵଳ ହୋଇ ତାଙ୍କ କଥାର ସତ୍ୟତା ଜାଣିବା ପାଇଁ ପ୍ରେସ୍‌କୁ ଗଲି । ବହୁତ ପିଲା ବାହାରେ ଅପେକ୍ଷା କରି ରହିଥାନ୍ତି । ରାଜକୃଷ୍ଣବାବୁ ମୋତେ କାନ୍ଥ ଭିତରକୁ ଛାଡ଼ିଦେଲେ । ପାସ୍ ତାଲିକାରୁ ଦେଖିଲି, ମୁଁ ପ୍ରଥମ ଶ୍ରେଣୀରେ ପାସ୍ କରିଛି, ବିଶ୍ବବିଦ୍ୟାଳୟରେ ପଞ୍ଚମ ଓ ଆମ କଲେଜରେ ତୃତୀୟ ସ୍ଥାନ ଅଧିକାର କରିଛି । ପ୍ରଥମ ସ୍ଥାନ ପାଇଥାନ୍ତି ଶ୍ରୀ ପ୍ରାଣନାଥ ମହାନ୍ତି ( ପରେ ଆଇ.ଏ.ଏସ୍. ) ଏବଂ ଦ୍ଵିତୀୟ ହୋଇଥାନ୍ତି ଅଧ୍ୟାପକ ଗୋପାଳଚନ୍ଦ୍ର ଗାଙ୍ଗୁଲିଙ୍କ ପୁଅ ନିଖିଳଚନ୍ଦ୍ର । ନିଖିଲ ଏଠାରେ ନ ପଢ଼ି କଲିକତା ଚାଲିଗଲେ ବି. ଏ. ପଢ଼ିବା ପାଇଁ, ତେଣୁ ମୁଁ ସହଜରେ ଗୋଟିଏ କୋଡ଼ିଏ ଟଙ୍କିଆ ସରକାରୀ ବୃତ୍ତି ପାଇଗଲି ।

ଅଧ୍ୟବସାୟ କଦାପି ବ୍ୟର୍ଥ ହୁଏ ନାହିଁ । ପରୀକ୍ଷାର ଫଳ ଲାଗି ମନେ ମନେ ଭଗବାନଙ୍କୁ ଅଶେଷ ଧନ୍ୟବାଦ ଦେଲି । ବି.ଏ. ପଢ଼ିବାପାଇଁ ଅନ୍ତତଃ ଗୋଟିଏ ସାହାଯ୍ୟ ମିଳିଗଲା । ଆଉ ଯାହା ମାସିକ ପନ୍ଦର କୋଡ଼ିଏ ଟଙ୍କା ନିଅଣ୍ଟ ପଡ଼ିବ, ଟିଉସନ ଦ୍ଵାରା ଚଳାଇ ନେଇହେବ ।

ଆଇ. ଏ. ରେ **History, Logic, Sanskrit** ନେଇଥିଲି । ବି. ଏ. ରେ ନେଲି **History, Economics, English Honours.** କୋଡ଼ିଏ ଜଣ ଲୋକଙ୍କ ପାଖରେ ଗୋଟିଏ ମେସ୍‌ରେ ରହି ବି. ଏ. ପଢ଼ିଲି ।

ସେତେବେଳେ ରେଭେନ୍‌ସା କଲେଜରେ ସମସ୍ତେ ଥିଲେ ଛାତ୍ର; ଛାତ୍ରୀ କେହି ନ ଥିଲେ । ଆମର ସମୟରେ ପ୍ରଥମ ଛାତ୍ରୀ କଲେଜରେ ନାମ ଲେଖାଇଲେ । ଏ ଷାଠିଏ ବର୍ଷ ଭିତରେ ଅବସ୍ଥା କେତେ ବଦଳିଗଲାଣି !

କିନ୍ତୁ ଗୋଟିଏ କଥା ବଦଳି ନାହିଁ—ଖେଳପଡ଼ିଆରେ ମାଡ଼ପିଟ । ବର୍ତ୍ତମାନ ଯେମିତି କେବେକେବେ ଫୁଟବଲ ଖେଳରେ ମହାଭାରତ ଯୁଦ୍ଧ ଲାଗିଯାଉଛି, ସେତେବେଳେ ବି ସେହିପରି ହେଉଥିଲା । ହ୍ୱାଇଟଲେକ୍ ସାହେବ ଆମର ପ୍ରିନସିପାଲ ଥିଲାବେଳେ ଥରେ କଲେଜ ଓ ମେଡ଼ିକାଲ ପିଲାଙ୍କ ଭିତରେ ଫୁଟବଲ ଖେଳ ହେଉଁ ହେଉଁ ମୁଣ୍ଡ ଫଟାଫଟି ପର୍ଯ୍ୟନ୍ତ ଯାଇଥିଲା । ମନୁଷ୍ୟଙ୍କ ଭିତରେ ଦେବ ଓ ଦାନବ ଉଭୟେ ଅଛନ୍ତି । ସେ କଣ କେବେ ବଦଳିବ ?

ବି. ଏ. ଶ୍ରେଣୀରେ ଥିଲାବେଳେ ***Ravenshavian*** ରେ ଏବଂ 'ସହକାର'ରେ ମୋର କେତେକ ଗଳ୍ପ ଓ କବିତା ପ୍ରକାଶ ପାଇଥିଲା । ଏହି ସମୟରେ ମୋ 'ତୁଳସୀଦାସ' ବହିର ପାଣ୍ଡୁଲିପି ପ୍ରସ୍ତୁତ କରିଥିଲି ଏବଂ ମାଇନର ଶ୍ରେଣୀ ଉପଯୋଗୀ ଇଂରେଜୀ ଟ୍ରାନ୍‌ସ୍‌ଲେସନ ବହି ମଧ୍ୟ ଲେଖିଥିଲି । 'ଉତ୍କଳ ବୁକ୍ କମ୍ପାନୀ'ର ମ୍ୟାନେଜର କୃଷ୍ଣଚନ୍ଦ୍ର ପ୍ରଧାନ ତାହାକୁ ପ୍ରକାଶ କରିଥିଲେ । **Matthew Arnold** ଙ୍କ ***Sohrab and Rustum*** ର ଏକ ପଦ୍ୟାନୁବାଦ କରିଥିଲି ଏତିକିବେଳେ । ମୂଳ ଇଂରାଜୀ ପରି ମୋ ଅନୁବାଦ ମଧ୍ୟ ଅମିତ୍ରାକ୍ଷର ଛନ୍ଦରେ ରଚିତ ହୋଇଥିଲା । ଇଂରାଜୀ :

**The first grey of morning filled the east,**
**And the fog rose out of the Oxus stream ;**

ମୋର ଓଡ଼ିଆ ଅନୁବାଦ :

ପ୍ରାଚୀପଟେ ପ୍ରକାଶିଲା ପ୍ରଭାତର ପ୍ରଥମ ସିନ୍ଦୂର,
ଅକ୍ଷସା ତଟିନୀବକ୍ଷୁ ସ୍ତରେ ସ୍ତରେ ଉଠିଲା କୁହେଳି;

ଆମ ଇଂରାଜୀ ଅଧ୍ୟାପକ ଗିରିଜାବାବୁଙ୍କୁ ଏହି ଖଣ୍ଡକାବ୍ୟଟି ପଢ଼ି ସଂଶୋଧନ କରିଦେବାକୁ ଅନୁରୋଧ କରିଥିଲି, ମାତ୍ର କେତେକ ଅସୁବିଧା ଯୋଗୁ ତାହା ହୋଇପାରି ନ ଥିଲା । ସେ ଲେଖାଟି ଅନେକ ଦିନ ପର୍ଯ୍ୟନ୍ତ ମୋ ପାଖରେ ରହିଥିଲା । ବାରିପଦା ହାଇସ୍କୁଲରେ ଶିକ୍ଷକ ଥିଲାବେଳେ ଥରେ ଗ୍ରୀଷ୍ମଛୁଟିରେ ମୋର ଅନ୍ୟାନ୍ୟ କେତେକ କାଗଜପତ୍ର ସହ ସେ ପାଣ୍ଡୁଲିପିଟି କୁଆଡ଼େ ହଜିଗଲା, ଜାଣିପାରିଲି ନାହିଁ ।

ଛାତ୍ରାବସ୍ଥାରେ ମୁଁ ଖେଳ ବା ବକ୍ତୃତାରେ ସାମୟିକ ଭାଗ ନେଉଥିଲେ ହେଁ କୌଣସିଥିରେ କେବେ ଉତ୍କର୍ଷ ଅର୍ଜନ କରି ପାରି ନ ଥିଲି । ଅର୍ଥାଭାବ ମୋତେ ମଧ୍ୟେ ମଧ୍ୟେ ବିବ୍ରତ କରିପକାଉଥିଲା, କିନ୍ତୁ ସବୁବେଳେ ଶେଷ ମୁହୂର୍ତ୍ତରେ ଭଗବାନ ମୋର ଅଭାବ ପୂରଣ କରି ଦେଉଥିଲେ । ବି. ଏ. ଶ୍ରେଣୀରେ ଦୁଇ ତିନି ଖଣ୍ଡ ଶ୍ରେଷ୍ଠ ଇଂରାଜୀ ବହିଛଡ଼ା ଆଉ କିଛି କିଣି ପାରି ନ ଥିଲି । ଥରେ ନିମାଇବାବୁ ( ସୁପରିଚିତ ପୁସ୍ତକପ୍ରଣେତା ଓ ସଙ୍କଳକ ) ମୋତେ ରାସ୍ତାରେ ଖାଲି ଗୋଡ଼ରେ ଚାଲୁଥିବାର ଦେଖି ଆଶ୍ଚର୍ଯ୍ୟ ହୋଇ ଯାଇଥିଲେ । ଏପରି ଅବସ୍ଥାରେ ଆଉ ମଧ୍ୟ ଘରକୁ ସାମୟିକ କିଛି କିଛି ସାହାଯ୍ୟ ଦେଉଥିଲି । ସାନ ଭଉଣୀ ପଦ୍ମାର ବିଭାଘର ପାଇଁ ମୋତେ ପ୍ରାୟ ଏକଶତ ଟଙ୍କା ଦେବାକୁ ପଡ଼ିଥିଲା ।

ଆମର କିଛି ଜମିଦାରୀ, ମକଦ୍ଦମୀ ଓ ବିଷୟବୃତ୍ତି ଥିଲା ବୋଲି ପୂର୍ବରୁ କହିଛି । ଏପରି ସ୍ଥଳେ ଘରୁ ସାହାଯ୍ୟ ନ ଆଣି ମୁଁ କାହିଁକି ଓଲଟି ଘରକୁ ପାଇଁ ସାମୟିକ ଟଙ୍କା ଦେଉଥିଲି, ତାହା ହୁଏତ କେତେକଙ୍କୁ ଆଶ୍ଚର୍ଯ୍ୟ ଲାଗିପାରେ । ସେଥିପାଇଁ ଘରର ତତ୍କାଳୀନ ପରିସ୍ଥିତି ସମ୍ବନ୍ଧରେ ଦୁଇଚାରି କଥା କହିବି ।

ବୃଦ୍ଧ ପିତାମହ ଥିଲେ ଆମ ପରିବାରର ଏକମାତ୍ର ପୋଷଣକର୍ତ୍ତା । ତାଙ୍କର ଅର୍ଥ ଉପାର୍ଜନର ଫନ୍ଦା ଭିତରେ ଥିଲା ଗୋଟିଏ ଦୋକାନ ଏବଂ ଗୃହବାସ । ସେଥିରୁ ସେ ଯାହା ଆୟ କରୁଥିଲେ, ତହିଁରେ ପରିବାରକୁ ଚଳାଇ ଉଦ୍‌ବୃତ୍ତ ଧନରେ ଋଣ ପରିଶୋଧ କରୁଥିଲେ । ତାଙ୍କ ଯୌବନରେ ଜମିଦାରୀ ଓ ମକଦ୍ଦମୀ କିଣିବାରେ ସେ ଗୁଡ଼ିଏ କରଜ କରି ପକାଇଥିଲେ ଏବଂ ତାର ସୁଧ ବହୁତ ବଢ଼ିଯାଇଥିଲା । ନାତି-ମାନଙ୍କ ମୁଣ୍ଡ ଉପରକୁ ସେ ବୋଝ ରଖିଯିବାକୁ ସେ ଚାହୁଁ ନ ଥିଲେ, ତେଣୁ ତାଙ୍କର ସମସ୍ତ ଉପାର୍ଜନ ମୁଖ୍ୟତଃ ସେହି ଉଦ୍ଦେଶ୍ୟରେ ବ୍ୟୟିତ ହେଉଥିଲା ।

ଋଣ ପରିଶୋଧ କଲା ପରେ ସେ ଆମର ଇଷ୍ଟଦେବଙ୍କ ପାଇଁ ଗୋଟିଏ ପକ୍‌କା ଘର ତୋଳାଇବାକୁ ମନସ୍ଥ କଲେ । କେବଳ ଗୃହବାସର ଆୟରୁ ଗ୍ରାମାଞ୍ଚଳରେ ଗୋଟିଏ କୋଠାଘର ତୋଳିବା ଏଡ଼େ ସହଜ ନ ଥିଲା । ସେ କାଳରେ ଟଙ୍କାରେ ଧାନ ମିଳୁଥିଲା ଆଠ ଗୌଣୀ ଅର୍ଥାତ୍ ପ୍ରାୟ ୭୦ କଲେ, ନଡ଼ିଆ କଡ଼ାକୁ ଚାରିପଇସା ବା ଛଅ ପଇସା । ଏକେ ତ ପିତାଙ୍କର ଅକାଳ ମୃତ୍ୟୁ ଯୋଗୁ ଆମ୍ଭମାନଙ୍କର ଭରଣ-ପୋଷଣ ଦାୟିତ୍ୱ ତାଙ୍କ ଉପରେ ପଡ଼ିଛି, ସେଥିରେ ପୁଣି ତାଙ୍କ ଜୀବନର ଶେଷ ଅଭିଳାଷ ପୂରଣ ପଥରେ ଅନ୍ତରାୟ ସୃଷ୍ଟି କରି ମୁଁ ପ୍ରତି ମାସରେ ତାଙ୍କୁ ଅର୍ଥ ସାହାଯ୍ୟ ମାଗିବି, ଏହା ମୁଁ ପସନ୍ଦ କରୁ ନ ଥିଲି ।

ଚାହୁଁ ଚାହୁଁ ଦୁଇଟି ବର୍ଷ କଟିଗଲା । ବି. ଏ. ପରୀକ୍ଷା ଦେଲି । ଆମର ଇଂରାଜୀ ଅନର୍ସ ପ୍ରଶ୍ନପତ୍ରରେ ଏପରି ଗୋଟିଏ ପ୍ରବନ୍ଧ ଲେଖିବାକୁ ପଡ଼ିଥିଲା, ଯାହାକୁ

ଆମ କଲେଜରେ କୌଣସି ଗ୍ରନ୍ଥ ସେତେବେଳେ ବୁଝି ପାରିଲୁ ନାହିଁ । ବର୍ତ୍ତମାନ ଶୁଣିଲେ ଅବଶ୍ୟ ଆଶ୍ଚର୍ଯ୍ୟ ଲାଗୁଛି । ବିଷୟଟି ଥିଲା—**Broadcasting in India.** ରେଡ଼ିଓ ଆଜିକାଲି ଘରେ ଘରେ, କିନ୍ତୁ ସେତେବେଳେ ଆମେ ରେଡ଼ିଓ ଦେଖି ନ ଥିଲୁ କି **Broadcasting** ଶବ୍ଦର ଅର୍ଥ ବୁଝି ନ ଥିଲୁ ! ଆଉ ସେ ବିଷୟରେ ପ୍ରବନ୍ଧ ଲେଖିଥାନ୍ତୁ କଣ ?

ବି.ଏ. ପରୀକ୍ଷା ଦେଇ ଗ୍ରାମକୁ ଗଲି । ଆମ ମୌଜାରେ ସେତେବେଳେ ବନ୍ଦୋବସ୍ତ କ୍ୟାମ୍ପ ପଡ଼ିଥାଏ । ଜଣେ ବିହାରୀ ଡେପୋଟି ଥାନ୍ତି ସେଟଲ୍‌ମେଣ୍ଟ ଅଫିସର । ତାଙ୍କ ପାଖକୁ ପାଟନାରୁ ପ୍ରକାଶ ପାଉଥିବା **'Searchlight'** ପତ୍ରିକା ଆସେ । ମୁଁ ପରୀକ୍ଷା ଦେଇଛି ବୋଲି ସେ ଜାଣିଥାନ୍ତି । ଦିନେ ରାତ୍ର ପ୍ରାୟ ୮ଟା ବେଳେ ସେ ଚୌକିଦାର ହାତରେ ମୋତେ ଡକାଇ ପଠାଇଲେ । ମୁଁ ପହଞ୍ଚିବା ମାତ୍ରେ ମୋ ହାତକୁ ଖବରକାଗଜ ଖଣ୍ଡି ବଢ଼ାଇ ଦେଇ କହିଲେ, "ଆପଣଙ୍କ ପରୀକ୍ଷାଫଳ ବାହାରିଛି, ଦେଖନ୍ତୁ ।" ମୁଁ ତାଙ୍କ ହାତରୁ କାଗଜଟି ନେଇ ଦେଖିଲି ଯେ ଇଂରାଜି ଅନର୍ସରେ ପାସ୍ କରିଥିବା ମୋଟ ଏଗାର ଜଣଙ୍କ ମଧ୍ୟରୁ ରେଭେନ୍‌ସା କଲେଜରୁ କେବଳ ମାତ୍ର ଜଣେ ପାସ୍ କରିଛି ଏବଂ ସେ ଜଣକ ମୁଁ । ମନ ଆନନ୍ଦରେ ନାଚି ଉଠିଲା । ଭଗବାନ ନାହାନ୍ତି ବୋଲି କିଏ କହେ ? ପଦେ ପଦେ ସେ ତ ମୋତେ ସାହାଯ୍ୟ କରୁଛନ୍ତି । ଏବେ ଯାଇ ବାପାଙ୍କୁ ଖବରଟା ଦେବାକୁ ହେବ । ଡେପୋଟିବାବୁଙ୍କୁ ଧନ୍ୟବାଦ ଜଣାଇ ଘରକୁ ଫେରିଲି ।

## ଏମ. ଏ. ଶ୍ରେଣୀରେ ଯୋଗଦାନ (୧୯୨୯-୩୦)

ବି.ଏ. ତ ପାସ୍ କଲି, ତା'ପରେ କଣ କରିବି ? ଆଉ ପଢ଼ିବି ନା ଚାକିରି ଖୋଜିବି ? —ଏ ପ୍ରଶ୍ନ ମନକୁ ଆନ୍ଦୋଳିତ କଲା । ବୃଦ୍ଧ ବାପା ମୋ ସାହାଯ୍ୟକୁ ଅପେକ୍ଷା କରି ରହିଛନ୍ତି, ଅନ୍ୟ ଘର ଲୋକଙ୍କର କୌଣସି ଉପାର୍ଜନ ନାହିଁ । ଡେପୋଟି, ସବ୍‌ଡେପୋଟି ଚାକିରି ପାଇଁ ଦରଖାସ୍ତ କରିବାକୁ କେତେକ ବନ୍ଧୁ ପରାମର୍ଶ ଦେଲେ । ସେତେବେଳେ ଯେଉଁମାନେ ବି.ଏ. ବା ଏମ୍.ଏ. ପରୀକ୍ଷାରେ କୃତିତ୍ୱ ଅର୍ଜନ କରୁଥାନ୍ତି କିମ୍ବା ଯେଉଁମାନଙ୍କର ମୁରବିବଳ ଥାଏ, ସେହିମାନଙ୍କୁ ସାଧାରଣତଃ ଉକ୍ତ ଚାକିରି ମିଳୁଥିଲା । ପ୍ରଥମେ ଜିଲ୍ଲାସ୍ତରରେ, ତା ପରେ ଡିଭିଜନ ସ୍ତରରେ ଏବଂ ଶେଷରେ ପ୍ରଦେଶ ସ୍ତରରେ 'ଇଣ୍ଟରଭିଉ' ଓ ବଛାବଛି ହେବା ପରେ ନିଯୁକ୍ତି ଦିଆଯାଉଥିଲା । ମୋ ସହପାଠୀମାନଙ୍କ ମଧ୍ୟରୁ କେତେକ ମଧ୍ୟ ଦରଖାସ୍ତ କରୁଥାନ୍ତି । କିନ୍ତୁ ମୁଁ ଯେ ଇଂରେଜ ସରକାର ଆଖିରେ ଜଣେ ଦାଗୀ ! ଗୁରବର୍ଷ କଂଗ୍ରେସରେ ପଶିଛି, କେତେ ଆଶ୍ରମରେ ଘେର ଦେଇଛି, ସତ୍ୟବାଦୀ ଜାତୀୟ ସ୍କୁଲରେ ପଢ଼ିଛି ଏବଂ ସେ ପର୍ଯ୍ୟନ୍ତ ଖଦଡ଼ ଛାଡ଼ିନାହିଁ ! ସରକାରର ସତର୍କ ପ୍ରହରୀ ପୋଲିସବାଲା କଣ ଏ ଖବର ସବୁ ରଖି ନ ଥିବେ ? ପୁଣି ଯାହା ତାହା ଚାକିରି ନୁହେଁ, ଡେପୋଟି ଚାକିରି !

ଅସମ୍ଭବଂ ହେମମୃଗସ୍ୟ ଜନ୍ମ
ତଥାପି ରାମଃ ଲୁଲୁଭେ ମୃଗାୟ ।

ସୁନାର ମୃଗ କଣ କେଉଁଠି ଅଛନ୍ତି ? ତଥାପି ରାମଚନ୍ଦ୍ରଙ୍କ ପରି ବ୍ୟକ୍ତି ପୁଣି ତ ଲୋଭ କରି ତା ପଛରେ ଗୋଡ଼ାଇଥିଲେ । 'ଆଶା ବୈତରଣୀ ନଦୀ' । କାଳେ ଚାକିରି ଖଣ୍ଡେ ମିଳିଯିବ ପରା ? ସ୍ଥିର କଲି, ଦରଖାସ୍ତ କରିବି ।

ମାତ୍ର ସେ ପର୍ଯ୍ୟନ୍ତ ତ ଆଉ ଘରେ ବସି ରହିବା ଠିକ୍ ହେବନାହିଁ, ପଢ଼ିବାକୁ ହେବ । କଟକରେ ସେତେବେଳେ କେବଳ ଇଂରାଜୀରେ ଏମ୍.ଏ. ପଢ଼ିବାର ବ୍ୟବସ୍ଥା ଥାଏ । କିନ୍ତୁ ମୋର ସମ୍ବଳ କାହିଁ ? ବି.ଏ. ଇଂରାଜୀ ପରୀକ୍ଷାରେ ରେଭେନ୍‌ସା କଲେଜର ଫଳ ଭଲ ହୋଇ ନ ଥିବାରୁ କେତେକ ପିଲା ଏମ୍.ଏ ପଢ଼ିବାକୁ ପାଟନା ଚାଲିଯାଉଥାନ୍ତି । ବିଶ୍ୱବିଦ୍ୟାଳୟ ପାଟନାରେ, ଅଧିକାଂଶ ପରୀକ୍ଷକ ବିହାରୀ । ତେଣୁ ପାଟନା କଲେଜର ଫଳ ଭଲ ହେବ, ଏହା ଆଶାକରିବା ସ୍ୱାଭାବିକ । ଆମର ଇଂରାଜୀ ଅଧ୍ୟାପକମାନଙ୍କ ଇଚ୍ଛା ଥାଏ—ମୁଁ କିପରି କଟକ କଲେଜରେ ଏମ୍.ଏ. ପଢ଼େଁ । ଆର୍ଥିକ ଅସୁବିଧା କଥା ସେମାନଙ୍କୁ କହିବାରୁ ମୋର ଦରମା ଛାଡ଼ ପାଇଁ ସେମାନେ ଚେଷ୍ଟା କରିବେ ବୋଲି ଆଶା ଦେଲେ । ମାତ୍ର ଘରର ଅବସ୍ଥା ଦୃଷ୍ଟିରୁ ମୋର ଆଉ ଅଧିକ ପଢ଼ିବାକୁ ଇଚ୍ଛା ନ ଥିଲା । କଂଗ୍ରେସରେ ପଶିବାଦିନ-ଠାରୁ ଡିଗ୍ରୀର ମୋହ ଭାଙ୍ଗି ଯାଇଥିଲା । କେବଳ ଚାକିରି ପାଇବା ଲାଗି ଏମ୍.ଏ. କ୍ଲାସରେ ଭର୍ତ୍ତି ହେବା ଆବଶ୍ୟକ ମନେକଲି ଏବଂ ଏମ୍.ଏ. ଓ Law ଉଭୟ ଶ୍ରେଣୀରେ ନାମ ଲେଖାଇଦେଲି ।

ଦୁଇ ତିନି ମାସ ପରେ ଦେଖିଲି, ଏମ୍.ଏ. ଏବଂ Law ଦୁଇଟିଯାକର ଖର୍ଚ୍ଚ ତୁଲାଇବା ମୋ ପକ୍ଷରେ କଷ୍ଟକର । ତେଣୁ ଦ୍ୱିତୀୟଟିକୁ ଛାଡ଼ିଦେଲି । ଏମ୍.ଏ.ରେ ଯଦିଓ ମୋତେ ଫ୍ରି ଷ୍ଟୁଡେଣ୍ଟସିପ୍‌ଟିଏ ମିଳିଲା, ଅନ୍ୟାନ୍ୟ ଖର୍ଚ୍ଚ ପାଇଁ ଟିଉସନର ଆଶ୍ରୟ ନେବାକୁ ହୋଇଥିଲା ।

ତେଲେଙ୍ଗାବଜାରରେ ପଣ୍ଡିତ ଅଙ୍କୁଳ ମିଶ୍ରଙ୍କ ଘର ନିକଟସ୍ଥ ଗୋଟିଏ ମେସ୍‌ରେ ରହି ଏମ୍.ଏ. ପଢ଼ିଲି । ସେଠାରେ ଭଗବାନ ମୋର ଧୈର୍ଯ୍ୟ ଓ ସହନଶୀଳତାର ଚରମ ପରୀକ୍ଷା କଲେ । ଅଭାବ ଅନଟନର ଏତେ ତୀବ୍ରତା ପୂର୍ବରୁ କେବେ ଅନୁଭବ କରି ନ ଥିଲି । ଅନେକଥର ବଜାରରେ ଜଳଖିଆ କରିଛି ବୋଲି କହି ମେସ୍‌ରେ ମିଲ୍ ବନ୍ଦ କରି, ମାତ୍ର ଉପବାସରେ ରାତି କଟାଏ । କେବେ କେବେ ଅବା ଚାରି ଛଅ ପଇସାର ବରା ଗୁଲୁଗୁଲା ଖାଇ ରହିଯାଏ । ମଝିରେ ମଝିରେ ପୁଣି ଘରକୁ ସାହାଯ୍ୟ ଦେବାକୁ ପଡ଼େ । ଟିଉସନ୍ ଟଙ୍କା ଯଥେଷ୍ଟ ହୁଏ ନାହିଁ, ତେଣୁ ବନ୍ଧୁମାନଙ୍କଠାରୁ ବେଳେବେଳେ ଧାର ଆଣିବାକୁ ହୁଏ ।

ଆମ୍ଭେମାନେ ଅଧ୍ୟାପକଙ୍କ ନିକଟରେ ଆପତ୍ତି କଲୁ, ମାତ୍ର ତାହା ଶୁଣା ନ ଯିବାରୁ ସମସ୍ତେ ମିଳି ସ୍ଥିର କଲୁ, ପରୀକ୍ଷା ହଲରେ କେବଳ ପାଞ୍ଚ ମିନିଟ ବସି ଅଲେଖା ଖାତା ଦେଇ ବାହାରି ଆସିବୁ । ପରୀକ୍ଷାର ପ୍ରଥମ ଦିନ ସେଇୟା କଲୁ ଏବଂ ସଙ୍ଗେ ସଙ୍ଗେ ସମସ୍ତେ କଲେଜ ଛାଡ଼ି ବସାକୁ ଚାଲି ଆସିଲୁ ।

ଦୁଇ ତିନି ଘଣ୍ଟା ପରେ ପ୍ରିନ୍‌ସିପାଲ ଟି.ସି. ଅର୍ଗିଲଙ୍କ ସ୍ୱାକ୍ଷରରେ ଖଣ୍ଡିଏ ଚିଠି କଲେଜ ପିଅନ ଆଣି ଦେଇଗଲା । ସେଥିରେ ଲେଖାଥିଲା—ଆଜି ତୁମେ ପରୀକ୍ଷାରେ ମିଳିତ ଭାବରେ ଯାହା କରିଛ, ତାହା ଅତ୍ୟନ୍ତ ଅସନ୍ତୋଷଜନକ । ତୁମର ପ୍ରମୋଶନର ପଥ ସୁଗମ କରିବା ପାଇଁ ପରବର୍ତ୍ତୀ ପରୀକ୍ଷାମାନଙ୍କରେ ଭଲ କରିବାକୁ ମୁଁ ତୁମକୁ ଏତଦ୍ୱାରା ନିର୍ଦ୍ଦେଶ ଦେଉଛି ।

ସନ୍ଧ୍ୟାବେଳେ କାଠଯୋଡ଼ି କୂଳ ବଡ଼ ବୁରୁଜ ଉପରେ ଆମ ସମସ୍ତଙ୍କର ଏକ ମନ୍ତ୍ରଣା ସଭା ବସିଲା । ଆଲୋଚନା ପରେ ସ୍ଥିର ହେଲା, ତା ପରଦିନ ପ୍ରଥମେ ପ୍ରିନ୍‌ସିପାଲଙ୍କୁ ଦେଖା କରି ସମସ୍ତ ବିଷୟ ଜଣାଇ, ତାପରେ ଯାହା କରିବୁ ।

ପରଦିନ କଲେଜକୁ ଯାଇ ଦେଖିଲୁ, ଆମ ପଞ୍ଚମ ବାର୍ଷିକ ଶ୍ରେଣୀର ପିଲାଙ୍କୁ ଅନ୍ୟ ପିଲାମାନଙ୍କ ପାଖରୁ ଅଲଗା କରି ଅଫିସ ପାଖ ଗୋଟିଏ ଛୋଟ ବଖରାରେ ପରୀକ୍ଷାର ବ୍ୟବସ୍ଥା କରାଯାଇଛି ଏବଂ ସେଠାରେ ଆମର ଇଂରାଜି ବିଭାଗର ମୁଖ୍ୟ ଅଧ୍ୟାପକ ବରଦାବାବୁ ଆମକୁ ଅପେକ୍ଷା କରି ଠିଆ ହୋଇଛନ୍ତି । ତାଙ୍କର ଅନୁମତି ନେଇ ପ୍ରିନସିପାଲଙ୍କୁ ଭେଟିଲୁ ଏବଂ ଆମର ଆପତ୍ତି ଜଣାଇଲୁ ; ମାତ୍ର ସେ କହିଲେ, "ତୁମ୍ଭେମାନେ ମେଳି ବାନ୍ଧି କାଲି ଯାହା କରିଛ, ତାହା ସମ୍ପୂର୍ଣ୍ଣ ନିୟମବିରୁଦ୍ଧ । କାହାକୁ କିଛି ପାଠ ଆସିଲା ନାହିଁ, ଏହା କିଏ ବିଶ୍ୱାସ କରାଯାଇପାରେ ? ସେପରି ନ କରି ଯାହାକୁ ଯାହା ଆସୁଛି, ଲେଖ । ଆଗ ପରୀକ୍ଷା ଦିଅ, ପରେ ତୁମର ଆପତ୍ତି ବିଚାର କରାଯିବ ।"

ଶୁଣିଥିଲୁ ପ୍ରିନ୍‌ସିପାଲ ଅର୍ଗିଲ ସାହେବ ପୂର୍ବେ ସାମରିକ ବିଭାଗରେ କୁଆଡ଼େ କାର୍ଯ୍ୟ କରୁଥିଲେ । କୌଣସି ପ୍ରକାର ବିଶୃଙ୍ଖଳାକୁ ବରଦାସ୍ତ କରିବା ଲୋକ ସେ ନୁହନ୍ତି । ମୁଁ ଏ ମେଳିରେ ଯୋଗ ଦେଇଥିବାରୁ ସେ ମୋର ଫ୍ରିଷ୍ଟୁଡେଣ୍ଟସିପ୍ କାଟି ଦେବାର ଧମକ ଦେଲେ । ଯାହା ହେଉ, ତାଙ୍କ ପାଖରୁ ଆସି ପରୀକ୍ଷା ହଲ୍‌କୁ ଯିବା ଭିତରେ ଆମ୍ଭେମାନେ ବିଚାର କରି କର୍ମପନ୍ଥା ସ୍ଥିର କରିନେଲୁ । କଥା ହେଲା ଯେ ଗୋଟିଏ ପୃଷ୍ଠାରୁ କେହି ଅଧିକ ଲେଖିବୁ ନାହିଁ । କିଏ କଣ କଲା କହି ପାରିବ ନାହିଁ, ମୁଁ କଲୁ ତାହାହିଁ କଲି । ପରୀକ୍ଷା ପରେ ନୋଟିସ ବାହାରିଲା, କେତେକ ପତ୍ରରେ ପୁନର୍ବାର ପରୀକ୍ଷା ଦେବାକୁ ହେବ ! ଷଷ୍ଠ ବାର୍ଷିକ ଶ୍ରେଣୀକୁ ଆମ୍ଭମାନଙ୍କର ପ୍ରମୋଶନ ସେ ପର୍ଯ୍ୟନ୍ତ ସ୍ଥଗିତ ରଖାଗଲା ।

* *

ଆମ୍ଭେମାନେ ଅଧ୍ୟାପକଙ୍କ ନିକଟରେ ଆପତ୍ତି କଲୁ, ମାତ୍ର ତାହା ଶୁଣା ନ ଯିବାରୁ ସମସ୍ତେ ମିଳି ସ୍ଥିର କଲୁ, ପରୀକ୍ଷା ହଲରେ କେବଳ ପାଞ୍ଚ ମିନିଟ ବସି ଅଲେଖା ଖାତା ଦେଇ ବାହାରି ଆସିବୁ । ପରୀକ୍ଷାର ପ୍ରଥମ ଦିନ ସେଇଆ କଲୁ ଏବଂ ସଙ୍ଗେ ସଙ୍ଗେ ସମସ୍ତେ କଲେଜ ଛାଡ଼ି ବସାକୁ ଚାଲି ଆସିଲୁ ।

ଦୁଇ ତିନି ଘଣ୍ଟା ପରେ ପ୍ରିନ୍ସିପାଲ ଟି.ସି. ଅର୍ଗିଲଙ୍କ ସ୍ୱାକ୍ଷରରେ ଖଣ୍ଡିଏ ଛୋଟି କଲେଜ ପିଅନ ଆଣି ଦେଇଗଲା । ସେଥିରେ ଲେଖାଥିଲା—ଆଜି ତୁମେ ପରୀକ୍ଷାରେ ମିଳିତ ଭାବରେ ଯାହା କରିଛ, ତାହା ଅତ୍ୟନ୍ତ ଅସନ୍ତୋଷଜନକ । ତୁମର ପ୍ରମୋସନର ପଥ ସୁଗମ କରିବା ପାଇଁ ପରବର୍ତ୍ତୀ ପରୀକ୍ଷାମାନଙ୍କରେ ଭଲ କରିବାକୁ ମୁଁ ତୁମକୁ ଏତଦ୍ୱାରା ନିର୍ଦ୍ଦେଶ ଦେଉଛି ।

ସନ୍ଧ୍ୟାବେଳେ କାଠଯୋଡ଼ି କୂଳ ବଡ଼ ବୁରୁଜ ଉପରେ ଆମ ସମସ୍ତଙ୍କର ଏକ ମନ୍ତ୍ରଣା ସଭା ବସିଲା । ଆଲୋଚନା ପରେ ସ୍ଥିର ହେଲା, ତା ପରଦିନ ପ୍ରଥମେ ପ୍ରିନ୍ସିପାଲଙ୍କୁ ଦେଖା କରି ସମସ୍ତ ବିଷୟ ଜଣାଇ, ତାପରେ ଯାହା କରିବୁ ।

ପରଦିନ କଲେଜକୁ ଯାଇ ଦେଖିଲୁ, ଆମ ପଞ୍ଚମ ବାର୍ଷିକ ଶ୍ରେଣୀର ପିଲାଙ୍କୁ ଅନ୍ୟ ପିଲାମାନଙ୍କ ପାଖରୁ ଅଲଗା କରି ଅଫିସ ପାଖ ଗୋଟିଏ ଛୋଟ ବଖରାରେ ପରୀକ୍ଷାର ବ୍ୟବସ୍ଥା କରାଯାଇଛି ଏବଂ ସେଠାରେ ଆମର ଇଂରାଜୀ ବିଭାଗର ମୁଖ୍ୟ ଅଧ୍ୟାପକ ବରଦାବାବୁ ଆମକୁ ଅପେକ୍ଷା କରି ଠିଆ ହୋଇଛନ୍ତି । ତାଙ୍କର ଅନୁମତି ନେଇ ପ୍ରିନସ୍‌ପାଲଙ୍କୁ ଭେଟିଲୁ ଏବଂ ଆମର ଆପତ୍ତି ଜଣାଇଲୁ ; ମାତ୍ର ସେ କହିଲେ, "ତୁମ୍ଭେମାନେ ମେଳି ବାନ୍ଧି କାଲି ଯାହା କରିଛ, ତାହା ସମ୍ପୂର୍ଣ୍ଣ ନିୟମବିରୁଦ୍ଧ । କାହାକୁ କିଛି ପାଠ ଆସିଲା ନାହିଁ, ଏହା କିଏ ବିଶ୍ୱାସ କରିପାରେ ? ସେପରି ନ କରି ଯାହାକୁ ଯାହା ଆସୁଛି, ଲେଖ । ଆଗ ପରୀକ୍ଷା ଦିଅ, ପରେ ତୁମର ଆପତ୍ତି ବିଚାର କରାଯିବ ।"

ଶୁଣିଥିଲୁ ପ୍ରିନ୍ସିପାଲ ଅର୍ଗିଲ ସାହେବ ପୂର୍ବେ ସାମରିକ ବିଭାଗରେ କାର୍ଯ୍ୟ କରୁଥିଲେ । କୌଣସି ପ୍ରକାର ବିଶୃଙ୍ଖଳାକୁ ବରଦାସ୍ତ କରିବା ଲୋକ ସେ ନୁହନ୍ତି । ମୁଁ ଏ ମେଳିରେ ଯୋଗ ଦେଇଥିବାରୁ ସେ ମୋର ଫ୍ରିଷ୍ଟୁଡେଣ୍ଟସିପ୍ କାଟି ଦେବାର ଧମକ ଦେଲେ । ଯାହା ହେଉ, ତାଙ୍କ ପାଖରୁ ଆସି ପରୀକ୍ଷା ହଲ୍‌କୁ ଯିବା ଭିତରେ ଆମ୍ଭେମାନେ ବିଚାର କରି କର୍ମପନ୍ଥା ସ୍ଥିର କରିନେଲୁ । କଥା ହେଲା ସେ ଗୋଟିଏ ପୃଷ୍ଠାରୁ କେହି ଅଧିକ ଲେଖିବୁ ନାହିଁ । କିଏ କଣ କଲା କହି ପାରିବି ନାହିଁ, ମୁଁ କିନ୍ତୁ ତାହାହିଁ କଲି । ପରୀକ୍ଷା ପରେ ନୋଟିସ ବାହାରିଲା, କେତେକ ପତ୍ରରେ ପୁନର୍ବାର ପରୀକ୍ଷା ଦେବାକୁ ହେବ । ଷଷ୍ଠ ବାର୍ଷିକ ଶ୍ରେଣୀକୁ ଆମ୍ଭମାନଙ୍କର ପ୍ରମୋସନ ସେ ପର୍ଯ୍ୟନ୍ତ ସ୍ଥଗିତ ରଖାଗଲା ।

* *

# କର୍ମଭୂମିକୁ ଯାତ୍ରା—

**ଶିକ୍ଷକତା :**

ବାଙ୍କୀ

ବାଙ୍କିପଦା

ଭଣ୍ଡାରପୁର

ଯାଉଁ ଯାଉଁ ପଥରେ        ମୀନ ନକ୍ର ମକରେ
ମାଗିଲେ ଶରଣ ତୋହର,
ବିସ୍ତାରଣ କଲ୍ଲୋଳ        ଆଦରେ ଦେଲୁ କୋଳ
ସକଳ-ଜୀବ ସୁଖକର,
ବକ୍ଷରେ ବହିଲୁ ତରଣୀ
ମଣ୍ଡିଲୁ ଯତନେ ଧରଣୀ
ଶ୍ୟାମଳ ଦୂର୍ବାଦଳେ        ଫଳ-କୁସୁମ-ଫସଲେ
ଯେଣୁ ତୋ ନାମ ସ୍ୱର୍ଣ୍ଣମଣୀ ।

[ 'ନଦୀପ୍ରତି'— ]



ମୋର ବୋଉ ସ୍ୱର୍ଗୀୟା ଲକ୍ଷ୍ମୀ ଦେବୀ



ମୋର ପୁତ୍ର, ପୁତ୍ରବଧୂ, କନ୍ୟା ଓ ଜାମାତାମାନଙ୍କ ଗହଣରେ ମୁଁ ଏବଂ ମୋର ପତ୍ନୀ ସୌଦାମିନୀ ଦେବୀ

ପ୍ରଥମରୁ ତ ଡିଗ୍ରୀର ଲାଳସା ହରାଇଥିଲି, ବର୍ତ୍ତମାନ ଅର୍ଥାଭାବରେ ନିପୀଡ଼ିତ ହୋଇ ଆଉ ଅଧିକ ପଢ଼ିବା ଦିଗରେ ବୀତସ୍ପୃହ ହୋଇପଡ଼ିଲି । ବନ୍ଧୁ ଓ ଶୁଭେଚ୍ଛୁ-ମାନଙ୍କଠାରୁ ଯେଉଁ ପଚିଶ ଟଙ୍କା ଯାଏ ହାତଉଧାର କରି ପକାଇଥିଲି, ତାହାର ପରିଶୋଧ ଚିନ୍ତା ମୋତେ ଦିନରାତି ଅସ୍ଥିର କଲା । ମନେ ମନେ ଭାବିଲି, "ମୁଁ କେଉଁଦିନ ଏମ୍.ଏ. ପାସ୍ କରି ଚାକିରି କରିବି ବୋଲି ଏମାନଙ୍କ ଟଙ୍କା ସେ ପର୍ଯ୍ୟନ୍ତ ନ ଶୁଝି ଚୁପ୍ ରହିଥିବି ? ନା, ଯେତେ ଶୀଘ୍ର ପାରିବି ଖଣ୍ଡେ ନୌକରି କରି ଆଗ ସେମାନଙ୍କ ଧାର ପରିଶୋଧ କରିବି, ତା ପରେ ଯେଉଁ କଥା ।"

ଖବରକାଗଜ ଦେଖିଣି ଗୋଟିଏ ଚାକିରି ବିଜ୍ଞାପନ ପାଇଲି—ଖୋର୍ଦ୍ଧା ହାଇସ୍କୁଲରେ ଶିକ୍ଷକତା, ମାସିକ ବେତନ ୪୫ ଟଙ୍କା । ମୋର ଶୁଭାକାଂକ୍ଷୀ ଉମାଚରଣବାବୁଙ୍କ ସହାୟତାରେ ପରିଜା ସାହେବଙ୍କଠାରୁ ଖଣ୍ଡିଏ ସର୍ଟିଫିକେଟ ଯୋଗାଡ଼ କଲି । ଅନ୍ୟାନ୍ୟ ସାର୍ଟିଫିକେଟ ସହ ଖଣ୍ଡେ ଦରଖାସ୍ତ ସେଠାକୁ ପଠାଇ ଦେଲି । ଅଳ୍ପଦିନ ଭିତରେ ନିଯୁକ୍ତିପତ୍ର ଆସିଗଲା । କିନ୍ତୁ ସେଥିରେ ଗୋଟିଏ ଅଙ୍କୁଶ ଖଞ୍ଜା ଯାଇଥିଲା । ତିନି ବର୍ଷ ଭିତରେ ଚାକିରି ନ ଛାଡ଼ିବା ପାଇଁ ଚୁକ୍ତିପତ୍ର ଲେଖିଦେବାକୁ ହେବ !

୪୫ ଟଙ୍କିଆ ମାଷ୍ଟରୀ ଚାକିରି ପାଇଁ ତିନିବର୍ଷିଆ ଚୁକ୍ତି ! ଅଭାବରେ ପଡ଼ିଛି ବୋଲି କଣ ନିୟତିର ଏ ଉପହାସକୁ ମୁଣ୍ଡ ପୋତି ସହିନେବି ? ନା, ତା କଦାପି କରିବି ନାହିଁ । ଭାବିଲି, ଉଚ୍ଚପୋଟି ଚାକିରି ଲାଗି ଦରଖାସ୍ତ କରିବାକୁ ମୋର ତ ଆଉ ଗୋଟିଏ ବର୍ଷ ସମୟ ଅଛି । ଏ ଚୁକ୍ତି ଫଳରେ ସବୁ ବାଟ ବନ୍ଦ ହୋଇଯିବ । ଅନ୍ୟ

କଥ ଗଲେ ଯାଇପାରନ୍ତି କିନ୍ତୁ ମୁଁ ଏପରି ଅପଦାର୍ଥ ହୋଇନାହିଁ ଯେ ୪୫ ଟଙ୍କାର ଚାକିରି ଖଣ୍ଡିକ ପାଇଁ ତିନି ବର୍ଷ ମୁଣ୍ଡ ବିକିଦେବି । ଏହି ମର୍ମରେ ଖୋର୍ଦ୍ଧା ହାଇସ୍କୁଲର ମ୍ୟାନେଜିଂ କମିଟି ସେକ୍ରେଟାରୀଙ୍କ ପାଖକୁ ଖଣ୍ଡିଏ ଚିଠି ଲେଖି ପଠାଇ ଦେଲି ।

ଗ୍ରୀଷ୍ମଛୁଟି ଭିତରେ ଶିକ୍ଷକ ଚାକିରି ପାଇଁ ବିଜ୍ଞାପନର ଅଭାବ ନ ଥାଏ । ବାଙ୍କୀ-ଡମପଡ଼ା ହାଇସ୍କୁଲରେ ମାସିକ ୫୫ ଟଙ୍କା ବେତନରେ ନଅ ମାସ ପାଇଁ ଏକ ଅସ୍ଥାୟୀ ଶିକ୍ଷକ ପଦ ଖାଲି ଥିବାର ଖବରକାଗଜରୁ ଦେଖି ସେଠାକୁ ଦରଖାସ୍ତ କଲି । କିଛିଦିନ ଅପେକ୍ଷା କରି କୌଣସି ଉତ୍ତର ନ ପାଇବାରୁ ଦିନେ ମୁଣ୍ଡମୁହାଁଣ ଯାଇ ସେଠାରୁ ବସ୍‌ରେ ବାଙ୍କୀ ଚାଲିଗଲି ।

## ବାଙ୍କୀରେ ଶିକ୍ଷକତା (୧୯୬୦-୬୧)

'ନାବିକ-ଅର୍ଚ୍ଚିତ ଚର୍ଚ୍ଚିକା—
ଦେବୀ ବାଙ୍କି-ଈଶ୍ୱରୀ,
ମହାନଦୀକୂଳେ ଯାହାଙ୍କ
ଅଧିଷ୍ଠାନ-ଶିଖରୀ ।'

ସେହି ମୋକ୍ଷ-ଦାୟିନୀ ଚର୍ଚ୍ଚିକା ଦେବୀଙ୍କ ପୁଣ୍ୟପୀଠ ଦର୍ଶନର ସୁଯୋଗ ମିଳିବ ଭାବି ଆନନ୍ଦିତ ହେଉଥାଏ, କିନ୍ତୁ ଆନନ୍ଦ ଅପେକ୍ଷା ଉତ୍କଣ୍ଠାର ମାତ୍ରା ଥାଏ ଅଧିକ । ମୋ ଜୀବନରେ ବାଙ୍କୀଯାତ୍ରା ଏଇ ପ୍ରଥମ । ମହାନଦୀର ଧାରେ ଧାରେ ବିକ୍ଷିପ୍ତ ଧାନକ୍ଷେତ ଓ ପାହାଡ଼ ଜଙ୍ଗଲ ଅତିକ୍ରମ କରି ଦିନ ପ୍ରାୟ ଚାରିଟାବେଳେ ଆମର ବସ୍ ବାଙ୍କୀରେ ପହଞ୍ଚିଲା । ରାସ୍ତାର ଏକ ପାର୍ଶ୍ୱରେ ହାଇସ୍କୁଲ, ଅନ୍ୟ ପାର୍ଶ୍ୱରେ ହେଡ଼ମାଷ୍ଟର ଶ୍ରୀ ନୃସିଂହଚରଣ କାନୁନ୍‌ଗୋଙ୍କ ବସା । ବସ୍‌ରୁ ଓହ୍ଲାଇ ଦେଖିଲି ସ୍କୁଲଛୁଟିପରେ ପିଲମାନେ ଘରକୁ ଫେରୁଛନ୍ତି । ତେଣୁ ଆଉ ସ୍କୁଲକୁ ନ ଯାଇ ହେଡ଼ମାଷ୍ଟରଙ୍କ ବସାର ବାହାର ଘରେ ତାଙ୍କୁ ଅପେକ୍ଷା କରି ରହିଲି ।

ଅଳ୍ପ ସମୟ ପରେ ନୃସିଂହବାବୁ ଆସିଲେ । ଦୀର୍ଘ ସୁଗଠିତ ବପୁ, ଲମ୍ବା ଲମ୍ବା ଦୁଇପଟା କଳା ନିଶ ମୁହଁକୁ ତାଙ୍କର ଅଧିକ କଠୋର କରିଦେଇଥାଏ । ଦେଖିବାମାତ୍ରେ ମୋର ପରିଚୟ ମାଗିଲେ । ମୋ ଘର ବାଇରୋଇ, ତାଙ୍କ ଘର ଉତ୍ତରହରଣ । ଦୂରତା ବେଶି ନୁହେଁ । ଆମେ ପୁଣି ତାଙ୍କ ପୁରୋହିତ ବଂଶ । ଏ ପର୍ଯ୍ୟନ୍ତ ଆମ ଭିତରେ ପରିଚୟ ହୋଇ ନ ଥିବାରୁ ଦୁଃଖ ପ୍ରକାଶ କରି ମୋ ଆଗମନର ଅଭିପ୍ରାୟ ପଚାରିଲେ । ମୋଠାରୁ ଉତ୍ତର ପାଇ ସେ ମୋ ନାମରେ କୌଣସି ଦରଖାସ୍ତ ପାଇ ନ ଥିବାର ପ୍ରକାଶ କଲେ । ମୁଁ କହିଲି, "ମୁଁ ରେଜିଷ୍ଟର୍ଡ ଡାକରେ ଦେଇଛି, ନିଶ୍ଚୟ ପାଇଥିବେ ।" ତେଣୁ ସନ୍ଦେହରେ ପଡ଼ି ସେ ମୋର ଶିକ୍ଷାଗତ ଯୋଗ୍ୟତା ପଚାରି ବୁଝିଲେ ଏବଂ କହିଲେ, "ଆପଣଙ୍କର ଯାହା ଯୋଗ୍ୟତା,

ଏ ଅସ୍ଥାୟୀ ଚାକିରିକୁ ଆପଣ ଆସିବେ ନାହିଁ ଭାବି ଆମେ ଆପଣଙ୍କ ଦରଖାସ୍ତ ବିଚାର କରିନାହୁଁ । ଆପଣ କିଣ ଏଠାରେ ରହିବେ ?" ମୁଁ ଅନ୍ତତଃ ନଅ ମାସ ରହିବି ବୋଲି ଜବାବ ଦେଲି ।

ନୃସିଂହବାବୁ କିଣ ବିଚାରିଲେ କେଜାଣି, ପୋଷାକପତ୍ର ନ ବଦଳାଇ, 'ଟିକିଏ ଅପେକ୍ଷା କରିଥାନ୍ତୁ, ମୁଁ ଆସୁଛି' କହି ସେହିଠାରୁ ପୁଣି କୁଆଡ଼େ ବାହାରିଗଲେ । ପ୍ରାୟ ଅଧଘଣ୍ଟାକ ପରେ ଫେରିଲେ । ଚାକିରି ସମ୍ପର୍କରେ କିଛି ନ କହି ମୋ ସଙ୍ଗେ ଅନ୍ୟାନ୍ୟ ବିଷୟରେ କଥାବାର୍ତ୍ତା ହେଲେ । ରାତିରେ ମୁଁ ତାଙ୍କ ବସାରେ ରହିଲି । ପରଦିନ ସକାଳୁ ସେ ମୋତେ କହିଲେ, "ଆଜିଠାରୁ ଆପଣ ସ୍କୁଲରେ ଯୋଗ ଦିଅନ୍ତୁ ।"

ମନଟା ଆନନ୍ଦରେ ପୂର୍ଣ୍ଣ ହୋଇଗଲା । ହେଡ଼ମାଷ୍ଟର ମହାଶୟଙ୍କୁ ଧନ୍ୟବାଦ ଜଣାଇ କହିଲି, "ମୁଁ ଲୁଗାପଟା ବା ଜିନିଷପତ୍ର କିଛି ଆଣିନାହିଁ ।" "ନ ଆଣିଲେ, ଶନିବାର ଦିନ କଟକ ଯାଇ ନେଇ ଆସିବେ । ସ୍କୁଲରେ ଆଜି ଆଗ ଯୋଗ ଦେଇପକାନ୍ତୁ ।" ତାଙ୍କର ଏ ଉତ୍ତର ଶୁଣି ମୁଁ ନୀରବ ରହିଲି ଏବଂ ସ୍କୁଲକୁ ଯିବାପାଇଁ ପ୍ରସ୍ତୁତ ହେଲି ।

ମୋ ତରୁଣ ଜୀବନର ପ୍ରଥମ ଚାକିରି । ଏତେ ସହଜରେ ମିଳିଗଲା ! କିନ୍ତୁ ପରେ ଜାଣିଲି ଚାକିରିଟି ସେତେ ସହଜରେ ମିଳି ନ ଥିଲା । ପୂର୍ବଦିନ ମ୍ୟାନେଜିଂ କମିଟି ବସି ଅନ୍ୟ ଜଣଙ୍କୁ ନିଯୁକ୍ତ କରି ସାରିଥିଲେ ଏବଂ ଠିକ ମୁଁ ଯିବାଦିନ ତାଙ୍କ ନିଯୁକ୍ତିପତ୍ର ଡାକରେ ପଡ଼ି ସାରିଥିଲା । ହେଡ଼ମାଷ୍ଟର ଶ୍ରୀ କାନୁନ୍‌ଗୋ ମୋ ସଙ୍ଗେ କଥାବାର୍ତ୍ତା ହେବାପରେ ସଙ୍ଗେ ସଙ୍ଗେ ଡାକଘରକୁ ଯାଇ ପୋଷ୍ଟମାଷ୍ଟରଙ୍କୁ କହି ସେ ଚିଠିଟି ଫେରାଇ ଆଣିଲେ ଏବଂ ସେହିଦିନ ସନ୍ଧ୍ୟାରେ କମିଟିର ପ୍ରେସିଡେଣ୍ଟଙ୍କ ସହ ଦେଖା କରି ମୋ ନିଯୁକ୍ତି ବିଷୟରେ ଆଲୋଚନା କରିଥିଲେ । ମୋତେ ରଖିବା ପାଇଁ ପ୍ରେସିଡେଣ୍ଟ ପ୍ରଥମେ ରାଜି ହେଉ ନ ଥିଲେ, କିନ୍ତୁ ପରେ ନୃସିଂହବାବୁଙ୍କ ପ୍ରବର୍ତ୍ତନା ଫଳରେ ରାଜି ହେଲେ । ଦୁହିଁଙ୍କ ଭିତରେ ଏ ନେଇ ରାତି ବାରଟା ପର୍ଯ୍ୟନ୍ତ ନାନା ଯୁକ୍ତିତର୍କ ଓ ଆଲୋଚନା ଚାଲିଥିଲା ।

ବାଙ୍କୀ ସ୍କୁଲରେ ଯୋଗ ଦେବାର କିଛିଦିନ ପରେ ଦ୍ୱିତୀୟ ଥର ଡେପୁଟି ଚାକିରି ପାଇଁ ଦରଖାସ୍ତ କଲି । ଏଥର ମଧ୍ୟ ଜିଲ୍ଲା ଓ ଡିଭିଜନ ସ୍ତରୀୟ ଅଗ୍ନିପରୀକ୍ଷାରୁ ଉତ୍ତୀର୍ଣ୍ଣ ହୋଇ ପାଟନାକୁ ଯିବ ପାଇଁ ମନୋନୀତ ହେଲି । ପାଟନାରେ ସିଲେକ୍‌ସନ ବୋର୍ଡ଼ଙ୍କ ସହ ସାକ୍ଷାତର ପ୍ରଥମ ପର୍ଯ୍ୟାୟ ଶେଷ ହେଲା । ସେଥିରେ କେତେଜଣ କାଟ ଖାଇଗଲେ । ଦ୍ୱିତୀୟ ସାକ୍ଷାତ୍କାରକୁ ଆମେ ଛଅଜଣ ରହିଥିଲୁ । ବୋର୍ଡ଼ରେ ଓଡ଼ିଶାରୁ ସଭ୍ୟ ଥିବା ରାଏସାହେବ ଲକ୍ଷ୍ମୀଧର ମହାନ୍ତି ମୋତେ କେବଳ କଂଗ୍ରେସ

ବିଷୟକ ପ୍ରଶ୍ନମାନ ପଚାରିଲେ—'ଓଡ଼ିଶାରେ କେଉଁଠାରେ ଲୁଣମେରା ହୋଇଥିଲା ?' 'ବର୍ତ୍ତମାନ ଓଡ଼ିଶାର ପ୍ରଧାନ ନେତା କିଏ କିଏ ?' ଇତ୍ୟାଦି । ପରେ ଜାଣିଲି, ମୁଁ ଅସହଯୋଗ ଆନ୍ଦୋଳନରେ ପୂର୍ବବର୍ଷ ଯୋଗ ଦେଇଥିବା ସମ୍ବାଦ ପୋଲିସ ସଂଗ୍ରହ କରିଥିଲେ ଏବଂ ସେ ସମ୍ବନ୍ଧୀୟ କାଗଜପତ୍ର ବୋର୍ଡ଼ଙ୍କ ଦୃଷ୍ଟିକୁ ଅଣାଯାଇଥିଲା । ମୋର ଶିକ୍ଷାଗତ ଯୋଗ୍ୟତା ଏବଂ ଆମ ଜିଲ୍ଲା ହାକିମଙ୍କ ସୁପାରିସ୍ ଯୋଗୁ ମୁଁ ସିନା ପାଟନା ସିଲେକ୍ସନ୍ ବୋର୍ଡ଼ ପର୍ଯ୍ୟନ୍ତ ଚାଲି ଯାଇଥିଲି, ନୋହିଲେ ସେ ବ୍ରିଟିଶ ଶାସନ ଅମଳରେ ମୋ ଭଳି ପ୍ରାର୍ଥୀଙ୍କୁ ଡେପୁଟି ସବ୍-ଡେପୁଟି ଚାକିରି ମିଳିଥାନ୍ତା କିପରି ? ମୁଁ ଏକଥା ପୂର୍ବରୁ ଭଲରୂପେ ଜାଣି ମଧ୍ୟ 'ଆକାଶ-କୁସୁମ' ତୋଳିବାକୁ ଯେ ମନ ବଳାଇଥିଲି, ତାହା ତରୁଣ ଜୀବନର କଳ୍ପନାବିଳାସ ବ୍ୟତୀତ ଆଉ କଣ ହୋଇପାରେ ?

## କଟକରୁ ବାଙ୍କୀ—ଚାଲିକରି ଗଲି

ଚାକିରିରୁ ଛୁଟି ନେଇ ଆସିଥିଲି, ପୁଣି ବାଙ୍କୀ ଫେରିଯିବାକୁ ହେବ । ହରିହରଘାଟଠାରେ ନଦୀ ପାର ହୋଇ ମୁଣ୍ଡମୁହାଣରେ ପହଞ୍ଚି ଦେଖିଲି ଏକମାତ୍ର ବସ୍‌ଟି ବାଙ୍କୀ ଚାଲିଗଲାଣି । ତା ପରଦିନ ସକାଳ ୧୦ଟାରେ ସ୍କୁଲରେ ମୋର ଯୋଗ ଦେବା କଥା । ନୂଆ ଚାକିରି । ନିରୂପିତ ସମୟରେ ପହଞ୍ଚି ନ ପାରିଲେ ପରିଣତି କଣ ହେବ, ଠିକ୍ ଜାଣି ନ ଥିଲେ ହେଁ କର୍ତ୍ତବ୍ୟର ତାଡ଼ନା ମନକୁ ଆତଙ୍କିତ କରୁଥିଲା । ବାଙ୍କୀ ସେଠାରୁ ପ୍ରାୟ ୨୮ ମାଇଲ ବାଟ । ଯିବି କିପରି ? ବସ୍ ତ ଚାଲିଗଲାଣି ।

ତଥାରୁ ଓହ୍ଲାଇଥିବା ଜଣେ ଦୀର୍ଘକାୟ ଯୁବକ ବାଙ୍କୀ ରାସ୍ତାକୁ ମୁହାଁଇବାର ଦେଖି ତାକୁ ପଚାରି ବୁଝିଲି ଯେ ସେ ବାଙ୍କୀ ରଜାଙ୍କ ଚାକର ଏବଂ ଚାଲିକରି ବାଙ୍କୀ ଯିବ । 'ମୁଁ ବି ତୁମ ସଙ୍ଗରେ ଯିବି' କହି ତାର ସାଙ୍ଗ ଧରିଲି । ମୋ ଜୀବନରେ ମୁଁ କେବେ ଏକାଦିକ୍ରମେ ୨୮ ମାଇଲ ବାଟ ଚାଲି ନ ଥିଲି । ଯୁବକଟି ତାର ଲମ୍ବା ଲମ୍ବା ଗୋଡ଼ରେ ରଣପା ପରି ପଦକ୍ଷେପଣ କରୁଥାଏ । ମଧ୍ୟାହ୍ନର ପ୍ରଚଣ୍ଡ ସୂର୍ଯ୍ୟ-ତାପରେ ସେହି ଦିଗୋଡ଼ିଆ 'ଜିରାଫ୍' ସଙ୍ଗେ ପ୍ରତିଯୋଗିତା କରି କରି ମୁଁ ଅତ୍ୟନ୍ତ କ୍ଲାନ୍ତ ହୋଇ ପଡ଼ିଲି । ପ୍ରାୟ ଚାରିଟା ବେଳକୁ ଆମେ ମହାନଦୀ ତୀରସ୍ଥ ଗୋଟିଏ ଛୋଟ ମନ୍ଦିର ନିକଟରେ ବିଶ୍ରାମ କଲୁ ।

ଏହି ନିର୍ଜନ ସ୍ଥାନଟି କବିକଳ୍ପନାର ଲୋଭନୀୟ ସେହି ଦେଉଳଦ୍ୱାର, ଯାହାର ସୂର୍ଯ୍ୟାସ୍ତକାଳୀନ ଶୋଭାକୁ ଲକ୍ଷ୍ୟ କରି ରାଧାନାଥ ଦିନେ ଲେଖିଥିଲେ—

'ଡୁବନ୍ତ ଦିନାନ୍ତେ ତପ୍ତ ହେମଛବି
ଧୀରେ ଦେଉଳଦ୍ୱାର ଗିରିଶୃଙ୍ଗେ ରବି ।'

ଗୋଟିଏ ପାଖରେ ଉମପଡ଼ାର ନିଘଞ୍ଚ ଅରଣ୍ୟ, ଅନ୍ୟ ପାଖରେ ମହାନଦୀ କୁଳୁକୁଳୁ ନାଦ କରି ତାର ନିଉଦନିଆ ବାଟରେ ବହିଚାଲିଛି । ମଝିରେ ସଙ୍କୀର୍ଣ୍ଣ ଗାଡ଼ିପଥ ଧାରରେ ଉଭା ରହିଛି ଦେବୀଙ୍କର ମନ୍ଦିର । କେଉଁ ଯୁଗରେ ଏ ନିର୍ଜନ ପାହାଡ଼ ତଳେ କିଏ ମନ୍ଦିରଟିକୁ ତୋଳାଇଥିଲେ, ସେ କଥା ଇତିହାସ କହିବ ।

ସେଇ 'ଦେବୀଦ୍ୱାର' ନିକଟରେ ଜୀବିକାର୍ଜନପାଇଁ ମୁଢ଼ିଉଖୁଡ଼ାର ପସରାଟିଏ ମେଲାଇ ବସି ରହିଥାଏ ଜଣେ ବୃଦ୍ଧ । ତାର ପାଖରୁ ଦୁ'ପୋଷ ମୁଢ଼ି କିଣି ଉଦର ଉଦରତୃପ୍ତି କଲାପରେ ଯିବାକୁ ପୁଣି ଉଦ୍ୟତ ହେଲି । ଭୁବନ୍ତୁ ମୋର ଗୋଡ଼ ଉଠୁ ନ ଥାଏ । ଖାଲିରେ ଏକାଦିକ୍ରମେ ପ୍ରାୟ ୪୮ ମାଇଲ ବାଟ ଚାଲିଆସି ମୁଁ ବିଶେଷ କ୍ଲାନ୍ତ ହୋଇ ପଡ଼ିଥାଏ । ସେ ମୋତେ ସାଙ୍ଗରେ ଯିବାକୁ ଡାକିବାରୁ କହିଲି, "ତୁମେ ଯାଅ, ମୁଁ ଟିକିଏ ପରେ ଯିବି ।" ସେ ଉଠି ଚାଲିଗଲା ।

ଗୁଡ଼ିଆ ବୁଢ଼ାଟି କଣ ଭାବିଲା କେଜାଣି, ମୋତେ କହିଲା, "ତୁମେ ତା ସଙ୍ଗରେ ଚାଲିଗଲ ନାହିଁ, ବାବୁ ?" ମୋତେ ବହୁତ ବାଧା ହୋଇଛି ବୋଲି କହିଲି ଏବଂ ପାଖରେ ଦୁଧ କିମ୍ବା ଦହି କେଉଁଠି ମିଳିପାରିବ ପଚାରିଲି । ସେ କହିଲା, ଦୁଇ ମାଇଲ ଦୂରବର୍ତ୍ତୀ ତାର ଗ୍ରାମକୁ ଗଲେ ସେ ସବୁ ଯୋଗାଡ଼ କରି ଦେଇ ପାରିବ । ମୁଁ ଦେଖିଲି, ଯଦି ରାତିରେ ମୁଁ ତା ଗାଁରେ ରହିଯାଏ, ତେବେ ସକାଳୁ ଉଠି ୧୬ ମାଇଲ ବାଟ ଚାଲି ସ୍କୁଲ ସମୟ ପୂର୍ବରୁ ମୁଁ ବାଙ୍କୀରେ ପହଞ୍ଚି ପାରିବି ନାହିଁ । ତେଣୁ ତା ସଙ୍ଗରେ ଯିବାକୁ ମନା କଲି । ଏହା ଶୁଣି ସେ କହିଲା, "ତେବେ ଯିବ ଯଦି, ଶୀଘ୍ର ଚାଲିଯାଅ । ସନ୍ଧ୍ୟା ହୋଇ ଯାଉଛି । ମୁଁ ବି ଘରକୁ ଯିବାକୁ ବାହାରିଲିଣି ।"

ବୁଢ଼ା ପସରା ବାନ୍ଧିବାର ଦେଖି ବହୁ କଷ୍ଟରେ ଉଠିଲି । ପ୍ରାୟ ଡାକେ ବାଟ ଯାଇଛି କି ନାହିଁ, ଦେଖିଲି କାହାଣୀରେ ପଢ଼ିଥିବା 'ଅଗନାଅଗନ ବନସ୍ତ' ଭିତରେ ମୁଁ ଚାଲିଛି । ଆଗକୁ ପଛକୁ ଚାହିଁ ଚାହିଁ ନିରାଶ ହେଲି । ରାସ୍ତାରେ ଜଣେ ସୁଦ୍ଧା କାହାକୁ ଦେଖିଲି ନାହିଁ । ସନ୍ଧ୍ୟା ଆସନ୍ନ । ପାଣି ପିଇବା ପାଇଁ ବାଘ ଓ ବଣୁଆ ହାତୀଙ୍କର ମହାନଦୀକୁ ଗଡ଼ିବା ବେଳ । କେବେ ଏପରି ଦୁଃସାହସ କରି ନ ଥିଲି କି ଏପରି ବିପଦରେ ପଡ଼ି ନ ଥିଲି । ଜୀବନରେ ଯଦି ମନପ୍ରାଣ ଦେଇ କେବେ ଭଗବାନଙ୍କୁ ଡାକିଥାଏ, ସେଠିକବେଳେ ଡାକିଛି । ଯେତେ ଚାଲିଲେ ବି ରାସ୍ତା ସରୁ ନ ଥାଏ । ଏତେବେଳକେ ବୁଝିଲି ଗୁଡ଼ିଆ ବୁଢ଼ା କାହିଁକି ମୋତେ ତରତର କରୁଥିଲା । କାଳେ ଭୟ ପାଇବି, ସେଇଥିପାଇଁ ସେ ଖୋଲିକରି କିଛି କହି ନ ଥିଲା । ବାସ୍ତବିକ ପରିଚିତ ବସ୍ତୁପରେ ମନୁଷ୍ୟର ବିଚାରବୁଦ୍ଧିରେ ଏହିପରି ପକ୍ଷପାତିତା ଅସେ ।

ଅନେକ ବାଟ ଯିବା ପରେ ଆଗରେ ଗୋଟିଏ ଗୋରୁପଲ ଦେଖିବାରୁ ପିଣ୍ଡରେ ପ୍ରାଣ ପଶିଲା । ନିକଟରେ ନିଶ୍ଚୟ ଜନବସତି ଥିବ । ସନ୍ଧ୍ୟା ହେଲାଣି । ତେଣୁ ସେହି ଗ୍ରାମରେ ରାତିଟା କଟାଇବାକୁ ମନସ୍ଥ କରି ଆଗେଇ ଚାଲିଲି । ଜଣେ ଲୋକକୁ ପଚାରି ବୁଝିଲି ଯେ ସେ ଗାଁରେ ଗୋଟିଏ ଡାକଘର ଅଛି । ସେହି ଗ୍ରାମର ପୋଷ୍ଟମାଷ୍ଟରଙ୍କ ପୁଅ ଆମ ସ୍କୁଲରେ ପଢ଼େ ବୋଲି ଶୁଣିଥିଲି । ତାଙ୍କରି ପାଖରେ ଆଶ୍ରୟ ପାଇବା ଆଶାରେ ପଚାରି ପଚାରି ଡାକଘର ନିକଟକୁ ଗଲି ।

ଛୋଟ ବ୍ରାଞ୍ଚ ଅଫିସଟିଏ । ତାଲା ବନ୍ଦ ଥିଲା । ବାରଣ୍ଡାରେ ବସି ପୋଷ୍ଟ-ମାଷ୍ଟରଙ୍କୁ ଡକାଇ ପଠାଇଲି । ସେ ଭଦ୍ରଲୋକ ଆସି ମୋତେ ସନ୍ଦେହପୂର୍ଣ୍ଣ ଦୃଷ୍ଟିରେ ଚାହିଁଲେ । ମୁଁ ନିଜର ପରିଚୟ ଦେଇ ରାତିକ ସକାଶେ ମୋତେ କୌଣସିଠାରେ ରହିବାର ଟିକିଏ ସୁବିଧା କରିଦେବା ପାଇଁ ତାଙ୍କୁ ଅନୁରୋଧ କଲି ଏବଂ ମୋର ରାତିର ଖାଦ୍ୟପେୟ ଓ ସକାଳୁ ବାଙ୍କୀ ଯିବା ଲାଗି ଖଣ୍ଡେ ଗାଡ଼ିର ବ୍ୟବସ୍ଥା କରିଦେଲେ ମୁଁ ଉପକୃତ ହୁଅନ୍ତି ବୋଲି ଜଣାଇଲି । ଏ ସମସ୍ତର ବ୍ୟୟ ବହନ କରିବାକୁ ମୁଁ ପ୍ରସ୍ତୁତ ବୋଲି ଅବଶ୍ୟ ପ୍ରଥମରୁ କହି ଦେଇଥିଲି । କିନ୍ତୁ ମୋ ପ୍ରତି ତିଳେମାତ୍ର ସହାନୁଭୂତି ପ୍ରକାଶ ନ କରି ଉକ୍ତ ମହାଶୟ କହିଲେ, "ମୁଁ ତ ଆପଣଙ୍କୁ ସ୍କୁଲରେ କେବେ ଦେଖିନାହିଁ । ଗ୍ରାମରେ ରହିବାର ବା ଖାଇବା ପିଇବାର କୌଣସି ସୁବିଧା ହେବ ନାହିଁ । ରାସ୍ତାକଡ଼ରେ ସେ ଦୋକାନରେ ଆପଣ ରହିଲେ ନାହିଁ କାହିଁକି ?"

ତାଙ୍କର ଏ ମଧୁର ସମ୍ଭାଷଣ ମୋ ପକ୍ଷରେ ଯଥେଷ୍ଟ ହେଲା । ସଙ୍ଗେ ସଙ୍ଗେ ଉଠି ଦୋକାନକୁ ଚାଲିଲି । କଂଗ୍ରେସରେ ଥିବାବେଳେ ଏହିପରି କେତେ ଘଟଣା ଘଟିଛି । ଅଜଣା ଅଶୁଣା ସ୍ଥାନରେ କେତେ ରାତି ଏହିପରି କଟାଇବାକୁ ପଡ଼ିଛି । ଆଜି ସେହିପରି ଏକ ଅନୁଭୂତିର ପୁନରାବୃତ୍ତି ମାତ୍ର । ଦୋକାନକୁ ଯାଇ ଦେଖିଲି ବୁଢ଼ାଟିଏ ଖଟିଆରେ ଶୋଇଛି । ତାକୁ ଜର । ପାଖରେ ତାର ଦଶ ବାର ବର୍ଷର ପୁଅ । ମୋତେ ଭାରି ହେୟ କରୁଥିଲା । କିଛି ଚୂଡ଼ା ଓ ଗୁଡ଼ କିଣି ଜଳଖିଆ କଲି । ତା ପରେ ରାତିରେ ଟିକିଏ ଆଶ୍ରୟ ଦେବାପାଇଁ ବୁଢ଼ାକୁ କହିଲି । ବୁଢ଼ା କହିଲା, "ବାବୁ, ଏ ରାସ୍ତାରେ ମଟର ଚାଲିବାଦିନୁ ଏଠି ବାଟୋଇ କେହି ରହୁନାହାନ୍ତି । ତେଣୁ ଘର ରଖିବୁ କାହିଁକି ? ଯେଉଁ ଘର ବଖରାକ ଥିଲା, ସେ ଘର ଭାଙ୍ଗି ରୁଟି ଗଲାଣି । ଆପଣ ସେଠି କେମିତି ରହିବେ ?"

ମୁଁ ଯେ କୌଣସି ଜାଗା ଟିକିଏ ପାଇଲେ ଶୋଇପଡ଼ିବି କହିବାରୁ ସେ ତା ପୁଅକୁ ପାଖଘର ଦେଖାଇବାକୁ କହିଲା । ମୁଁ ଦେଖିଲି, ସେ ଘରେ ଲୁଣ ବସ୍ତା ପ୍ରଭୃତି ଥୁଆ ହୋଇଛି । ଚାରିପଟେ ଗାତରୁ ମୂଷା ମାଟି ଗାଳିଥାଏ । ପୋଷା କୁକୁର ବିରାଡ଼ିଙ୍କୁ ମଧ୍ୟ ସେ ଘରେ ନିଶ୍ଚିନ୍ତରେ ଛାଡ଼ି ହେବ ନାହିଁ । କିନ୍ତୁ ମୁଁ ଯେ ଉପାୟହୀନ । ଅଗତ୍ୟା

ତାବୁ ଆଲୁଅରେ ଜାଗା ଟିକିଏ ସଫାକରି ଅଖା ଖଣ୍ଡେ ବିଛାଇ ଦେଇ ଗଡ଼ିପଡ଼ିଲି । ପିଲାଟି ବାହାରୁ କବାଟ ଫଟା ପକାଇ ଦେଇ ଅନ୍ୟ ଘରକୁ ଚାଲିଗଲା । ଦିନସାରା କ୍ଲାନ୍ତ ଯୋଗୁ ନିଘୋଡ଼ ନିଦରେ ଶୋଇପଡ଼ିଲି ।

ସକାଳେ ଉଠିଲାବେଳକୁ ଗୋଡ଼ହାତ ଦରଜ ଲାଗୁଥାଏ । ବାଙ୍କୀ ସେଠାରୁ ପ୍ରାୟ ଆଠ ଦଶ ମାଇଲ ଦୂର । ଭଡ଼ା ବଳଦଗାଡ଼ିଟିଏ ଖୋଜିଲି, ମାତ୍ର ପାଇଲି ନାହିଁ । ତେଣୁ ବାଧ୍ୟ ହୋଇ ଅବଶିଷ୍ଟ ବାଟ ଚାଲିକରି ଯିବାକୁ ହେଲା । ନଅଟା ବେଳକୁ ହେଡ଼ମାଷ୍ଟରଙ୍କ ବସାରେ ପହଞ୍ଚି ତାଙ୍କୁ ଦେଖା କଲି । ମୁଁ ଏତେ ବାଟ ଚାଲିକରି ଆସିଛି ଶୁଣି ସେ ଆଶ୍ଚର୍ଯ୍ୟ ହେଲେ । କଥାପ୍ରସଙ୍ଗରେ ଉକ୍ତ ପୋଷ୍ଟମାଷ୍ଟରଙ୍କ ଅଭଦ୍ରତା ବିଷୟ ମଧ୍ୟ କହିଲି । ସେ ବିରକ୍ତ ହୋଇ କହିଲେ, "ତାକୁ ଉଚିତ ଶିକ୍ଷା ଦେବାକୁ ହେବ ।"

କିଛିଦିନ ପରେ ମୁଁ ଦିନେ କ୍ଲାସରେ ପଢ଼ାଉଥିବାବେଳେ ସେଇ ଭଦ୍ରବ୍ୟକ୍ତି ବାରଣ୍ଡାରେ ମୋତେ ଅପେକ୍ଷା କରିଥିବାର ଦେଖି ବାହାରକୁ ଆସିଲି । ମୋତେ ଦେଖିଲାମାତ୍ରେ ସେ ବିନମ୍ର ଭାବରେ କହିଲେ, "ଆଜ୍ଞା, ମୁଁ ସେଦିନ ଆପଣଙ୍କ ପ୍ରତି ବଡ଼ ଅନ୍ୟାୟ କରିଛି, ମୋତେ କ୍ଷମା କରନ୍ତୁ ।" ମୁଁ କହିଲି, "ମୋ କ୍ଷମା କରିବା ନ କରିବାରେ ଆପଣଙ୍କର ଯାଏ ଆସେ କେତେ ?" ସେ ମୋର ହାତ ଧରି ପକାଇ ପୁନଶ୍ଚ କ୍ଷମା ମାଗିଲେ । ମୁଁ ତାଙ୍କୁ ଖଟାମିଠା ଦୁଇପଦ କହି ବୋଧଶୋଧ କରି ବିଦା କରିଦେଲି । ନୃସିଂହବାବୁ ବାଙ୍କୀର ପୋଷ୍ଟମାଷ୍ଟରଙ୍କ କାନକୁ କଥାଟା ନେଇଥିଲେ । ଭାବିଲି ତା'ର ପରିଣାମ ଏ ।

ମୋର ବାଙ୍କୀରେ ନଅ ମାସ ରହଣିମଧ୍ୟରେ ଥରେ ଇନସପେକ୍ଟର ଭବନାଥ ମୁଖାର୍ଜୀ ସ୍କୁଲ ପରିଦର୍ଶନରେ ଆସିଥିଲେ । ମୋ କ୍ଲାସ ଦେଖି ସେ ଏହିପରି ମନ୍ତବ୍ୟ ଦେଇଥିଲେ—He seems to show promise of very good improvement with some more experience. ଅର୍ଥାତ୍ ଆଉ କିଛି ଦିନର ଅଭିଜ୍ଞତା ପରେ ସେ ଖୁବ୍ ଭଲ କରିବେ ବୋଲି ଆଭାସ ମିଳୁଛି । ତାଙ୍କର ଏ ଟିପ୍ପଣୀ ମୋର ପ୍ରଥମ ଚାକିରି ଜୀବନରେ ମୋତେ ଯଥେଷ୍ଟ ଉତ୍ସାହ ଦେଇଥିଲା ।

ଖୋର୍ଦ୍ଧା ହାଇସ୍କୁଲରୁ ପରିଭ୍ରମଣେଚ୍ଛୁ ଦଳେ ଛାତ୍ର ଥରେ ବାଙ୍କୀ ଆସିଥିଲେ । ସେମାନଙ୍କ ସଙ୍ଗରେ ଆସିଥିବା ଶିକ୍ଷକ ଆମ ହଷ୍ଟେଲରେ ଅତିଥି ହୋଇଥିଲେ । ମୁଁ ଓ ଆଉ ଜଣେ ଶିକ୍ଷକ ତାଙ୍କ ପାଖରେ ବସି କଥାବାର୍ତ୍ତା ହେଉଥିଲୁ । ତାଙ୍କ ସ୍କୁଲରେ ସେଉଁ ଶିକ୍ଷକ ଚାକିରି ଖାଲି ଥିଲା, ସେ ସ୍ଥାନରେ କିଏ ରହିଲେଣି କି ନା ପଚାରିବାରୁ ସେ କହିଲେ, "କଟକର ଜଣେ ଅନର୍ସ ଗ୍ରାଜୁଏଟଙ୍କୁ ନିଯୁକ୍ତି ଦିଆଯାଇଥିଲା, ମାତ୍ର ସେ ଚାକିରି ପ୍ରତ୍ୟାଖ୍ୟାନ କରି ଖୁବ୍ କଡ଼ା ଭାଷାରେ ଉତ୍ତର ଦେଇଥିବାରୁ ମ୍ୟାନେଜିଂ

କମିଟି ତାଙ୍କ ନାମରେ ମକଦ୍ଦମା କରିବେ ବୋଲି ବିଚାରୁଥିଲେ । ହେଡ୍‌ମାଷ୍ଟର ବାଙ୍କିନିଧିବାବୁ ନିବର୍ତ୍ତାଇବାରୁ ସେ କଥା ଆଉ ବେଶି ଦୂର ଗଲା ନାହିଁ ।"

ସେ ଉକ୍ତ ଅନର୍ଥ ଗ୍ରାଜୁଏଟ ଯେ ତାଙ୍କର ଏତେ ପାଖରେ ବସିଛୁ, ଏ କଥା ସେ ଜାଣି ନ ଥିଲେ । ଯେତେବେଳେ ଜାଣିଲେ, ପ୍ରସ୍ତେ ହସର ରୋଳ ଉଠିଲା ।

ପଣ୍ଡିତ ଗୋଦାବରୀଶ ସେହି ସମୟରେ ବାଣପୁରରେ ନୂଆ ହାଇସ୍କୁଲଟିଏ ସ୍ଥାପନ କରୁଥାନ୍ତି । ସେ ସ୍କୁଲକୁ ମୋତେ ହେଡ୍‌ମାଷ୍ଟର କରି ନେବାପାଇଁ ବିଚାର କରି ସେ ମାଇନର ସ୍କୁଲ ହେଡ୍‌ମାଷ୍ଟର ଶ୍ରୀ ବାମନଚରଣ ଦାସଙ୍କୁ ବାଙ୍କୀ ପଠାଇଥିଲେ । ବାମନବାବୁ ମୋର ପୂର୍ବପରିଚିତ ବନ୍ଧୁ ଥିବାରୁ ବୋଧହୁଏ ମୋ ନାମ ପ୍ରସ୍ତାବ କରିଥିବେ । ମୁଁ ଯେଉଁ ନଅମାସ ପାଇଁ ବାଙ୍କୀରେ ନିଯୁକ୍ତି ପାଇଛୁ, ସେ ସମୟ ଭିତରେ ଅନ୍ୟତ୍ର ଯିବି ନାହିଁ ବୋଲି ନୃସିଂହବାବୁଙ୍କୁ କଥା ଦେଇଛୁ—ଏ ବିଷୟ ବାମନବାବୁଙ୍କୁ ଜଣାଇଲି ଏବଂ ବାଙ୍କୀରୁ ବିଦାୟ ନେଲା ପରେ ସେଠାକୁ ଯାଇପାରେ ବୋଲି କହିଲି । ବାମନବାବୁ କହିଲେ, "ହଉ ତେବେ, ଏଠାରୁ ଯିବା ପରେ ତୁମେ ଇଚ୍ଛା କଲେ ଡି.ଇଡି. ଟ୍ରେନିଂ ନେଇସାରି ବାଣପୁର ଯିବ । ଟ୍ରେନିଂକାଳୀନ ଖର୍ଚ୍ଚର କିଛି ଅଂଶ ବାଣପୁର ସ୍କୁଲ ବହନ କରିବାକୁ ପ୍ରସ୍ତୁତ ଅଛୁ ।" ଏହିପରି କଥା ହେଲା ପରେ ବାମନବାବୁ ଫେରିଗଲେ ।

ଦିନେ ଶୁଣିଲି ବାଙ୍କୀକୁ ଜଣେ 'ସର୍ବଜ୍ଞ' ଆସିଛନ୍ତି । ସେ କେବଳ ଭକ୍ତମାନଙ୍କ ପ୍ରଦତ୍ତ ଫଳମୂଳ ଆହାର କରନ୍ତି କିନ୍ତୁ କାହାଠାରୁ ପଇସାଟିଏ ସୁଦ୍ଧା ନିଅନ୍ତି ନାହିଁ । ଲୋକର ମୁହଁକୁ ଚାହିଁ ସେ ତା ବିଷୟରେ ତେରଟି କଥା କହନ୍ତି । ସେଗୁଡ଼ିକ ସବୁ ପ୍ରାୟ ଠିକ୍ ହେଉଛି ବୋଲି ଶୁଣିଲି । ମୁଁ ପ୍ରଥମେ ବିଶ୍ୱାସ କରୁ ନ ଥିଲି । କିନ୍ତୁ ହେଡ୍‌ମାଷ୍ଟର ନୃସିଂହବାବୁ, ଡମପଡ଼ାର ରାଣୀ ସାହେବା ଏବଂ ଅନ୍ୟାନ୍ୟ ବିଶିଷ୍ଟ ଲୋକ ତାଙ୍କ ପାଖକୁ ଯିବା ଆସିବା କରୁଥିବା ଶୁଣି ତାଙ୍କୁ ଦେଖିବାକୁ ଇଚ୍ଛା ହେଲା । ଦୁଇଜଣ ଶିକ୍ଷକ ବନ୍ଧୁଙ୍କ ସହ ଦିନେ ସର୍ବଜ୍ଞଙ୍କ ପାଖକୁ ଗଲି । ବିଳମ୍ବ ହୋଇ ଯାଇଥିବାରୁ ସେ ଆମ ତିନିଜଣଙ୍କ ବିଷୟରେ କେବଳ ଆଠଟି ଲେଖାଏଁ କଥା କହିଲେ । ଆମେ କୌଣସି ପ୍ରଶ୍ନ ପଚାରି ନ ଥିଲୁ । ତାଙ୍କ ନିଜ ଇଚ୍ଛାନୁସାରେ ସେ ବିଷୟଗୁଡ଼ିକ ନିର୍ବାଚନ କରି କହୁଥାନ୍ତି । ଦେଖିଲୁ ସେ ଗୋଟିଏ କାଗଜରେ ଏଣୁ ତେଣୁ ଗାରଗୁଡ଼ିଏ କାଟୁଥାନ୍ତି । ସେଗୁଡ଼ିକର ଅର୍ଥ ଥିଲା କି ଜଣାଯାଉ ନ ଥାଏ । ପ୍ରଥମରୁ ଆମକୁ କହିଥାନ୍ତି, "ମୁଁ ଯାହା କହିବି, ଯଦି ଭୁଲ ହୋଇଥିବ, ମୋତେ ଜଣାଇବେ । ମୁଁ ଆଉ ଥରେ ଗଣନା କରି କହିବାକୁ ଚେଷ୍ଟା କରିବି ।"

ମୋ ବିଷୟରେ ସେ ଏହିପରି କେତୋଟି କଥା କହିଗଲେ—(୧) ଆପଣଙ୍କର ଏଠା ଅପେକ୍ଷା ଅଧିକ ଉନ୍ନତ ହେବାର ସମ୍ବାଦ ମିଳିଛି ମାତ୍ର ବର୍ତ୍ତମାନ ଆପଣ

ସେଠାକୁ ଯାଉନାହାନ୍ତି । (୨) ଆପଣଙ୍କ ଘରେ ଗତ ଦୁଇ ତିନ ବର୍ଷ ଭିତରେ କେତେଗୋଟି ଶୁଭ କାର୍ଯ୍ୟ ଘଟିଯାଇଛି । (୩) ଆପଣଙ୍କ ପରିବାରର ଜଣେ ଗୌରବର୍ଣ୍ଣର ଲୋକ ଦୂର ବିଦେଶରେ ଅଛନ୍ତି । (୪) ଆପଣଙ୍କ ଘରେ ପୁରୁଷମାନଙ୍କ ମଧ୍ୟରେ ମନ ମିଳେନାହିଁ । (୫) ଆପଣଙ୍କ ପରିବାରରେ ମୋଟ ଦଶ ଜଣ ଲୋକ ଅଛନ୍ତି । ଆଉ ତିନୋଟି କଥା କଣ କହିଲେ ମୋର ମନେ ନାହିଁ । କିନ୍ତୁ ଯାହା କହିଲେ, ସେଗୁଡ଼ିକ କିପରି କହିଲେ ଭାବି ଆଶ୍ଚର୍ଯ୍ୟ ହେଲି ।

ପ୍ରଥମଟି ଖୁବ୍ ସତ । ମୁଁ ବାଣପୁରକୁ ହେଡ଼ମାଷ୍ଟର ହୋଇ ଯିବା ବିଷୟକୁ ଲକ୍ଷ୍ୟକରି ସେ କହିଥିବେ, କିନ୍ତୁ ମୁଁ ତ ସେ କଥା ବାଙ୍କୀରେ କାହାକୁ କହି ନ ଥିଲି । ଦ୍ୱିତୀୟଟିକୁ ମୁଁ ମନେ ମନେ 'ଅନ୍ଦାଜ' ବୋଲି ଧରିନେଲି । ଚତୁର୍ଥଟି ମଧ୍ୟ ସେଇଜାତୀୟ, ତୃତୀୟଟି ମିଳାଇ ଦେଖିଲି ଆଂଶିକ ଠିକ୍ । ମୋ କକେଇ ସମ୍ବଲପୁରରେ ଥାନ୍ତି ସତ ମାତ୍ର ସେ ଆମଠାରୁ ଏକପ୍ରକାର ପୃଥକ୍ । ସବୁଠାରୁ କିନ୍ତୁ ପଞ୍ଚମଟି ମୋତେ ବେଶି ଆଶ୍ଚର୍ଯ୍ୟ ବୋଧହେଲା । ଆମ ପରିବାରର ଲୋକମାନଙ୍କୁ ଗଣି ଦେଖିଲି ନଅଜଣ, ଦଶଜଣ ନୁହନ୍ତି । ତାଙ୍କୁ ସେ କଥା କହିବାରୁ ସେ ଗଣିବାକୁ ଆରମ୍ଭ କଲେ, ସତେ ଯେପରି କି ତାଙ୍କ ଆଗରେ ଆମ ଘରର ଲୋକମାନେ ଧାଡ଼ିହୋଇ ଠିଆ ହୋଇଛନ୍ତି ! କହିଲେ—ଦୁଇଜଣ ବୃଦ୍ଧ, ଛଅଜଣ ଯୁବକ ଯୁବତୀ ଓ ଦୁଇଟି ପିଲା । ଆମ ଘରେ କେବଳ ଜଣେ ପିଲା ବୋଲି କହିବାରୁ ସେ ପୁଣି କହିଲେ, "ନା ତ, ମୋତେ ଦୁଇଜଣ ଦେଖାଯାଉଛନ୍ତି ।"

ଘରେ ଭାଉଜ ଆସନ୍ନପ୍ରସବା ଥାନ୍ତି । ମୁଁ ସେ ବିଷୟ ଜଣାଇବାରୁ ସେ ପାଟିକରି ଉଠିଲେ, "ଆନନ୍ଦେ ଏକବାର ହରିବୋଲ, ଗୋଟିଏ ପୁଅ ଜନ୍ମ ହୋଇଛି ତାହାହେଲେ ।" ଦୁଇଦିନ ପରେ ଭାଇନାଙ୍କର ପୁଅ ହୋଇଥିବା ଚିଠି ପାଇଲି !

ମୋର ବନ୍ଧୁ ଦୁଇଜଣଙ୍କୁ ସେ ସେହିପରି କେତେକ କଥା କହିଲେ । ଜଣକ ଘର ବଙ୍ଗର ମଇମନସିଂହ ଜିଲାରେ । ତାଙ୍କଘରେ ସତର ଜଣ ଲୋକ ଆମେ ବି ଜାଣି ନ ଥିଲୁ । ବାସ୍ତବିକ 'ସର୍ବଜ୍ଞ' ଏ ! କିପରି ସେ ଏତେଗୁଡ଼ିଏ କଥା ଜାଣି-ପାରୁଛନ୍ତି ପଚାରିବାରୁ ସେ କହିଲେ, "ଯୋଗ ଓ ଜ୍ୟୋତିଷ ଗଣନା ଦ୍ୱାରା ମୁଁ ଏ ଶକ୍ତି ଅର୍ଜନ କରିଛି । କିନ୍ତୁ ମୋର ଗୁରୁ ଏପରି ପ୍ରଚାର କରିବାକୁ ବାରଣ କରିଛନ୍ତି । ମୁଁ ଶୀଘ୍ର ଏଠାରୁ ଚାଲିଯିବି ।" ପାଶ୍ଚାତ୍ୟ ଶିକ୍ଷାଭିମାନୀ ଆମ୍ଭେମାନେ, ଯୋଗ ବା ଜ୍ୟୋତିଷର ଶକ୍ତି ବିଷୟରେ ଅନଭିଜ୍ଞ; ତେଣୁ ଏ ପ୍ରକାର କଥାକୁ ପ୍ରଥମେ ଅବିଶ୍ୱାସ କରୁ । କିନ୍ତୁ ସେଦିନର ଘଟନା ପରଠାରୁ ମୁଁ ଏସବୁ ବିଷୟରେ ଅଧିକ ଆସ୍ଥାବାନ୍ ହୋଇଛି ।

ବାଙ୍କୀରେ ଥିଲାବେଳର ଆଉ କେତେଗୋଟି ଛୋଟ ଛୋଟ ଘଟଣା ମନେ ପଡ଼ୁଛି । ମୋର ସର୍ବ ପରିଚିତ ବନ୍ଧୁ ଶ୍ରୀ ଶ୍ୟାମସୁନ୍ଦର ହୋତା ଥରେ ମୋତେ

କମିଟି ତାଙ୍କ ନାମରେ ମକଦ୍ଦମା କରିବେ ବୋଲି ସ୍ଥିର କରିଥିଲେ । ହେଡ୍‌ମାଷ୍ଟର ବାଙ୍କିନିଧିବାବୁ ନିବର୍ତ୍ତାଇବାରୁ ସେ କଥା ଆଉ ବେଶି ଦୂର ଗଲା ନାହିଁ ।"

ସେ ଉକ୍ତ ଅନର୍ଥ ଗ୍ରାଜୁଏଟ ଯେ ତାଙ୍କର ଏତେ ପାଖରେ ବସିଛୁ, ଏ କଥା ସେ ଜାଣି ନ ଥିଲେ । ଯେତେବେଳେ ଜାଣିଲେ, ପ୍ରସ୍ତେ ହସର ରୋଳ ଉଠିଲା ।

ପଣ୍ଡିତ ଗୋଦାବରୀଶ ସେହି ସମୟରେ ବାଣପୁରରେ ନୂଆ ହାଇସ୍କୁଲଟିଏ ସ୍ଥାପନ କରୁଥାନ୍ତି । ସେ ସ୍କୁଲକୁ ମୋତେ ହେଡ୍‌ମାଷ୍ଟର କରି ନେବାପାଇଁ ସ୍ଥିର କରି ସେ ମାଇନର ସ୍କୁଲ ହେଡ୍‌ମାଷ୍ଟର ଶ୍ରୀ ବାମନଚରଣ ଦାସଙ୍କୁ ବାଙ୍କୀ ପଠାଇଥିଲେ । ବାମନବାବୁ ମୋର ପୂର୍ବପରିଚିତ ବନ୍ଧୁ ଥିବାରୁ ବୋଧହୁଏ ମୋ ନାମ ପ୍ରସ୍ତାବ କରିଥିବେ । ମୁଁ ଯେଉଁ ନଅମାସ ପାଇଁ ବାଙ୍କୀରେ ନିଯୁକ୍ତ ପାଇଛୁ, ସେ ସମୟ ଭିତରେ ଅନ୍ୟତ୍ର ଯିବି ନାହିଁ ବୋଲି ନୃସିଂହବାବୁଙ୍କୁ କଥା ଦେଇଛୁ—ଏ ବିଷୟ ବାମନବାବୁଙ୍କୁ ଜଣାଇଲି ଏବଂ ବାଙ୍କୀରୁ ବିଦାୟ ନେଲା ପରେ ସେଠାକୁ ଯାଇପାରେ ବୋଲି କହିଲି । ବାମନବାବୁ କହିଲେ, "ହଉ ତେବେ, ଏଠାରୁ ଯିବା ପରେ ତୁମେ ଇଚ୍ଛା କଲେ ଡି.ଇଡି. ଟ୍ରେନିଂ ନେଇସାରି ବାଣପୁର ଯିବ । ଟ୍ରେନିଂକାଳୀନ ଖର୍ଚ୍ଚର କିଛି ଅଂଶ ବାଣପୁର ସ୍କୁଲ ବହନ କରିବାକୁ ପ୍ରସ୍ତୁତ ଅଛୁ ।" ଏହିପରି କଥା ହେଲା ପରେ ବାମନବାବୁ ଫେରିଗଲେ ।

ଦିନେ ଶୁଣିଲି ବାଙ୍କୀକୁ ଜଣେ 'ସନ୍ଥଙ୍କ' ଆସିଛନ୍ତି । ସେ କେବଳ ଭକ୍ତମାନଙ୍କ ପ୍ରଦତ୍ତ ଫଳମୂଳ ଆହାର କରନ୍ତି କିନ୍ତୁ କାହାଠାରୁ ପଇସାଟିଏ ସୁଦ୍ଧା ନିଅନ୍ତି ନାହିଁ । ଲୋକର ମୁହଁକୁ ଚାହିଁ ସେ ତା ବିଷୟରେ କେତେଟି କଥା କହନ୍ତି । ସେଗୁଡ଼ିକ ସବୁ ପ୍ରାୟ ଠିକ୍ ହେଉଛି ବୋଲି ଶୁଣିଲି । ମୁଁ ପ୍ରଥମେ ବିଶ୍ୱାସ କରୁ ନ ଥିଲି । କିନ୍ତୁ ହେଡ୍‌ମାଷ୍ଟର ନୃସିଂହବାବୁ, ଜମିଦାର ରାଣୀ ସାହେବା ଏବଂ ଅନ୍ୟାନ୍ୟ ବିଶିଷ୍ଟ ଲୋକ ତାଙ୍କ ପାଖକୁ ଯିବା ଆସିବା କରୁଥିବା ଶୁଣି ତାଙ୍କୁ ଦେଖିବାକୁ ଇଚ୍ଛା ହେଲା । ଦୁଇଜଣ ଶିକ୍ଷକ ବନ୍ଧୁଙ୍କ ସହ ଦିନେ ସନ୍ଥଙ୍କଙ୍କ ପାଖକୁ ଗଲି । ବିଳମ୍ବ ହୋଇ ଯାଇଥିବାରୁ ସେ ଆମ ତିନିଜଣଙ୍କ ବିଷୟରେ କେବଳ ଆଠଟି ଲେଖାଏଁ କଥା କହିଲେ । ଆମେ କୌଣସି ପ୍ରଶ୍ନ ପଚାରି ନ ଥିଲୁ । ତାଙ୍କ ନିଜ ଇଚ୍ଛାନୁସାରେ ସେ ବିଷୟଗୁଡ଼ିକ ନିର୍ବାଚନ କରି କହୁଥାନ୍ତି । ଦେଖିଲି ସେ ଗୋଟିଏ କାଗଜରେ ଏଣୁ ତେଣୁ ଗାରଗୁଡ଼ିଏ କାଟୁଥାନ୍ତି । ସେଗୁଡ଼ିକର ଅର୍ଥ ଥିଲାଭଳି ଜଣାଯାଉ ନ ଥାଏ । ପ୍ରଥମରୁ ଆମକୁ କହିଥାନ୍ତି, "ମୁଁ ଯାହା କହିବି, ଯଦି ଭୁଲ ହୋଇଥିବ, ମୋତେ ଜଣାଇବେ । ମୁଁ ଆଉ ଥରେ ଗଣନା କରି କହିବାକୁ ଚେଷ୍ଟା କରିବି ।"

ମୋ ବିଷୟରେ ସେ ଏହିପରି କେତୋଟି କଥା କହିଗଲେ—(୧) ଆପଣଙ୍କର ଏଠା ଅପେକ୍ଷା ଅଧିକ ଉନ୍ନତ ହେବାର ସମ୍ବାଦ ମିଳିଛି ମାତ୍ର ବର୍ତ୍ତମାନ ଆପଣ

ସେଠାକୁ ଯାଉନାହାନ୍ତି । (୨) ଆପଣଙ୍କ ଘରେ ଗତ ଦୁଇ ତିନି ବର୍ଷ ଭିତରେ କେତେଗୋଟି ଶୁଭ କାର୍ଯ୍ୟ ଘଟିଯାଇଛି । (୩) ଆପଣଙ୍କ ପରିବାରର ଜଣେ ଗୌରବର୍ଣ୍ଣର ଲୋକ ଦୂର ବିଦେଶରେ ଅଛନ୍ତି । (୪) ଆପଣଙ୍କ ଘରେ ପୁରୁଷମାନଙ୍କ ମଧ୍ୟରେ ମନ ମିଳୁନାହିଁ । (୫) ଆପଣଙ୍କ ପରିବାରରେ ମୋଟ ଦଶ ଜଣ ଲୋକ ଅଛନ୍ତି । ଆଉ ତିନୋଟି କଥା କଣ କହିଲେ ମୋର ମନେ ନାହିଁ । କିନ୍ତୁ ଯାହା କହିଲେ, ସେଗୁଡ଼ିକ କିପରି କହିଲେ ଭାବି ଆଶ୍ଚର୍ଯ୍ୟ ହେଲି ।

ପ୍ରଥମଟି ଖୁବ୍ ସତ । ମୁଁ ବାଣପୁରକୁ ହେଡ୍‌ମାଷ୍ଟର ହୋଇ ଯିବା ବିଷୟକୁ ଲକ୍ଷ୍ୟକରି ସେ କହିଥିବେ, କିନ୍ତୁ ମୁଁ ତ ସେ କଥା ବାଙ୍କୀରେ କାହାକୁ କହି ନ ଥିଲି । ଦ୍ୱିତୀୟଟିକୁ ମୁଁ ମନେ ମନେ 'ଅନ୍ଦାଜ' ବୋଲି ଧରିନେଲି । ଚତୁର୍ଥଟି ମଧ୍ୟ ସେଇଜାତୀୟ, ତୃତୀୟଟି ମିଳାଇ ଦେଖିଲି ଆଂଶିକ ଠିକ୍ । ମୋ କକେଇ ସମ୍ବଲପୁରରେ ଥାନ୍ତି ସତ ମାତ୍ର ସେ ଆମଠାରୁ ଏକପୁରୁଷ ପୃଥକ୍ । ସବୁଠାରୁ କିନ୍ତୁ ପଞ୍ଚମଟି ମୋତେ ବେଶୀ ଆଶ୍ଚର୍ଯ୍ୟ ବୋଧହେଲା । ଆମ ପରିବାରର ଲୋକମାନଙ୍କୁ ଗଣି ଦେଖିଲି ନଅଜଣ, ଦଶଜଣ ନୁହନ୍ତି । ତାଙ୍କୁ ସେ କଥା କହିବାରୁ ସେ ଗଣିବାକୁ ଆରମ୍ଭ କଲେ, ସତେ ଯେପରି କି ତାଙ୍କ ଆଗରେ ଆମ ଘରର ଲୋକମାନେ ଧାଡ଼ିହୋଇ ଠିଆ ହୋଇଛନ୍ତି ! କହିଲେ—ଦୁଇଜଣ ବୃଦ୍ଧ, ଛଅଜଣ ଯୁବକ ଯୁବତୀ ଓ ଦୁଇଟି ପିଲା । ଆମ ଘରେ କେବଳ ଜଣେ ପିଲା ବୋଲି କହିବାରୁ ସେ ପୁଣି କହିଲେ, "ନା ତ, ମୋତେ ଦୁଇଜଣ ଦେଖାଯାଉଛନ୍ତି ।"

ଘରେ ଭାଉଜ ଆସନ୍ନପ୍ରସବା ଥାନ୍ତି । ମୁଁ ସେ ବିଷୟ ଜଣାଇବାରୁ ସେ ପାଟିକରି ଉଠିଲେ, "ଆଜିହେ ଏକବାର ହରିବୋଲ, ଗୋଟିଏ ପୁଅ ଜନ୍ମ ହୋଇଛି ତାହାହେଲେ ।" ଦୁଇଦିନ ପରେ ଭାଇନାଙ୍କର ପୁଅ ହୋଇଥିବା ଚିଠି ପାଇଲି !

ମୋର ବନ୍ଧୁ ଦୁଇଜଣଙ୍କୁ ସେ ସେହିପରି କେତେକ କଥା କହିଲେ । ଜଣକ ଘର ବଙ୍ଗର ମଇମନସିଂହ ଜିଲାରେ । ତାଙ୍କଘରେ ସତର ଜଣ ଲୋକ ଆମେ ବି ଜାଣି ନ ଥିଲୁ । ବାସ୍ତବିକ 'ସର୍ବଜ୍ଞ' ଏ ! କିପରି ସେ ଏତେଗୁଡ଼ିଏ କଥା ଜାଣି-ପାରୁଛନ୍ତି ପଚାରିବାରୁ ସେ କହିଲେ, "ଯୋଗ ଓ ଜ୍ୟୋତିଷ ଗଣନା ଦ୍ୱାରା ମୁଁ ଏ ଶକ୍ତି ଅର୍ଜନ କରିଛି । କିନ୍ତୁ ମୋର ଗୁରୁ ଏପରି ପ୍ରଚାର କରିବାକୁ ବାରଣ କରିଛନ୍ତି । ମୁଁ ଶୀଘ୍ର ଏଠାରୁ ଚାଲିଯିବି ।" ପାଶ୍ଚାତ୍ୟ ଶିକ୍ଷାଭିମାନୀ ଆମ୍ଭେମାନେ, ଯୋଗ ବା ଜ୍ୟୋତିଷର ଶକ୍ତି ବିଷୟରେ ଅନଭିଜ୍ଞ; ତେଣୁ ଏ ପ୍ରକାର କଥାକୁ ପ୍ରଥମେ ଅବିଶ୍ୱାସ କରୁ । କିନ୍ତୁ ସେଦିନର ଘଟଣା ପରଠାରୁ ମୁଁ ଏସବୁ ବିଷୟରେ ଅଧିକ ଆସ୍ଥାବାନ୍ ହୋଇଛି ।

ବାଙ୍କୀରେ ଥିଲାବେଳର ଆଉ କେତେଗୋଟି ଛୋଟ ଛୋଟ ଘଟଣା ମନେ ପଡ଼ୁଛି । ମୋର ପୂର୍ବ ପରିଚିତ ବନ୍ଧୁ ଶ୍ରୀ ଶ୍ୟାମସୁନ୍ଦର ହୋତା ଥରେ ମୋତେ

ବଡ଼ାମ୍ବାକୁ ନେବାପାଇଁ ଦୁଇଟି ହାତୀ ପଠାଇଥିଲେ । ସେତେବେଳେ ସେ ଥାଆନ୍ତି ବଡ଼ାମ୍ବାର ଦେଓ୍ୱାନ । ମୁଁ ଏଥିପୂର୍ବରୁ କେବେ ହାତୀ ଉପରେ ବସି ନ ଥିଲି । ସ୍କୁଲ୍ କାମ ସାରି ଯାଉଁ ଯାଉଁ ସନ୍ଧ୍ୟା ହୋଇଗଲା । ପହଞ୍ଚିବାକୁ ରାତି ହୋଇଯିବ ଜାଣି ସେ ବୋଧହୁଏ ଦୁଇଟି ହାତୀ ପଠାଇଥିଲେ । ଶେଷପର୍ଯ୍ୟନ୍ତ ମହାନଦୀର ବାଲିରେ ପଶି ଯିବାକୁ ହେଲା । ହାତୀ ବ୍ୟତୀତ ଆଉ କେଉଁ ଯାନ ବା ବାହନ ସେ ଦୀର୍ଘ ସିକତାପଥରେ ସହାୟ ହୋଇଥାନ୍ତା ? ଜହ୍ନ ଆଲୁଅରେ ମହାନଦୀର ଜଳରାଶି ଝଲମଲ କରୁଥାଏ । ମାହୁନ୍ତ କହିଲା, "ଦେଖନ୍ତୁ ବାବୁ, କେଡ଼େ ହୁସିଆର୍ ଜୀବ ଏ । ପାଦଚିହ୍ନକୁ ଚାହିଁ ଚାହିଁ ଯେଉଁ ବାଟେ ବାଟେ ଆସିଲା, ଠିକ୍ ସେଇ ବାଟେ ବାଟେ ଚାଲିଛି । ଟିକିଏ ଏପାଖ କି ସେପାଖ ହେଉନାହିଁ ।" ମୁଁ ତାର କାରଣ ଜାଣିବାକୁ ଚାହିଁବାରୁ ସେ କହିଲା, "ନଈରେ ଚୋରା ବାଲିଭୂଷା ଥାଏ ବୋଲି ତାଙ୍କୁ ଜଣା । ଯଦି ସେଥିରେ ଗୋଡ଼ ପଡ଼ିଯିବ, ତେବେ ଗଳିପଡ଼ିବେ, ଆଉ ଉଠି ପାରିବେ ନାହିଁ ।"

ସତ କଥା । ମୁଁ ଥରେ ଶୁଣିଥିଲି, ଡମପଡ଼ା ଜଙ୍ଗଲରୁ ଗୋଟିଏ ଦନ୍ତା ହାତୀ ମହାନଦୀର ଅପର ତୀରକୁ ଯାଉଥିବାବେଳେ ନଈ ମଝିରେ ଥିବା ବାଲିଭୂଷାରେ ଗଳିପଡ଼ି ଆଉ ଉଠିପାରି ନ ଥିଲା । ହାତୀଟି ସେହି ଅବସ୍ଥାରେ ମରିଯିବାରୁ ବାଙ୍କୀର ଏସ୍.ଡି.ଓ.ଙ୍କ ପାଖକୁ ଖବର ଆସିଥିଲା । ତାଙ୍କର ଅନୁମତି ନେଇ ଲୋକମାନେ ସେ ହାତୀର ଦାନ୍ତକୁ କାଟିରଖି ଆଉ ସବୁ ପୋତି ପକାଇଥିଲେ ।

କିଛି ଦୂର ଯିବାପରେ ହାତୀ ଦୁଇଟି ରହି ରହି ସେମାନଙ୍କର ଲାଞ୍ଜ ଓ ଶୁଣ୍ଢ ଟେକୁଥିବାର ଲକ୍ଷ୍ୟ କଲି । ମାହୁନ୍ତ କହିଲା, "ପାହାଡ଼ ଉପରେ ବୋଧହୁଏ ବାଘ କମ୍ବା ଗଧିଆ ଯାଉଥିବାର ସେମାନେ ବାରି ପାରିଛନ୍ତି ।" ଏ କଥା ଶୁଣି ମନରେ ଟିକିଏ ଭୟ ଆସିଲା, କିନ୍ତୁ ପରେ ଭାବିଲି, ମୁଁ ଯେଉଁ ପାହାଡ଼ ଉପରେ ବସିଛି, ସେ ତ ନିର୍ଜୀବ ପଥରର ପାହାଡ଼ ନୁହେଁ, ଶକ୍ତି ଓ ବୁଦ୍ଧିର ଚଳନ୍ତ ପାହାଡ଼ । ତେଣୁ ଭୟ କଣ ?

ବଡ଼ାମ୍ବାରେ ପହଞ୍ଚି ଶ୍ୟାମବାବୁଙ୍କର ଆତିଥ୍ୟ ଗ୍ରହଣ କରି ଆପ୍ୟାୟିତ ହେଲି । ପରଦିନ ସକାଳେ ମୋର ଫେରନ୍ତା ଯାତ୍ରା ପାଇଁ ସେ ଗୋଟିଏ ଟାଙ୍ଗାର ବନ୍ଦୋବସ୍ତ କରିଦେଲେ । ମୁଁ ଯଥା ସମୟରେ ବାଙ୍କୀରେ ଆସି ପହଞ୍ଚିଲି ।

ମୁଁ ସେଠାରେ ଥିବା ଭିତରେ ପଣା ସଂକ୍ରାନ୍ତି ପଡ଼ିଲା । ବାଙ୍କୀର ପ୍ରସିଦ୍ଧ ଝାମୁଯାତ୍ରା ଦେଖିବାର ସୁଯୋଗ ମିଳିଲା । ପୂର୍ବରୁ ମୁଁ କେବେ ସେ ଦୃଶ୍ୟ ଦେଖି ନ ଥିଲି । ଶ୍ରେଷ୍ଠ ବଡ଼ କେତେଗୁଡ଼ିଏ ଦୀର୍ଘ ଗର୍ତ୍ତ ମଧ୍ୟରେ ଜ୍ୱଳନ୍ତ କୋଇଲା ଭର୍ତ୍ତି ହୋଇଥାଏ । ଭକ୍ତ ପାଟୁଆମାନେ ତା ଉପରେ ଅବାଧରେ ମୁକୁଳା ପାଦରେ ଚାଲି-ଯାଉଥାନ୍ତି । ତାହା ଦେଖି ମୁଁ ବାସ୍ତବିକ ଅବାକ୍ ହୋଇ ଯାଇଥିଲି । ଶୁଣିଲି

ଯେଉଁମାନେ ବିଧି ଅନୁସାରେ ବ୍ରତ ଉପବାସ ପାଳନ କରିଥାନ୍ତି, ସେମାନଙ୍କର କିଛି କ୍ଷତି ହୁଏ ନାହିଁ । ବ୍ରତର ବ୍ୟତିକ୍ରମ ହେଲେ ହିଁ ପାପ ପୋଡ଼ିଯାଏ ।

ଦିନେ କ୍ଲାସରେ ପଢ଼ାଉଥିବାବେଳେ ମହାନଦୀରୁ ଘଣ୍ଟଧ୍ୱନି ଶୁଭିଲା । ଦିନ ଦ୍ୱିପ୍ରହରବେଳେ ମହାନଦୀ ଭିତରେ ଘଣ୍ଟ ବାଜିବାର କାରଣ କିଛି ବୁଝିପାରିଲି ନାହିଁ । ସେତେବେଳେ ଦୋଳଯାତ୍ରା ସମୟ ବି ନୁହେଁ । ପଗ୍ଭରି ଜାଣିଲି, ଜଗନ୍ନାଥ ମହାପ୍ରଭୁଙ୍କ ରଥ ତିଆରି ପାଇଁ ନଦୀରେ କାଠ ଯାଉଛି । ତେଣୁ ସେଇ କାଠର ପଟାଳି ଉପରେ ଘଣ୍ଟ ବାଜୁଛି ।

କି ଚମତ୍କାର ଆମ ପାରମ୍ପରିକ ବିଧିବିଧାନ ! ରଥ ଗଢ଼ା ନ ହେଉଣୁ କାଠ ପାଉଛି ଦେବତାର ପୂଜା ! ପୁରୀର ରାଜା ଯେତେବେଳେ 'ଲକ୍ଷେ ରାଜାଙ୍କ ମଉଡ଼ମଣି' ଥିଲେ, ସେହି ସମୟରେ ସେ ଦଶପଲ୍ଲା ରାଜାଙ୍କୁ ରଥ କାଠ ଯୋଗାଇବା ପାଇଁ ଗୋଟିଏ ଜଙ୍ଗଲ ଦେଇଥିଲେ । ଦଶପଲ୍ଲା ରାଜା ଉକ୍ତ ଜଙ୍ଗଲରେ ଭୋଗଦଖଲ କରି ସେହିକାଳରୁ ପ୍ରତିବର୍ଷ ମହାନଦୀରେ ବଢ଼ି ସମୟରେ ପଟାଳି କରି ରଥକାଠ ପଠାଇ ଆସୁଛନ୍ତି ।

## ପୁନର୍ବିବାହ ( ୧୯୩୧ )

ଏହି ସମୟରେ ମୋର ପୁନର୍ବିବାହ ଅନୁଷ୍ଠିତ ହେଲା । ବିବାହ ପରେ ଦୀର୍ଘ ଛଅ ବର୍ଷ ଅତୀତ ହୋଇ ଯାଇଥିଲେ ସୁଦ୍ଧା ଏଥିମଧ୍ୟରେ ଆମ ଦୁଇଟି ପ୍ରାଣର ବ୍ୟବଧାନ ଟିକିଏ ମାତ୍ର ନିକଟତର ହୋଇ ନ ଥିଲା । ସୁନ୍ଦରଗ୍ରାମ ନିବାସୀ ମୋର ଜଣେ ବନ୍ଧୁଙ୍କଠାରୁ ମୋର ଭାବୀ ଜୀବନସଙ୍ଗିନୀଙ୍କ ସମ୍ପର୍କରେ ମୁଁ ଯେତିକି କଥା ଶୁଣିଥିଲି, ତାକୁଇ ସମ୍ବଳ କରି ମୁଁ କଳ୍ପନାରେ ଗୋଟିଏ ମାନସୀ ପ୍ରତିମା ଗଢ଼ି ସନ୍ତୁଷ୍ଟ ରହିଥିଲି । ବିବାହ ପରେ ମୁଁ ଏକାଧିକ ଥର ଶ୍ୱଶୁରାଳୟକୁ ଯାଇଥିଲେ ହେଁ ରକ୍ଷଣଶୀଳତାର କଠୋର ନିଗଡ଼ ମଧ୍ୟରୁ ମୋ ସ୍ତ୍ରୀ କେବେହେଲେ ମୋ ସମ୍ମୁଖକୁ ଆସି ନ ଥିଲେ । ଆଜିର ତରୁଣ ତରୁଣୀଙ୍କୁ ଏହା ନିଶ୍ଚୟ ସ୍ୱପ୍ନପୁରୀର କାହାଣୀପରି ଲାଗୁଥିବ । ସ୍ୱର୍ଗୀୟ ହରବିଲାସ ଶାରଦାଙ୍କ ଉଦ୍ୟମ ଫଳରେ ୧୯୨୯ ମସିହା ପରଠାରୁ ହିନ୍ଦୁ ସମାଜର ସେ ବିକୃତ ପ୍ରଥାଟି ଉଠିଯାଇଛି ।

ଆଜିକାଲିର ବିବାହ ଯାହା, ସେତେବେଳର ପୁନର୍ବିବାହ ଥିଲା ସେଇଆ । ମୋର ନିଃସଙ୍ଗ ଜୀବନର କର୍ମବ୍ୟସ୍ତତା ଭିତରେ ବସନ୍ତର ମଧୁର ସ୍ପର୍ଶ ଅନୁଭବ କଲି । ଦୁଇଟି ପ୍ରାଣର ମିଳନରେ ସମସ୍ତଙ୍କ ଜୀବନରେ ଯେଉଁ ନୂତନ ରୋମାଞ୍ଚ ଅନୁଭୂତ ହୁଏ, ତାହା ମୋର ଜୀବନକୁ ସରସ ଓ ମଧୁମୟ କରିଦେଲା । କର୍ତ୍ତବ୍ୟର ଆହ୍ୱାନରେ ମୁଁ କିଛିଦିନ ପରେ ମୋର ପତ୍ନୀଙ୍କୁ ଛାଡ଼ି ପୁଣି କର୍ମକ୍ଷେତ୍ରକୁ ଚ୍ଳିଗଲି । ନାନା କାରଣରୁ ତାଙ୍କୁ ସଙ୍ଗରେ ନେଇଯିବା ସମ୍ଭବ ନ ଥିଲା, କିନ୍ତୁ ମିଳନ ଓ ବିଚ୍ଛେଦର

ସେ ଛୁଟିକାଳରେ ଆମ ଅନ୍ତରର ଆକର୍ଷଣ ଅଧିକ ନିବିଡ଼ ଓ ପ୍ରାଣବନ୍ତ ବୋଧ ହୋଇଥିଲା ।

ବସନ୍ତର ମାଧୁର୍ଯ୍ୟ ପରେ ନିଦାଘର ରୁକ୍ଷତା ପରି ମୋ ଛାତ୍ର ଜୀବନରେ ହଠାତ୍ ପଡ଼ିଲା ପୂର୍ଣ୍ଣଚ୍ଛେଦ । ଗ୍ରୀଷ୍ମଛୁଟି ପୂର୍ବରୁ ମୋ ଅସ୍ଥାୟୀ ଚାକିରିର କାର୍ଯ୍ୟକାଳ ପୂରିଯିବାରୁ ପ୍ରିୟ ଛାତ୍ର ଓ ସହକର୍ମୀଙ୍କଠାରୁ ବିଦାୟ ନେଇ ବାଙ୍କୀ ପରିତ୍ୟାଗ କଲି ।

* * *

## ବାରିପଦାରେ ଶିକ୍ଷକତା ( ୧୯୩୮—୧୯୪୨ )

ବାଙ୍କୀରୁ ଆସି ଗ୍ରୀଷ୍ମଛୁଟିରେ ବେକାର ହୋଇ ଗାଁରେ ବସି ରହିଲି । ନୂଆ ଦାମ୍ପତ୍ୟ ଜୀବନର ରଙ୍ଗିନ୍ ସ୍ୱପ୍ନସବୁ ଶୂନ୍ୟତାରେ କ୍ରମେ ମିଳେଇ ଯାଉଥାଏ । କଥାରେ ଅଛି, 'ଆଲେ ମଉସା, ଜଉଡ଼ ପଇସା' । ବର୍ତ୍ତମାନ ଆଉ ଗୋଟିଏ ପ୍ରାଣୀ ମୋ ବେକରେ ବନ୍ଧା ହେଲାଣି । ପିତାମହ ବୃଦ୍ଧ । ଘରେ ତିନୋଟି ଭାଇ ଓ ସେମାନଙ୍କର ପିଲାପିଲି । ପରିବାରରେ ସଂଖ୍ୟା ବଢ଼ିବା ସଙ୍ଗେ ସଙ୍ଗେ ଘରର ଅଭାବ ପକ୍ଷ ବିସ୍ତାର କରି ବଢ଼ି ଚାଲିଛି । ସମ୍ମୁଖରେ କଠୋର ଜୀବନ ।

ଅନ୍ୟ କୌଣସି ଚାକିରି ମିଳିବାର ଆଶା ନାହିଁ । ଯଦି ଡିପୋଟି ବା ସବ୍-ଡିପୋଟି ଚାକିରି ମିଳିଥାନ୍ତା, ତେବେ ଇଂରେଜ ସରକାରର ଜୁଆଳି କାନ୍ଧରେ ବୋହିଥାନ୍ତି । 'ପେଟ ପୋଷ, ନାହିଁ ଦୋଷ' । ତା ନ ହେଲେ ଏଣୁ ତେଣୁ ଚାକିରିଟା ପାଇଁ ସରକାର ଘରେ ମୁଣ୍ଡ ବିକି ତୁଚ୍ଛାଟାରେ ମାନ ହରେଇବି କାହିଁକି ? ବାର-ବର୍ଷର ତପସ୍ୟା ଶୁଖିଆପୋଡ଼ାରେ ଯିବ କିନା । ଯଦି ଶିକ୍ଷକତା କରିବି, ତେବେ କୌଣସି ପ୍ରାଇଭେଟ୍ ସ୍କୁଲରେ କଲେ ବି ଚଳିବ । ହଁ, ଏଇ ଶିକ୍ଷକତା ହିଁ କରିବି । ଆମର ତିନିପୁରୁଷ ଥିଲେ ଶିକ୍ଷକ । ସେହି ବଂଶଗତ ବୃତ୍ତିକୁ ଆଶ୍ରୟ କରିବା ଛଡ଼ା ଅନ୍ୟ ଗତି ନାହିଁ । ଏଇଟା ମଧ୍ୟ ସହଜଲଭ୍ୟ । ବାଣପୁରରୁ ମୋଟାଏ ଆଶା ମିଳିଛି । ତେବେ ଏଥିରେ ଯୋଗ ଦେବାପୂର୍ବରୁ ଟ୍ରେନିଂ ଯୋଗ୍ୟତାଟା ହାସଲ କରିନେବି କି ? ଘରେ ବସି ମନ ମଧ୍ୟରେ ଏହିପରି ବିଚାରୁଥିବାବେଳେ ଆଉ ଗୋଟିଏ ଚାକିରିର ସୁଯୋଗ ଅପ୍ରତ୍ୟାଶିତ ଭାବରେ ଆସି ଜୁଟିଲା ।

ମୋର ପୂର୍ବତନ ବନ୍ଧୁ ଶ୍ରୀ ବିଶ୍ୱନାଥ ନନ୍ଦ ଥରେ ଖରାବେଳେ କଟକରୁ ସାଇକେଲରେ ଆସି ଆମ ଘରେ ପହଞ୍ଚିଲେ । ବାରିପଦା ହାଇସ୍କୁଲର ହେଡ୍‌ମାଷ୍ଟର ଶ୍ରୀ ମଧୁସୂଦନ ବିଶ୍ୱାଳଙ୍କ ସଙ୍ଗେ ତାଙ୍କର କଟକରେ ଦେଖା ହୋଇଥିଲା । ବିଶ୍ୱାଳ ମହାଶୟ ତାଙ୍କ ସ୍କୁଲପାଇଁ ଶିକ୍ଷକ ଖୋଜୁଥିଲେ । ସେହି ପ୍ରସଙ୍ଗରେ ମୋ ବିଷୟ ଆଲୋଚିତ ହୋଇଥିଲା । ମୋତେ ନେବାପାଇଁ ସେ ଆଗ୍ରହ ପ୍ରକାଶ କରିବାରୁ ବିଶ୍ୱନାଥବାବୁ ମୋତେ ସେହି ସମ୍ବାଦ ଦେବାଲାଗି ଆମ ଗ୍ରାମକୁ ଯାଇଥାନ୍ତି । ସେ କହିଲେ, "ଯଦି ସେଠାରେ ଶିକ୍ଷକତା କରିବାର ଇଚ୍ଛା ଥାଏ, ତେବେ ଆଜି ରାତି ଗାଡ଼ିରେ ବାରିପଦା ଯାଇ କାଲି ସକାଳେ ବିଶ୍ୱାଳ ମହାଶୟଙ୍କୁ ଦେଖା କରିବାକୁ ହେବ ।"

ଶ୍ରୀ ମଧୁସୂଦନ ବିଶ୍ୱାଳଙ୍କୁ ଆମେ ଉଭୟେ ପୂର୍ବରୁ ଅଳ୍ପ ଅଳ୍ପ ଜାଣିଥିଲୁ । କଂଗ୍ରେସରେ ଥିଲାବେଳେ ମୁଁ ତାଙ୍କୁ ପ୍ରଥମେ ନୂଆବଜାରରେ ଦେଖିଥିଲି । ସେଠାରେ ସେ ଗୋଟିଏ ଜାତୀୟ ବିଦ୍ୟାଳୟ ପ୍ରତିଷ୍ଠା କରି ପାଠପଢ଼ା ସଙ୍ଗେ ସୂତାକଟା, ଲୁଗାବୁଣା, ବଗିଚାକାମ ପ୍ରଭୃତି କରାଉଥିଲେ । ଏଥିପୂର୍ବରୁ ସେ ଶିକ୍ଷାବିଭାଗରେ ଜିଲ୍ଲା ଇନ୍‌ସପେକ୍ଟର ରୂପେ କାର୍ଯ୍ୟ କରୁଥିଲେ । ସେ ଜଣେ ଟାଣୁଆ କର୍ମଦକ୍ଷ ଅଫିସର ଥିଲେ ବୋଲି ଶୁଣିଥିଲୁ । ଏହା ଭିତରେ ସେ ବାରିପଦା ହାଇସ୍କୁଲରେ ଯୋଗ ଦେଇଥାନ୍ତି । ସେଠାରେ ବଙ୍ଗାଳୀ ପ୍ରାଧାନ୍ୟ ବେଶି ଥିଲା । ତେଣୁ ସେଠାକୁ ଓଡ଼ିଆ ଶିକ୍ଷକ ନେବା ଉଦ୍ଦେଶ୍ୟରେ ସେ କଟକ ଆସିଥିଲେ ।

ବିଶ୍ୱନାଥବାବୁଙ୍କ ସଙ୍ଗେ ଆଲୋଚନା କରି ସଙ୍ଗେ ସଙ୍ଗେ କଟକ ଯିବା ସ୍ଥିର କଲି । ଦୁହେଁଯାକ ସାଇକେଲରେ ବସି କଟକ ଆସିଲୁ । ବାଟରେ ଆସିଲାବେଳେ ଅସହଯୋଗ ବେଳର ଅନୁଭୂତିମାନ ମନେ ପଡ଼ିଲା । ଜଗନ୍ନାଥ ସଡ଼କ କଡ଼ରେ ଥିବା ଜାମୁଗଛସବୁ ପାଚିଲା କୋଳିରେ ଲଦି ହୋଇ ପଡ଼ିଥାନ୍ତି । ଲୋଭ ସମ୍ବରଣ କରି ନ ପାରି ସେଥିରୁ କିଛି କିଛି ଉଦରସାତ୍ କଲୁ । ସନ୍ଧ୍ୟା ପୂର୍ବରୁ କଟକରେ ଆସି ପହଞ୍ଚିଲୁ ।

ସେହିଦିନ ରାତି ୧୦ ଟାରେ ଟ୍ରେନ ଧରିଲି । ତା ପରଦିନ ସକାଳ ପ୍ରାୟ ୧୧ ଟାରେ ବାରିପଦାରେ ପହଞ୍ଚି ବିଶ୍ୱାଳ ମହାଶୟଙ୍କୁ ତାଙ୍କ ବସାରେ ଦେଖା କଲି । ସେ ବି ମୋତେ ପୂର୍ବରୁ ଜାଣିଥିଲେ । ମୋତେ ଦେଖି ଖୁସି ହୋଇଗଲେ । କହିଲେ, "ଆପଣଙ୍କର ଯଦି ସରକାରୀ ଚାକିରି ନ କରି ପ୍ରାଇଭେଟ୍ ସ୍କୁଲରେ ଚାକିରି କରିବାର ଇଚ୍ଛା ଥାଏ, ତେବେ ମୋ ମତରେ ଏଠା ଚାକିରି ସବୁଠାରୁ ଭଲ । ଏଠି ମଧ୍ୟ ପେନ୍‌ସନ୍‌ର ବ୍ୟବସ୍ଥା ଅଛି । ଆଜି ରାତିରେ ସ୍କୁଲର ମ୍ୟାନେଜିଂ କମିଟି ବସିବ । ଜଣେ ଇତିହାସ ଶିକ୍ଷକ ଏବଂ ଜଣେ ଗଣିତ ଶିକ୍ଷକଙ୍କ ସ୍ଥାନ ଖାଲି ଅଛି । ମୁଁ କହୁଛି ଆପଣଙ୍କୁ ସେ ଚାକିରିପାଇଁ ଡକାଯିବ ନାହିଁ । ଏ ସ୍କୁଲରେ ମ୍ୟାଟ୍ରିକ ଶ୍ରେଣୀରେ ଓଡ଼ିଆ ପଢ଼ାଇବାକୁ ଉପଯୁକ୍ତ ଶିକ୍ଷକ ନାହାନ୍ତି । ଆପଣ ତ ଭଲ ଓଡ଼ିଆ

ଜାଣନ୍ତି, ଲେଖାଲେଖି କରନ୍ତି ବୋଲି ଶୁଣିଛୁ । ତାଛଡ଼ା ଆପଣଙ୍କର ଇଂରାଜୀ ଅନର୍ସ ଯୋଗ୍ୟତା ଅଛି, ଇଂରାଜୀ ବି ପଢ଼ାଇ ପାରିବେ । କି କି ବହି ଆପଣ ଲେଖିଛନ୍ତି ଏବଂ ପତ୍ରପତ୍ରିକାରେ ଆପଣଙ୍କର କି କି ଲେଖା ଏପର୍ଯ୍ୟନ୍ତ ପ୍ରକାଶ ପାଇଛି, କହନ୍ତୁ । ମୁଁ ସେଗୁଡ଼ିକ କମିଟି ଆଗରେ ଦର୍ଶାଇ ପାରିଲେ ସୁବିଧା ହେବ ।"

ମୁଁ ମୋ ପ୍ରକାଶିତ ଲେଖାଗୁଡ଼ିକର ଗୋଟିଏ ତାଲିକା ତାଙ୍କୁ ଦେଲି ଏବଂ ତାଙ୍କ ପରାମର୍ଶ ଅନୁଯାୟୀ ମ୍ୟାନେଜିଂ କମିଟିର ସଭ୍ୟ ଲାଲମୋହନ ପଟ୍ଟନାୟକଙ୍କ ସଙ୍ଗେ ଦେଖା କଲି । ହେଡ଼ମାଷ୍ଟରଙ୍କ କହିବାମତେ ସ୍କୁଲର ପାଇଁ ଖଣ୍ଡିଏ ଦରଖାସ୍ତ ମଧ୍ୟ ସେହିଦିନ ଦାଖଲ କରିଦେଲି । ସେହି ଅଳ୍ପସମୟ ମଧ୍ୟରେ ବିଶ୍ୱାଳ ମହାଶୟ ସ୍ଥାନୀୟ ନୁଆଁଲି ଲାଇବ୍ରେରୀରୁ ଏବଂ ଅନ୍ୟଠାରୁ ମୋର କେତେଗୋଟି ଲେଖା ଓ ବହି ସଂଗ୍ରହ କରିନେଲେ ।

ରାତିରେ ମ୍ୟାନେଜିଂ କମିଟି ବସି ମୋ ଦରଖାସ୍ତର ବିଚାର କଲେ ଏବଂ ଗୋଟିଏ ନୂତନ ପଦବୀର ସୃଷ୍ଟି କରି ମୋତେ ସେଥିରେ ନିଯୁକ୍ତ କଲେ । ତଦନୁଯାୟୀ ୧୯୩୧ ମସିହା ଜୁଲାଇ ୯ ତାରିଖରେ ମାସିକ ସତୁରି ଟଙ୍କା ବେତନରେ ମୁଁ ବାରିପଦା ହାଇସ୍କୁଲରେ ଜଣେ ସହକାରୀ ଶିକ୍ଷକ ରୂପେ କାର୍ଯ୍ୟରେ ଯୋଗ ଦେଲି ।

ଯେଉଁ ହତା ଭିତରେ ସ୍କୁଲର ମୁଖ୍ୟ ଶିକ୍ଷାଭବନ ଓ କାର୍ଯ୍ୟାଳୟ ଅବସ୍ଥିତ ଥିଲା, ତାର ଅନ୍ୟ ନାମ 'ଗୋଲାପବାଗ' । ସେଇ ଘର ପୂର୍ବେ ଜଣେ ଶ୍ୱେତାଙ୍ଗ ହାକିମଙ୍କର କୋଠି ଥିଲା ବୋଲି ଶୁଣିଲି । ମୁଁ ଗଲାବେଳକୁ ଗୋଟିଏ ସୁଦ୍ଧା ଗୋଲାପ ଗଛ 'ଗୋଲାପବାଗ'ରେ ନ ଥିଲା, ଥିଲା କେବଳ ବହୁ ପୁରାତନ ଏକ ଅନନ୍ତ ନାଗେଶ୍ୱର ଗଛ । ଗହଳ ପଲ୍ଲବରେ ଆକାଶକୁ ଆଚ୍ଛନ୍ନ କରି ଧ୍ୟାନମଗ୍ନ ଯୋଗୀ ପରି ସେ ବିଶାଳ ବୃକ୍ଷଟି ସ୍କୁଲ ଆଗରେ ଠିଆ ହୋଇ ରହିଥାଏ । ବସନ୍ତର ଆଗମନରେ ତାର ପ୍ରକାଣ୍ଡ ଗଣ୍ଡିଟା ଆମୂଳଚୂଳ ମଣ୍ଡି ହୋଇଯାଏ ସୁରଭିତ ପୁଷ୍ପଗୁଚ୍ଛରେ । ସେ ଫୁଲର ଆକାର ମଧ୍ୟ ସେହିଭଳି ବିଚିତ୍ର । ଦେଖିଲେ ମନେ ହୁଏ, ଯେପରି ଅନନ୍ତ ସର୍ପ ଫୁଲର ଫଣା ବିସ୍ତାର କରି ଏକ ସୁକୋମଳ ଓଢ଼ଣୀରେ ନାଗେଶ୍ୱରର କମନୀୟ ରୂପଶ୍ରୀକୁ ଢାଙ୍କି ରଖିଛି ।

ସାହେବଙ୍କର ସେଇ ପୁରୁଣାକାଳିଆ କୋଠିଟି ସ୍କୁଲପାଇଁ ଯଥେଷ୍ଟ ନ ହେବାରୁ ପଶ୍ଚିମ ପଟକୁ ଦୁଇଦାଣ୍ଡି ନୂଆ ଘର ତିଆରି ହୋଇଥାଏ ସରଳ-ରେଖାକାରରେ । ତା ସାଙ୍ଗରେ ମିଶିଥାଏ ବୋର୍ଡିଂ ସ୍କୁଲ ଘରଟି । ସେଇଥିରେ ପଢ଼ୁଥାନ୍ତି ସମଗ୍ର ମୟୂରଭଞ୍ଜ ରାଜ୍ୟର ବିଭିନ୍ନ ପ୍ରାନ୍ତରୁ ଆସିଥିବା ପାୟ ଆଠଶହ ସରକ ଗ୍ରୁପ । ଗୋଟିଏ ଗୋଟିଏ କ୍ଲାସ ଗୁଡ଼ିଏ ଲେଖାଏଁ ସେକ୍ସନରେ ବିଭକ୍ତ ହୋଇଥାଏ । ଏହିପରି ଏକ ବିଦ୍ୟାଳୟରେ ମୋତେ ଭାଷାଶିକ୍ଷକ ରୂପେ କାର୍ଯ୍ୟ କରିବାକୁ ପଡ଼ିଲା ।

ହଷ୍ଟେଲର ନାମ ଫ୍ରେଜର ହଷ୍ଟେଲ । ସବୁ ସାହେବୀ ନାଁ ସେ କାଳରେ, କାରଣ ସେହିମାନେହିଁ ଥିଲେ ଆମ ଦେଶର ଶାସକ ଏବଂ ଧନ ଓ ଗୌରବର ଅଧିକାରୀ । ସେହି ହଷ୍ଟେଲରେ ପ୍ରଥମେ ଆଶ୍ରୟ ନେଇ ପୂର୍ଣ୍ଣ ଉତ୍ସାହରେ କାର୍ଯ୍ୟ ଆରମ୍ଭ କଲି । ସେତେବେଳେ ମାଟ୍ରିକ୍ୟୁଲେଶନ ଶ୍ରେଣୀରେ ବାଧ୍ୟତାମୂଳକ ସଂସ୍କୃତ ବଦଳରେ ଓଡ଼ିଆ ନେବାର ବିକଳ୍ପ ବ୍ୟବସ୍ଥା କଟ୍ଟକନ ପାଇଁ ପ୍ରବର୍ତ୍ତିତ ହୋଇଥିଲା । ମୁଁ ସେହି ଶ୍ରେଣୀରେ ଓଡ଼ିଆ ଓ ଅନ୍ୟ ଶ୍ରେଣୀରେ ଇଂରାଜୀ ପଢ଼ାଏ । ତେଣୁ ଗଦା ଗଦା ଖାତା ଘରକୁ ଆଣି ସଂଶୋଧନ କରିବାକୁ ପଡ଼େ । ସାଧାରଣତଃ ବେଳ ମିଳେ ନାହିଁ ଚିନ୍ତନ କରିବାକୁ । ସେ ଦିଗରେ ପ୍ରବୃତ୍ତି ମଧ୍ୟ ନ ଥାଏ ।

ବଣ୍ଡାଲ ମହାଶୟଙ୍କ ସମୟରେ ହାଇସ୍କୁଲରେ କେତେଜଣ ସୁଯୋଗ୍ୟ ଶିକ୍ଷକ ନିଯୁକ୍ତ ହେବା ଫଳରେ ସ୍କୁଲର ଦ୍ରୁତ ଉନ୍ନତି ସାଧିତ ହେଲା । ଯେଉଁ ଦୁଇଟି ଗଣିତ ଓ ଇତିହାସ ପଦ ଖାଲି ଥିଲା, ସେଥିରେ ମୋର ପ୍ରସ୍ତାବ ଅନୁସାରେ ସେ ଶ୍ରୀ କାହ୍ନୁଚରଣ ଦାସ ଓ ଶ୍ରୀ ମାଧବ ଚୌଧୁରୀଙ୍କୁ ଡକାଇ ରଖାଇବାର ବ୍ୟବସ୍ଥା କଲେ । କଟ୍ଟକନ ପାଇଁ ଶିକ୍ଷାଦାନ, କ୍ରୀଡ଼ାକସରତ, ସ୍କାଉଟିଂ ଓ ଅନ୍ୟାନ୍ୟ ପାଠ୍ୟେତର କାର୍ଯ୍ୟକ୍ରମରେ ନବଜୀବନର ସଞ୍ଚାର ଅନୁଭୂତ ହେଲା କିନ୍ତୁ ଫୁଲ ଭିତରେ କୀଟ ପ୍ରବେଶ କଲାପରି ତାଙ୍କ ଚରିତ୍ର ସମ୍ପର୍କରେ ଛାତ୍ର ଓ ଅଭିଭାବକ ମହଲରେ ଯେଉଁ ଅପବାଦ ରଟିତ ହେଲା, ତାହା ଅଚିରେ ତାଙ୍କର ସୁନାର ସଂସାରକୁ ଧୂଳିସାତ୍ କରିଦେଲା । ଏକେ ତ ସେ ମହାଶୟ ଅବିବାହିତ ଥିଲେ, ଦ୍ୱିତୀୟରେ ସେଠାକାର ଓଡ଼ିଆ-ବଙ୍ଗାଳୀ-ବିଦ୍ୱେଷ ତାଙ୍କର କୁତ୍ସାରଟନା ପାଇଁ ଅନୁକୂଳ ବାତାବରଣ ସୃଷ୍ଟି କଲା ।

ଯେ କୌଣସି ଗୋଷ୍ଠୀ, ଜାତି ବା ସମ୍ପ୍ରଦାୟଗତ ବିଦ୍ୱେଷ ଶିକ୍ଷାନୁଷ୍ଠାନର ସୁସ୍ଥ ବିକାଶ ପକ୍ଷରେ ସବୁଠାରୁ ବଳି କ୍ଷତିକାରକ । ଶିକ୍ଷକ ଓ ଛାତ୍ରମାନଙ୍କ ମଧ୍ୟରେ ଥିବା ପବିତ୍ର ସମ୍ପର୍କ ଏହାଦ୍ୱାରା ନଷ୍ଟ ହୋଇଯାଏ । ଦୁର୍ଭାଗ୍ୟର କଥା, ମୁଁ ଯିବାର ଅଳ୍ପ କେତେମାସ ପରେ ସ୍କୁଲ ଇତିହାସର ଏହି ଅଶୋଭନୀୟ ଅଧ୍ୟାୟ ଉନ୍ମୋଚିତ ହେଲା । ହେଡ଼ମାଷ୍ଟରଙ୍କ ବିରୋଧରେ ଯେଉଁ ବ୍ୟାପକ ଷଡ଼ଯନ୍ତ୍ର ଚାଲିଲା, ସେଥିରେ କେତେକ ଶିକ୍ଷକ ଓ ଛାତ୍ର ମଧ୍ୟ ଜଡ଼ିତ ହୋଇପଡ଼ିଲେ । ସଙ୍ଗେ ସଙ୍ଗେ ତାର ପ୍ରତିକ୍ରିୟା ଦେଖାଦେଲା ସ୍କୁଲର ବାୟୁମଣ୍ଡଳରେ । ଏକ ଅଜଣା ଆତଙ୍କରେ ଛାତ୍ର ଓ ଶିକ୍ଷକମାନେ ଦିନ କାଟିବାରେ ଲାଗିଲେ ।

ଅଳ୍ପଦିନ ଭିତରେ ସେଠାରେ ଯେଉଁ କେତେକ ବିଶିଷ୍ଟ ଓଡ଼ିଆ ଭଦ୍ର ବ୍ୟକ୍ତିଙ୍କ ସଙ୍ଗେ ମୋର ପରିଚୟ ହୋଇଥିଲା, ସେମାନଙ୍କ ମଧ୍ୟରେ ଶ୍ରେଷ୍ଠ ଉତ୍କଳ ସ୍ୱର୍ଗୀୟ ବିଦ୍ୟାସିଂହ ପାଣିଗ୍ରାହୀ ଏବଂ ଇଂଜିନିୟର ସ୍ୱର୍ଗତ ଅର୍ଜୁନଚନ୍ଦ୍ର ଭୂୟାଁଙ୍କ ନାମ

ଉଲ୍ଲେଖଯୋଗ୍ୟ । ଉଭୟଙ୍କର ପିଲାମାନେ ହାଇସ୍କୁଲରେ ପଢୁଥିଲେ ଏବଂ ସେମାନଙ୍କ ପଢ଼ାପଢ଼ି ସମ୍ପର୍କରେ ଆଲୋଚନା କରିବାପାଇଁ ମୁଁ ମଝେ ମଝେ ସେମାନଙ୍କ ଘରକୁ ଯାଉଥିଲି । ଅର୍ଜୁନବାବୁ ମୟୂରଭଞ୍ଜର ଆଦର୍ଶ ନରପତି ଶ୍ରୀରାମଚନ୍ଦ୍ର ଭଞ୍ଜଦେଓଙ୍କ ସମୟରୁ ସେଠାରେ ଚାକିରି ଆରମ୍ଭ କରିଥିଲେ । ତାଙ୍କଠାରୁ ମୁଁ ସ୍ୱର୍ଗୀୟ ମହାରାଜାଙ୍କ ସରଳତା ବିଷୟରେ ଏହି କଥାଟି ଶୁଣିଥିଲି ।

ଥରେ ବିହାର ଓଡ଼ିଶା ଲାଟସାହେବଙ୍କର ବାରିପଦା ଆସିବାର ଥାଏ । ସେଥିପାଇଁ ସରକାରୀ କୋଠାବାଡ଼ି ଓ ରାଜବାଟୀର ଘରଗୁଡ଼ିକୁ ମରାମତି ଏବଂ ପରିଷ୍କାର କରାଯାଉଥାଏ । ରାଜବାଟୀର ଗୋଟିଏ ସ୍ଥାନରେ ଖଣ୍ଡିଏ ବାଉଁଶ ତାଟି ବା ଚାଞ୍ଚଡ଼ା ଲାଗିଥିଲା । ସେଇଟିକୁ ହଟାଇଦେଇ ସେହି ସ୍ଥାନରେ ଇଟାର ଅଧାକାନ୍ଥଟିଏ ତୋଳାଇବାକୁ ଇଂଜିନିୟର ଭୂୟାଁ ସାହେବ ପ୍ରସ୍ତାବ ଦେବାରୁ ମହାରାଜା କହିଥିଲେ, "ନା ନା, ସେ ତାଟି ସେହିପରି ଥାଉ । ଯଦି ପାରନ୍ତି, ତା ଉପରେ ଚୂନ ଟିକିଏ ବୋଳିଦିଅନ୍ତୁ । ଇଟାର କାନ୍ଥଟି ଗଢ଼ିବାରେ ଯାହା ଖର୍ଚ୍ଚ ହେବ, ସେଥିରେ ମୁଁ ଗୋଟିଏ ସ୍କୁଲ ବସାଇ ପାରିବି ।"

ମହାରାଜାଙ୍କର ଗୁଣଗ୍ରାମ ବର୍ଣ୍ଣନା କରିବାର ସ୍ଥାନ ଏ ନୁହେଁ । ତାଙ୍କପରି ଗୁଣଗ୍ରାହୀ ପ୍ରଜାବତ୍ସଳ ରାଜା ଖୁବ୍ କମ୍ ଦେଖାଯାଆନ୍ତି । 'ଗୁଣ ଥିଲେ ଗୁଣିଆ' । ସେଇଥିପାଇଁ ସେ ଉତ୍କଳମଣି ଗୋପବନ୍ଧୁଙ୍କୁ ଷ୍ଟେଟର ଓକିଲରୂପେ ଏବଂ ଅର୍ଜୁନ ଭୂୟାଁଙ୍କୁ ଇଂଜିନିୟର ରୂପେ ବାଛି ନେଇଥିଲେ । ଅର୍ଜୁନବାବୁଙ୍କପରି ଅମାୟିକ ଲୋକ ମୁଁ ଖୁବ୍ କମ୍ ଦେଖିଛି ।

ଓଡ଼ିଶାର ସୁପରିଚିତ କବି ଓ ସାହିତ୍ୟିକ ଶ୍ରୀ କାଳନ୍ଦୀଚରଣ ପାଣିଗ୍ରାହୀଙ୍କ ଅଗ୍ରଜ ବିଦ୍ୟାସିନ୍ଧୁବାବୁ ମଧ୍ୟ ସେହିପରି ଜଣେ ମିଷ୍ଟଭାଷୀ ନିରାଡ଼ମ୍ବର ବ୍ୟକ୍ତି ଥିଲେ । ବିହୁ ଘଟଣାରୁ ମୁଁ ତାଙ୍କର ଖାଣ୍ଟି ଓଡ଼ିଆ ପ୍ରୀତିର ପରିଚୟ ପାଇଥିଲି । ହାଇସ୍କୁଲର ଓଡ଼ିଆ ହେଡ଼ମାଷ୍ଟରଙ୍କ ଦୁର୍ନାମ ରଟନାରେ ସେ ଯେତେଦୂର ବ୍ୟଥିତ ହୋଇଥିଲେ, ତାହା ମୁଁ ବିଶେଷଭାବରେ ଲକ୍ଷ୍ୟ କରିଥିଲି ।

'ସୂତା ମାଜିଲେ ସରୁ, କଥା ମାଜିଲେ ମୋଟ' । ଶେଷରେ ବିଶ୍ୱାଳଙ୍କ ଆଚରଣ ସମ୍ପର୍କରେ କେତେକ ଅଭିଯୋଗ ବାଧ୍ୟବାଧକ ଭାବରେ ଆଣିତ କରାଯିବା ପରେ ତାହାର ବିଚାର ମୁକ୍ତ ଅଦାଲତରେ ନ ହୋଇ କମିଶନରଙ୍କ ନିଜ ପ୍ରକୋଷ୍ଠ ମଧ୍ୟରେ କରାଯିବାର ସ୍ଥିର ହେଲା ଏବଂ ସେ ମକଦ୍ଦମାରେ ମୋ ସମେତ କେତେକ ଶିକ୍ଷକଙ୍କୁ ମଧ୍ୟ ସାକ୍ଷ୍ୟ ଦେବାପାଇଁ ଆଦେଶ ହେଲା । ବିଶ୍ୱାଳ ମହାଶୟ କୌଣସି ଓକିଲ ନ ଦେଇ ନିଜେ ସାକ୍ଷୀମାନଙ୍କୁ ଜେରା କଲେ । ଏହି ଘଟଣାରେ ମୋତେ ଏକ ଅପ୍ରୀତିକର ପରିସ୍ଥିତିର ସମ୍ମୁଖୀନ ହେବାକୁ ପଡ଼ିଥିଲା । ମୁଁ ଭଲରୂପେ ଜାଣିଥିଲି

ସେ ସତ କହିଲେ କେତେକ କଥା ହେଡ଼ମାଷ୍ଟରଙ୍କ ବିରୋଧରେ ଯାଇପାରେ, ଅଥଚ ମୋର ହିତକାଂକ୍ଷୀ ସେଇ ଭଦ୍ରବ୍ୟକ୍ତିଙ୍କ ବିପକ୍ଷରେ କିଛି କହିବା ବା କରିବାକୁ ଗିବାବେଳେ ମୋର ବିବେକ ମୋତେ ଦଂଶନ କରୁଥାଏ ।

କିନ୍ତୁ ଯାହା ଘଟୁ ପଛକେ, ମୁଁ ସତ୍ୟର ଅପଲାପ କରିବାକୁ ଇଚ୍ଛା କଲି ନାହିଁ । 'ସତ କହିବାକୁ କିଆଁ ଡରିବି, ସତ କହି ପଛେ ମଲେ ମରିବି'—ଏହି ନୀତିକୁ ଅନୁସରଣ କରି ମୁଁ ସାକ୍ଷ୍ୟ ଦେଇ ଆସିଲି ।

ଏହି ବିଗୃରକାଳ ମଧ୍ୟରେ ସ୍କୁଲର ବାୟୁମଣ୍ଡଳରେ ଯେଉଁ ଆତଙ୍କ ଓ ଅନିଶ୍ଚିତତା ଦେଖାଦେଇଥିଲା, ତିନି ଚ୍ୟାରିମାସ ପରେ ତାର ଅବସାନ ଘଟିଲା । ଶ୍ରୀ ବର୍ଣ୍ଣାଳ ବିଗ୍ୱରରେ ଦୋଷୀ ସାବ୍ୟସ୍ତ ହେଲେ ଏବଂ ତାଙ୍କୁ ଚାକିରିରୁ ବିଦାୟ ନେବାକୁ ହେଲା ।

ଏହି ଘଟଣାର ଅଳ୍ପଦିନ ପରେ ହାଇସ୍କୁଲର ବଙ୍ଗଳା ପଣ୍ଡିତେ ମୋତେ ଦିନେ କହିଲେ, "ଜଜ୍ ମହାଶୟ ଆପଣଙ୍କ ସ୍ପଷ୍ଟବାଦିତାରେ ଅତିଶୟ ପ୍ରୀତ ହୋଇ-ଅଛନ୍ତି । ତାଙ୍କ କନ୍ୟାର ଗୃହଶିକ୍ଷକ ରୂପେ ସେ ଆପଣଙ୍କୁ ନିଯୁକ୍ତ କରିବାକୁ ଚାହାନ୍ତି । ଆପଣଙ୍କୁ ସୁବିଧା ହେବ କି ?" ଜଜ୍ ମହାଶୟ ଜଣେ ବଙ୍ଗୀୟ ଭଦ୍ରବ୍ୟକ୍ତି ଥିଲେ । ନାନା ଦିଗରୁ ବିଚାର କରି ମୁଁ ସଙ୍ଗେ ସଙ୍ଗେ ବଙ୍ଗଳା ପଣ୍ଡିତଙ୍କୁ ବିନୀତ ଭାବରେ ମୋର ଅକ୍ଷମତା ଜଣାଇଦେଲି ।

## ଖଣ୍ଡେଇତା ବନ୍ୟା

୧୯୩୩ର ପ୍ରଳୟଙ୍କରୀ ବନ୍ୟା କଥା ଭାବିଲେ ଏବେ ମଧ୍ୟ ଦେହ ଶିହରି ଉଠେ । କଟକ ଜିଲ୍ଲାର ଖଣ୍ଡେଇତା ନାମକ ସ୍ଥାନରେ ଘାଇ ଭାଙ୍ଗିବା ଫଳରେ କଟକ ଓ ପୁରୀ ଜିଲ୍ଲାର କେତେକ ଉପକୂଳବର୍ତ୍ତୀ ଭୂଭାଗ ଜଳାର୍ଣ୍ଣବ ହୋଇଗଲା ! ଆମ ଘର ସେଇ ଅଞ୍ଚଳରେ । ମୁଁ ଖବରକାଗଜରୁ ଯାହା ସମ୍ବାଦ ପାଇଲି, ସେଥିରେ ବିଚଳିତ ହୋଇପଡ଼ିଲି । ପ୍ରାୟ କୋଡ଼ିଏ ଦିନ କାଳ ଗ୍ରାମରୁ କୌଣସି ସମ୍ବାଦ ବା ଚିଠିପତ୍ର ପାଇଲି ନାହିଁ । ଛୁଟି ନେଇ କଟକ ଆସିଲି । ସ୍ୱରାଜ୍ୟ ଆଶ୍ରମକୁ ଯାଇ ଖବର ସଂଗ୍ରହ କଲି । କଥଆଲୀ ରାସ୍ତା କଥା ଦୂରେ ଥାଉ, ଜଗନ୍ନାଥ ରାସ୍ତା ମଧ୍ୟ ତେଲଙ୍ଗାପେଣ୍ଠରେ ଭାଙ୍ଗି ଯାତାୟାତର ପଥ ବିଚ୍ଛିନ୍ନ ହୋଇଛି ବୋଲି ଶୁଣିଲି । କେବଳ ଡଙ୍ଗା ସାହାଯ୍ୟରେ ସ୍ୱେଚ୍ଛାସେବକ ଦଳ ରିଲିଫ୍ ଚୁଡ଼ା ଗୁଡ଼ କଳା ପ୍ରଭୃତି ନେଇ ବନ୍ୟାଞ୍ଚଳକୁ ଯାଉଥାନ୍ତି । ମୁଁ କିଛି ଚୁଡ଼ା ଗୁଡ଼ କଳା ଆମ ଅଞ୍ଚଳକୁ ଡଙ୍ଗାରେ ପଠାଇବାର ବ୍ୟବସ୍ଥା କରି ସଡ଼କ ରାସ୍ତାରେ ସାଇକେଲଟି ଧରି ଗାଁକୁ ଗଲି । ତେଲଙ୍ଗାପେଣ୍ଠରେ ପ୍ରାୟ ମାଇଲିଏ ବାଟ ପାଣିରେ ପଶି ଯିବାକୁ ହେଲା । କେଉଁଠି ଗୋଡ଼ଏ, କେଉଁଠି ବା ବେକେ ପାଣି । ଜଣେ ଲୋକ ମୋ ସାଇକେଲଟିକୁ ଟେକି ଟେକି ନେଉଥାଏ । କିନ୍ତୁ

ଅସୁବିଧା ଅତିକ୍ରମ କରି ସନ୍ଧ୍ୟାବେଳକୁ ଗାଁରେ ପହଞ୍ଚିଲି । ଦେଖିଲି, ଆମର ଠାକୁର ଘରଟିକୁ ଛାଡ଼ି ଅନ୍ୟ ସମସ୍ତ ଘରର ଚୂଳ ମାଟିରେ ମିଶିଯାଇଛି । ଠାକୁର ଘରଟି ପକ୍କା ଥିବାରୁ ରହି ଯାଇଥିଲା, କିନ୍ତୁ ତା ଭିତରେ ଦୁଇଦିନ ପର୍ଯ୍ୟନ୍ତ ପାଣିର ସୁଅ ଛୁଟିଥିଲା । ସେହି କୋଠାଘରର ଛାତ ଉପରେ ଆମ ପରିବାରର ଲୋକମାନେ ଦୁଇ ଦିନ ଦୁଇ ରାତି କଟାଇଥିଲେ ।

ବନ୍ୟାର ମର୍ମନ୍ତୁଦ କାହାଣୀ ଲୋକମାନଙ୍କଠାରୁ ଶୁଣିଲି ଓ ବୁଲି ବୁଲି ସେ ଭୟାବହ ଧ୍ୱଂସଲୀଳା ସ୍ୱଚକ୍ଷୁରେ ଦେଖିଲି । ଆମ ଗ୍ରାମର ଜଣେ ବାଳକ ତାର ବୋହୂକୁ ଡଙ୍ଗାରେ ବସାଇ ନିରାପଦ ସ୍ଥାନକୁ ନେଇ ଯାଉଥିବାବେଳେ ପ୍ରଖର ସ୍ରୋତରେ କପାଳ ଡଙ୍ଗା ଓଲଟି ପଡ଼ି ତାର ବୋହୂଟି ଭାସିଗଲା ଏବଂ ସେ ଗୋଟିଏ ତାଳଗଛର ପତ୍ରକୁ ଧରି ରକ୍ଷା ପାଇଲା, ତାହା ଶୁଣି ଧୈର୍ଯ୍ୟ ଧରି ପାରିଲି ନାହିଁ । ନିକଟବର୍ତ୍ତୀ ଓଲଟପୁର ନଙ୍ଗଳିକୁ ଗଲି, ତା ଭିତରେ ଥିବା ହରିଜନ ବସ୍ତି ଦେଖିବା ପାଇଁ । ସେଠାରେ କେହି ଜଣେ ସୁଦ୍ଧା ଲୋକ ନ ଥିଲେ । ପାଦଚିହ୍ନ ଅନୁସରଣ କରି ଗୋଟିଏ ଉଚ୍ଚ ସ୍ଥାନକୁ ଯାଇ ସେହି ଲୋକମାନଙ୍କୁ ଭେଟିଲି । ମୋତେ ଦେଖି ସେମାନେ ଅତ୍ୟନ୍ତ ଆଶାନ୍ୱିତ ହେଲେ ଏବଂ ସେମାନଙ୍କ ଦୁର୍ଦ୍ଦଶାର କାହାଣୀ ବର୍ଣ୍ଣନା କଲେ । ଲୁଣ ଟିକିଏ ନ ପାଇବାରୁ ସେମାନଙ୍କ ହାତଗୋଡ଼ କପର ଫୁଲି ଯାଇଥିଲା, ମୋତେ ଦେଖାଇ କାତର ଭାବରେ ସାହାଯ୍ୟ ପ୍ରାର୍ଥନା କଲେ । ମୁଁ ସେମାନଙ୍କୁ ଆଶ୍ୱାସନା ଦେଇ ରିଲିଫ୍ ଗୃହୀଳ ଡଙ୍ଗା ପାଖକୁ ତୁରନ୍ତ ଯିବା ପାଇଁ ପରାମର୍ଶ ଦେଲି ।

ଗ୍ରାମରେ କିଛିଦିନ ରହି ରିଲିଫ୍ କାର୍ଯ୍ୟରେ ସହଯୋଗ କଲି । ଜିଲ୍ଲାବୋର୍ଡ଼ରୁ ଏବଂ ବଦାନ୍ୟ ବ୍ୟକ୍ତିଙ୍କଠାରୁ ଔଷଧପତ୍ର ନେଇ ଲୋକଙ୍କ ମଧ୍ୟରେ ବିତରଣ କଲି । ଏହି ସମୟରେ ଆମ ଗ୍ରାମରେ ବର୍ତ୍ତମାନ ଯେଉଁ ବିଦ୍ୟାଳୟ ଗୃହଟି ଅଛି, ସାହାଯ୍ୟପ୍ରାପ୍ତ ଲୋକଙ୍କ ଶ୍ରମରେ ତାର ନିର୍ମାଣ କାର୍ଯ୍ୟ ଆରମ୍ଭ କରାଇଥିଲି ।

ଗ୍ରାମର ଶିକ୍ଷା, ସ୍ୱାସ୍ଥ୍ୟ ଓ ରାସ୍ତାଘାଟ ପ୍ରଭୃତିର ଉନ୍ନତିକଳ୍ପେ ଉତ୍ସାହୀ ଯୁବକ-ମାନଙ୍କୁ ଏକତ୍ର କରାଇ 'ନାରାୟଣ ସମିତି' ନାମରେ ମୁଁ ଗୋଟିଏ ସଂଗଠନ ଆରମ୍ଭ କଲି । ପରିଷଦ୍‌ର ସାହାଯ୍ୟ ପାଣ୍ଠି ସୂତ୍ରରୁ ପ୍ରାୟ ଏକଶହ ଟଙ୍କା ପର୍ଯ୍ୟନ୍ତ ଚାନ୍ଦା ସଂଗୃହୀତ ହୋଇଥିଲା । ବହୁଦିନ ପର୍ଯ୍ୟନ୍ତ ଏହି ସମିତି ଜରିଆରେ ନାନାବିଧ ପଲ୍ଲୀମଙ୍ଗଳ କାର୍ଯ୍ୟ କରାଯାଇଥିଲା ।

ଗ୍ରାମରେ କିଛିଦିନ ରହି ବାରିପଦା ଫେରି ଆସିଲି । ବନ୍ୟାକ୍ଳିଷ୍ଟ ଲୋକଙ୍କ ଦୁର୍ଦ୍ଦଶା ବର୍ଣ୍ଣନା କରି ଗୋଟିଏ ଗୀତ ରଚନା କଲି ଏବଂ ସ୍କୁଲ ଛାତ୍ରଙ୍କ ସାହାଯ୍ୟରେ ବୁଲି ବୁଲି ଲୁଗା ଚାଉଳ ଓ ଅର୍ଥ ସଂଗ୍ରହ କରି କଟକ ପଠାଇଲି । ସ୍କୁଲର ଛାତ୍ରମାନେ ଯେତେବେଳେ 'ଦେଶ ଲାଗି ଆଜି ତୁମରି ଦୁଆରେ ଭିକ୍ଷା ମାଗୁଅଛୁ ଆସି···' ଗୀତଟି

ଗାଇ ଦ୍ୱାର ଦ୍ୱାର ବୁଲି ସାହାଯ୍ୟ ସଂଗ୍ରହ କରୁଥିଲେ, ସେତେବେଳେ ସେମାନଙ୍କ-ଠାରେ ଯେଉଁ ଉତ୍ସାହ ଉନ୍ମାଦନା ଦେଖିଥିଲି, ଦାତା ଓ ଗୃହିଣୀମାନେ ସାହାଯ୍ୟ ଦେବା ପାଇଁ ଯେଉଁ ଆନ୍ତରିକ ବ୍ୟାକୁଳତା ଦେଖାଇଥିଲେ, ତାହା କଦାପି ଭୁଲି ପାରିବ ନାହିଁ ।

ଥରେ ବାରିପଦାର ଆମେ କେତେଜଣ ଲୋକ ଗୋଟିଏ ବସ୍ ଭଡ଼ା କରି ଶିମିଳିପାଳ ଜଙ୍ଗଲରେ ହାତୀଧରା ଦେଖିବାକୁ ସପରିବାର ଯାଇଥିଲୁ । ଦୁର୍ଯୋଗକୁ ଅନ୍ୟ ଗୋଟିଏ ବସ୍ ବାଟରେ ଏକ ଶୋଚନୀୟ ଦୁର୍ଘଟଣାର ସମ୍ମୁଖୀନ ହୋଇ ରାସ୍ତାରୁ ଗଡ଼ି ତଳେ ଲେଉଟି ପଡ଼ିଥିଲା । ଯାତ୍ରୀମାନେ ରକ୍ତାକ୍ତ ଅବସ୍ଥାରେ ପଡ଼ି ଛଟପଟ ହେଉଥିଲେ । ସେ ମର୍ମନ୍ତୁଦ ଦୃଶ୍ୟ ସ୍ୱଚକ୍ଷୁରେ ଦେଖି ଆଉ ଆଗେଇବାକୁ ଇଚ୍ଛା ହେଲାନାହିଁ । ନିକଟବର୍ତ୍ତୀ ଗୋଟିଏ ଡାକବଙ୍ଗଳାରେ ଆମକୁ ଓହ୍ଲାଇଦେଇ ଆମ ବସ୍‌ଟି ଆହତ ବ୍ୟକ୍ତିମାନଙ୍କୁ ଡାକ୍ତରଖାନାକୁ ନେବାକୁ ଚାଲିଗଲା । ଡାକ-ବଙ୍ଗଳାଠାରୁ ଅଳ୍ପ ଦୂରରେ ଧରାହୋଇ ଆସିଥିବା ହାତୀମାନେ ରହିଥିବାର ଶୁଣି ମୁଁ କେତେଜଣ ବନ୍ଧୁଙ୍କ ସହ ସେଠାକୁ ଯାଇଥିଲି । ବଣରୁ ସଦ୍ୟଧୃତ ସେଇ ଅତିକାୟ ଜୀବଗୁଡ଼ିକ ଦୁଇ ତିନୋଟି ଶକ୍ତ ରଜ୍ଜୁଦ୍ୱାରା ଗଛ ଦେହରେ ବନ୍ଧା ହୋଇଥାନ୍ତି । ମୁକ୍ତ ଜୀବନକୁ ଫେରି ଯିବାପାଇଁ ସେମାନେ ଯେପରି ଉତ୍କଣ୍ଠିତ ହେଉଥାନ୍ତି, ତାହା ଦେଖି ମୋ ମନରେ ଯେତିକି ଦୟା ଆସିଲା, ସେତିକି ଭୟ ମଧ୍ୟ ଜାତ ହେଲା । ଯଦି ଦଉଡ଼ି ଛିଡ଼ିଯାଏ, ତେବେ ଆମପରି ଦର୍ଶକମାନଙ୍କର ଅବସ୍ଥା କଣ ହେବ ଭାବୁଥାଏ । ବେଶି ସମୟ ସେଠାରେ ନ ରହି ଆମ୍ଭେମାନେ ଚାଲିଆସିଲୁ ।

'ସହକାର'ର ସମ୍ପାଦକ ସ୍ୱର୍ଗୀୟ ବାଳକୃଷ୍ଣ କରଙ୍କଠାରୁ ଚିଠି ପାଇ ମୁଁ ଥରେ ତାଙ୍କୁ କଟକରେ ଦେଖା କରିଥିଲି । ପୂର୍ବେ 'ସମାଜ' ପ୍ରେସ ଯେଉଁଠାରେ ଥିଲା, ସେଠାରୁ ଅଳ୍ପ ଦୂରବର୍ତ୍ତୀ ଗୋଟିଏ ବସାରେ ସବ୍‌ରେଜିଷ୍ଟ୍ରାର ଜଗନ୍ନାଥଦାସବାବୁଙ୍କ ରୋଗଶଯ୍ୟା ପାଖରେ ସେ ବସିଥିଲେ । ଉଭୟଙ୍କ ଉଦ୍ୟମରେ ସାଲେପୁର ହାଇସ୍କୁଲଟି ପ୍ରତିଷ୍ଠିତ ହୋଇଥିଲା । ଉକ୍ତ ସ୍କୁଲକୁ ମୋତେ ହେଡ୍‌ମାଷ୍ଟର କରି ନେବାପାଇଁ ବାଳକୃଷ୍ଣ ବାବୁ ଇଚ୍ଛା ପ୍ରକାଶ କରିଥିଲେ । କିନ୍ତୁ ବାରିପଦା ହାଇସ୍କୁଲ ଛାଡ଼ି ସେଠାକୁ ଯିବାପାଇଁ ମୁଁ ରାଜି ହେଲିନାହିଁ । ତାପରେ ସେ ମୋତେ ପଚାରିଲେ, "ମଧୁସୂଦନ ବିଶ୍ୱାଳଙ୍କୁ ସେଠାକୁ ନେଲେ କିପରି ହୁଅନ୍ତା ? ସେ ତ ବାରିପଦାରେ ଥିଲେ, ଆପଣ ତାଙ୍କ କାର୍ଯ୍ୟକଳାପ ଭଲରୂପେ ଜାଣିଥିବେ ।" ମୁଁ ଶ୍ରୀ ବିଶ୍ୱାଳଙ୍କ ସମ୍ବନ୍ଧରେ ଯେତିକି ଜାଣିଥିଲି କହି ତାଙ୍କଠାରୁ ବିଦାୟ ନେଲି ।

୧୯୩୪ ମସିହାରେ ମୋ ପିତାମହଙ୍କର ମୃତ୍ୟୁ ହେଲା । ତାଙ୍କ ଶୁଦ୍ଧିକ୍ରିୟାରେ ଯୋଗ ଦେବା ନିମନ୍ତେ ମୁଁ ଗ୍ରାମକୁ ଆସିଥିଲି । ମୃତ୍ୟୁର ଦଶମ ଦିନ ରାତିରେ ଆମନ୍ତ୍ରିତ ବ୍ରାହ୍ମଣମାନଙ୍କ ସଭାରେ ମୁଁ ଏକ ବକ୍ତୃତା ଦେଇଥିଲି । ତାହା ଶୁଣି

ପ୍ରାଚୀନପନ୍ଥୀମାନେ ମୋ ଉପରେ ଖଡ଼୍‌ଗହସ୍ତ ହୋଇ ପଡ଼ିଥିଲେ । ମୁଁ କହିଥିଲି— ସାଧାରଣତଃ ଏ ଉପଲକ୍ଷରେ 'ସଭା' କହିଲେ କେବଳ 'ଭୋଜନ'କୁ ହିଁ ଆଜିକାଲି ବୁଝାଉଅଛି । ବ୍ରାହ୍ମଣମାନେ 'ସଭା'ରେ ବସିଛନ୍ତି ଅର୍ଥ ଭୋଜନ କରୁଛନ୍ତି । ମୁଁ ଏହାର ତୀବ୍ର ବିରୋଧ କରି କହିଲି ଯେ, ଏ 'ସଭା' ଅର୍ଥ ଶୋକସଭା । ପୂର୍ବରୁ ପ୍ରଚଳିତ ରୀତିନୀତିର ଅସଲ ଉଦ୍ଦେଶ୍ୟ ନ ବୁଝି ଆମ୍ଭେମାନେ ନିଜର ସୁବିଧାନୁଯାୟୀ ତାହାର ଅର୍ଥ କରି କାର୍ଯ୍ୟ କରୁଥାଉଁ । ଯେଉଁ ବାନ୍ଧବାନ୍ଧବ ବା ଭଦ୍ରବ୍ୟକ୍ତିମାନେ ଏ ଦିନ ଆସନ୍ତି, ସେମାନେ ମୃତ ବ୍ୟକ୍ତିର ଗୁଣ କୀର୍ତ୍ତନ କରି ଶୋକସନ୍ତପ୍ତ ପରିବାରକୁ ସାନ୍ତ୍ୱନା ଦେବାପାଇଁ ଆସିଥାନ୍ତି । ଏ ସବୁ କିଛି ନ କରି ବା ମୃତ ବ୍ୟକ୍ତିର ସ୍ମୃତିରକ୍ଷା ଉଦ୍ଦେଶ୍ୟରେ କୌଣସି ବ୍ୟବସ୍ଥା ନ କରି, କେବଳ ଭୋଜନ କର୍ମଟି ବଢ଼ାଇ ଦେଇ 'ସଭା'ର କାର୍ଯ୍ୟ ଶେଷ କରିବା କଣ ଉଚିତ ?

ବ୍ରାହ୍ମଣମାନଙ୍କର ଏ ଭୋଜନଲିପ୍ସା ବିରୋଧରେ ମୋର ବିଷୋଦ୍‌ଗାର କରିବାର ଅନ୍ୟ ଏକ କାରଣ ଥିଲା । ଅଳ୍ପଦିନ ପୂର୍ବେ ଆମ ଗ୍ରାମର ଜଣେ ଗରିବ ବୃଦ୍ଧୀ ମରିଯାଇଥିଲା । ସବୁ ବ୍ରାହ୍ମଣଙ୍କୁ ଡାକି ଖାଇବାକୁ ଦେବାକୁ ତାର ସମ୍ବଳ ନ ଥିଲା । ସେ କଥା କରିବାକୁ ହେଲେ ତାକୁ ଋଣ କରିବାକୁ ପଡ଼ିବ କିମ୍ବା ଭିହବାଡ଼ି ଖଣ୍ଡ ବନ୍ଧାଛନ୍ଦା ଦେବାକୁ ହେବ । ଏହା ଜାଣି ସୁଦ୍ଧା ଆମ ଗ୍ରାମର ପୁରୋହିତମାନେ ତାକୁ ଏକ ପୂର୍ଣ୍ଣାଙ୍ଗ ବ୍ରାହ୍ମଣ ଭୋଜନ କରାଇବାକୁ ବାଧ କରିଥିଲେ । ମୁଁ ତା'ଙ୍କଠାରୁ ଏହା ଶୁଣି ମନେ ମନେ ଉତ୍ତକ୍ଷିପ୍ତ ହୋଇ ପଡ଼ିଥିଲି । ତେଣୁ ସେଦିନ ଆମନ୍ତ୍ରିତ ବ୍ରାହ୍ମଣମାନଙ୍କୁ ମୋ ମନର ପ୍ରତିକ୍ରିୟା ଜଣାଇବାର ସୁବିଧା ପାଇ ଉଲ୍ଲିଖିତ କଥା-ଗୁଡ଼ିକ କହିଥିଲି । ପରେ ଶୁଣିଲି, ରକ୍ଷଣଶୀଳ ବ୍ରାହ୍ମଣମାନେ ମୋ ଉପରେ ଅତ୍ୟନ୍ତ ବିରକ୍ତ ହୋଇଥିଲେ । ମୁଁ ନିଜେ ବ୍ରାହ୍ମଣ ହୋଇ ବ୍ରାହ୍ମଣମାନଙ୍କୁ ସମାଲୋଚନା କରିବି, ଏ କଥା ସେମାନେ ସ୍ୱପ୍ନରେ ସୁଦ୍ଧା ଭାବି ନ ଥିଲେ ।

ବାପାଙ୍କ ଶୁଦ୍ଧିକାର୍ଯ୍ୟ ସାରି ବାରିପଦା ଗଲି । ବିଶ୍ବାଳଙ୍କ ବିଦାୟ ପରେ ଲାଲ ହଂସରାଜ ନାମକ ଜଣେ ପଞ୍ଜାବୀ ଭଦ୍ରବ୍ୟକ୍ତି ୧୯୩୫ରେ ହାଇସ୍କୁଲର ହେଡ଼ମାଷ୍ଟର ନିଯୁକ୍ତ ହେଲେ । ସେ ମିଲିଟାରୀ କାଇଦାରେ ଶାସନ କରିବାକୁ ଆରମ୍ଭ କଲେ, ତେଣୁ ଲୋକପ୍ରିୟ ହୋଇପାରିଲେ ନାହିଁ । ଅଳ୍ପ କେତେମାସ ପରେ ତାଙ୍କୁ ବିଦାୟ ନେବାକୁ ହେଲା ।

ତାଙ୍କ ପରେ ଖୋର୍ଦ୍ଧା ହାଇସ୍କୁଲର ପ୍ରବୀଣ ହେଡ଼ମାଷ୍ଟର ବାଙ୍କନିଧି ପଟ୍ଟନାୟକ ସ୍କୁଲର ଦାୟିତ୍ୱ ଗ୍ରହଣ କଲେ । ସେ ତାଙ୍କ ପୂର୍ବ ଚାକିରିରୁ ଏକ ବର୍ଷ ଛୁଟି ନେଇ ବାରିପଦା ଯାଇଥିଲେ । କେତେକ କାରଣରୁ ତାଙ୍କୁ ସେ ସ୍ଥାନ ସୁଖ ନ ଲାଗିବାରୁ ସେ ବର୍ଷକ ପରେ ଇସ୍ତଫା ଦେଇ ତାଙ୍କ ପୂର୍ବ ସ୍ଥାନକୁ ଫେରିଗଲେ ।

ପରିଶେଷରେ ଢେଙ୍କାନାଳରେ ବହୁଦିନ ହେଡ୍‌ମାଷ୍ଟରରୂପେ କାର୍ଯ୍ୟ କରିଥିବା ରାଜେନ୍ଦ୍ରଲାଲ ଦତ୍ତଙ୍କୁ ବାରିପଦା ହାଇସ୍କୁଲର ହେଡ୍‌ମାଷ୍ଟର କରି ଅଣାଗଲା ।

ଷ୍ଟେଟ୍‌ର ଦେଓ୍ୱାନ ପି. କେ. ସେନ୍‌ଙ୍କ କାର୍ଯ୍ୟକାଳ ପୂରିସିବାରୁ ସେ ବିଦାୟ ନେଲେ ଏବଂ ତାଙ୍କ ସ୍ଥାନରେ କ୍ଷିତିଶଚନ୍ଦ୍ର ନିୟୋଗୀ ନୂତନ ଦେଓ୍ୱାନ ନିଯୁକ୍ତ ହେଲେ । ଏ ଉଭୟେ ଶାସନ କାର୍ଯ୍ୟରେ ସୁଦକ୍ଷ ଥିବାରୁ ମହାରାଜା ପ୍ରତାପଚନ୍ଦ୍ରଙ୍କୁ ସାଧାରଣତଃ କୌଣସି ଶାସନ ସଂକ୍ରାନ୍ତ ବ୍ୟାପାରରେ ହସ୍ତକ୍ଷେପ କରିବାକୁ ପଡୁ ନ ଥିଲା । ତତ୍‌କାଳୀନ ଓଡ଼ିଶାର ଯେ କୌଣସି ଶ୍ରେଷ୍ଠ ସହର ଅପେକ୍ଷା ବାରିପଦା ସେତେବେଳେ ଥିଲା ଅଧିକ ଉନ୍ନତ ଓ ଅଗ୍ରଗାମୀ । ଗଡ଼ଜାତ ସମ୍ପର୍କରେ ମୋର ପୂର୍ବରୁ ଯେଉଁ ଧାରଣା ଥିଲା, ସେଠାରେ ତାହା ସମ୍ପୂର୍ଣ୍ଣ ଦୂର ହୋଇ ଯାଇଥିଲା । ମୁଁ ଏକ 'ଅନ୍ଧାରି ମୁଲକ'ରେ ଅଛି ବୋଲି ଆଦୌ ଭାବୁ ନ ଥିଲି ।

## ମୋର ଡି.ଇଡି. ଟ୍ରେନିଂ (୧୯୩୭-୩୯)

ବାରିପଦାରେ ଛଅବର୍ଷ ଚାକିରି କରିବା ପରେ ମୁଁ ସ୍ଥିର କଲି କଟକରେ ବର୍ଷେ ଡି.ଇଡି. ପଢ଼ିବି । ଷ୍ଟେଟ୍ ସରକାରଙ୍କୁ ଆବେଦନ କରିବା ଫଳରେ ମୋତେ ମାସିକ ପଚିଶ ଟଙ୍କା ଷ୍ଟାଇପେଣ୍ଡ ମିଳିଲା ; କିନ୍ତୁ ଏଥିଲାଗି ଟ୍ରେନିଂ ସମାପ୍ତି ପରେ ସେ ଷ୍ଟେଟ୍‌ରେ ମୁଁ ପାଞ୍ଚ ବର୍ଷ ଚାକିରି କରିବି, ଏହି ସର୍ତ୍ତରେ ମୋତେ ଏକ ଚୁକ୍ତି ଲେଖି ଦେବାକୁ ହେଲା । ଏଣେ ଟ୍ରେନିଂ କଲେଜର ପ୍ରବେଶିକା ପରୀକ୍ଷାରେ ଦ୍ୱିତୀୟ ସ୍ଥାନ ଅଧିକାର କରି ନିୟମାନୁସାରେ ମାସିକ କୋଡ଼ିଏ ଟଙ୍କାର ଏକ ସରକାରୀ ବୃତ୍ତି ମଧ୍ୟ ପାଇଲି । ସେତେବେଳେ କଟକ ଟ୍ରେନିଂ କଲେଜର ଅଧ୍ୟକ୍ଷ ଥାନ୍ତି ଶ୍ରୀଯୁକ୍ତ ମହେଶଚନ୍ଦ୍ର ପ୍ରଧାନ । ବାରିପଦାରୁ ଅସ୍ଥାୟୀ ଭାବରେ ବିଦାୟ ନେଇ ଟ୍ରେନିଂ କଲେଜରେ ଯୋଗ ଦେଲି ।

ସେତେବେଳକୁ ମୁଁ ଦୁଇଟି କନ୍ୟାଙ୍କର ପିତା ହୋଇ ସାରିଥାଏ । ପିଲା-ମାନଙ୍କୁ ଗାଁରେ ଛାଡ଼ି ଟ୍ରେନିଂ କଲେଜ ହଷ୍ଟେଲରେ ରହି ଡି.ଇଡି. ପଢ଼ିଲି । ଆମ୍ଭମାନଙ୍କର କ୍ଲାସ ଆରମ୍ଭ ହେବାପରେ ଦିନେ ଆମର ଅଧ୍ୟକ୍ଷ ନବାଗତ ଛାତ୍ରମାନଙ୍କୁ ପଚାରିଲେ, "ତୁମ୍ଭମାନଙ୍କ ମଧ୍ୟରୁ କାହାର କ ପାଠ୍ୟେତର ବିଷୟରେ ଅଭିଜ୍ଞତା ଅଛି ?" ମୁଁ ତ ସମସ୍ତଙ୍କ ଅପେକ୍ଷା ଅଧିକ ଦିନ ଶିକ୍ଷକତା କରିଥିଲି, ତା ଛଡ଼ା ଖେଳ, ବଗିଚାକାମ, ସୂତାକଟା, ଲୁଗାବୁଣା, ଆସନ ଓ ଗାଲିଚାବୁଣା, ଚିତ୍ରାଙ୍କନ, ଫଟୋଗ୍ରାଫି, ଲେଖାଲେଖି କରିବା, ବାଦ୍ୟଯନ୍ତ୍ର ବଜାଇବା, ଟାଇପ୍ କରିବା, ଖେଳାଇ କରିବା, କାଗଜର ଫୁଲ କାଟିବା ଆଦି ଯେତେ ବିଷୟ ଜାଣେ ବୋଲି କହିଲି, ତାହା ଅନ୍ୟମାନଙ୍କ ତାଲିକାକୁ ଟପିଗଲା । ତେଣୁ ପ୍ରଥମରୁ ଖୁବ୍ ସହଜରେ ମୁଁ ସହପାଠୀ-ମାନଙ୍କର ଶ୍ରଦ୍ଧା ଓ ସମ୍ମାନ ଲାଭ କରି ପାରିଥିଲି ।

ଦିନକର ଘଟନା ଉଲ୍ଲେଖ ନ କରି ରହିପାରୁନାହିଁ । ମୋତେ ଜ୍ୱର ହୋଇ-ଥିବାରୁ କଲେଜକୁ ନ ଯାଇ ମୋ କୋଠରୀରେ ଶୋଇ ରହିଥାଏ । ହଠାତ୍ ଜ୍ୱରର ତାପ ବଢ଼ିବାକୁ ଲାଗିଲା । ବହୁତ କଷ୍ଟରେ ପୂଜାରୀଙ୍କୁ ଡାକି ତିନୋଟି ଜାଗାକୁ ଖବର ଦେବାକୁ କହିଲି—ପ୍ରଥମ କଲେଜକୁ, ଦ୍ୱିତୀୟ ଅଟଳବାବୁଙ୍କ ସ୍ୱଗ୍ରାମୀ ଔଷଧାଳୟର କମ୍ପାଉଣ୍ଡର ସୁଦର୍ଶନଙ୍କୁ ; ତୃତୀୟ, ବୋର୍ଡ ଅଫ୍ ରେଭିନ୍ୟୁ ଅଫିସର କର୍ମଚାରୀ ଆମ ଗ୍ରାମର ଅନ୍ତି କଟେଇଙ୍କୁ ।

ଜ୍ୱରର ପ୍ରକୋପ ଯେତିକି ବଢ଼ୁଥାଏ, ମୁଁ ସେତିକି ଅସହାୟ ବୋଧ କରୁଥାଏ । ମୋତେ ଲାଗୁଥାଏ, ଟିକିଏ ଅଳ୍ପ ସମୟ ଭିତରେ ଯେପରି ମୋର ପ୍ରାଣ ବାହାରିଯିବ । କଲେଜ ଅଫିସରୁ ଡାକ୍ତରଙ୍କ ପାଖକୁ ସଙ୍ଗେ ସଙ୍ଗେ ଖବର ଦିଆଯାଇଥିଲା । ମାତ୍ର ୪ଟା ପୂର୍ବରୁ ସେ ଆସି ପାରି ନ ଥିଲେ ।

ପ୍ରାୟ ଦେଢ଼ଟାକ ସମୟରେ ଝାଳ ଗମଗମ ଦେହରେ, କାନ୍ଧରେ ଫଳ ଓ ପଇଡ଼ର ମୋଟିଲ ପକାଇ ସାଇକେଲରେ ଆସି ପହଞ୍ଚିଗଲେ ମୋର ପ୍ରାଣର ବନ୍ଧୁ ସୁଦର୍ଶନ । ତାଙ୍କୁ ଦେଖି ମୁଁ ଯେପରି ସ୍ୱର୍ଗର ଚାନ୍ଦ ହାତରେ ପାଇଲି । ସେ ମୋ ଶେଯ ପାଖରେ ବସି ମୋତେ କଣ ଗୋଟିଏ ଔଷଧ ବଟିକା ଖୁଆଇ ଦେବାରୁ ଦୁଇ ତିନି ମିନିଟ ଭିତରେ ମୁଁ ଆରାମ ବୋଧ କଲି । ତାପରେ ସେ ମୋ ଦେହମୁଣ୍ଡରେ ହାତ ବୁଲାଉ ବୁଲାଉ କାନ୍ଦି ପକାଇ କହିଲେ, "ତୋ ଦେହ ଖବର ଶୁଣିଲାମାତେ ମୁଁ ଔଷଧ ଓ ଫଳ ଦଶଟା ଧରି ଧାଇଁ ଆସିଲି । କୃଷ୍ଣ ପ୍ରଧାନ ଏଇଠି ମରିଗଲା, ଅଥଚ କଟକରେ ଥାଇ ମୁଁ ତାକୁ ମରିବା ପୂର୍ବରୁ ଟିକିଏ ଦେଖି ପାରିଲି ନାହିଁ ।" ଆଉ ଅଧିକ ସେ କହି ପାରିଲେ ନାହିଁ । ଲୋତକରେ ତାଙ୍କର ଚକ୍ଷୁ ଦୁଇଟି ପୂର୍ଣ୍ଣ ହୋଇଗଲା । ଅନାବିଳ ଅକପଟ ବନ୍ଧୁତାର ଯେପରି ମୂର୍ତ୍ତିମନ୍ତ ବିଗ୍ରହଟିଏ ମୁଁ ଏପର୍ଯ୍ୟନ୍ତ ଦେଖିବାକୁ ପାଇନାହିଁ । ସୁଦର୍ଶନ ଆଜି ନାହିଁ, ମୋ ପୂର୍ବରୁ ସେ ଚିର ବିଦାୟ ନେଇ ପରଲୋକକୁ ଚାଲିଯାଇଛନ୍ତି । ତାଙ୍କର ଶୋଚନୀୟ ମୃତ୍ୟୁ କାହାଣୀ ସେ କାଳର କଟକବାସୀ ଅନେକେ ଜାଣନ୍ତି । ମୁଁ କିନ୍ତୁ ଏ ଜୀବନରେ ତାଙ୍କର ଋଣ ଯାହା ଶୁଝି ପାରିଲି ନାହିଁ—ଏଇ ଅବଶୋଷ ମୋର ରହିଗଲା ।

## ଟ୍ରେନିଂ ପରେ

ଦେଖୁଁ ଦେଖୁଁ ନଅଟା ମାସ ଖେଳଲାପରି କଟିଗଲା । ପରୀକ୍ଷା ଦେଇସାରି ବାରିପଦା ଚାକରିକୁ ଫେରିଗଲି । ଯଥା ସମୟରେ ପରୀକ୍ଷାଫଳ ବାହାରିଲା । ଆମ ପ୍ରିନ୍ସିପାଲ ଶ୍ରୀଯୁକ୍ତ ପ୍ରଧାନ ପାଟନାରୁ ମୋତେ ଅଭିନନ୍ଦନ ଜଣାଇ ଚିଠି ଦେଲେ । ତାଙ୍କର ଚିଠିରୁ ମୁଁ ପ୍ରଥମେ ଜାଣିଲି ଯେ ମୁଁ ଡିଷ୍ଟିଂସନ ସହ ପାସ୍ କରିଛି ଏବଂ ବିଶ୍ୱବିଦ୍ୟାଳୟରେ ପ୍ରଥମ ସ୍ଥାନ ଅଧିକାର କରିଛି । ମୋ ମନ ଆନନ୍ଦରେ ପୂର୍ଣ୍ଣ ହୋଇଗଲା ।

ଅଳ୍ପ କିଛୁ ଦିନପରେ କଟକ ଆସି ପ୍ରିନ୍‌ସିପାଲଙ୍କୁ ଦେଖା କଲି । ଅଧ୍ୟାପକ ଶ୍ରୀରାମବାବୁ ମଧ୍ୟ ସାକ୍ଷାତ୍‌ବେଳେ ଉପସ୍ଥିତ ଥିଲେ । ଉଭୟେ ମୋତେ ସରକାରୀ ସ୍କୁଲକୁ ଆସିବାପାଇଁ କହିଲେ । ମୁଁ କହିଲି, "ବାରିପଦାରେ ମୁଁ ଗୋଟିଏ ଜାଗାରେ ଶାନ୍ତିରେ ଅଛି । ସରକାରୀ ସ୍କୁଲକୁ ଆସିଲେ ପାଞ୍ଚ ଜାଗା ହେବାକୁ ପଡ଼ିବ । ତା ଛଡ଼ା ସେ ସ୍କୁଲରେ ମଧ୍ୟ ପେନ୍‌ସନ ବ୍ୟବସ୍ଥା ଅଛି । କାହିଁକି ଆସିବି ?" ଏହା ଶୁଣି ସେମାନେ ଆଉ ମୋତେ ବଳାଇଲେ ନାହିଁ । ସେମାନଙ୍କଠାରୁ ବିନୀତ ଭାବରେ ବିଦାୟ ନେଇ ବାରିପଦା ଫେରିଗଲି ।

ଦିନେ ଆମ କମନ୍ ରୁମ୍‌ରେ ବସିଛି, ପାଟନା ବିଶ୍ୱବିଦ୍ୟାଳୟରୁ ଖଣ୍ଡେ ଚିଠି ପାଇଲି । କି ଚିଠି ବୋଲି ବନ୍ଧୁ ଶିକ୍ଷକମାନେ ଆଗ୍ରହରେ ମୋତେ ଘେରିଗଲେ । ଖୋଲି ଦେଖିଲି—ମାଟ୍ରିକ୍ୟୁଲେଶନ ପରୀକ୍ଷାରେ ଜଣେ ଇଂରାଜି ପରୀକ୍ଷକ ରୂପେ ମୁଁ ନିଯୁକ୍ତ ହୋଇଛି । ସମ୍ପୂର୍ଣ୍ଣ ଅପ୍ରତ୍ୟାଶିତ ଭାବରେ ଏ ନିଯୁକ୍ତିଟି ମିଳିଥିବାରୁ ମୁଁ ଓ ମୋର ସହକର୍ମୀମାନେ ଆଶ୍ଚର୍ଯ୍ୟ ହୋଇଗଲୁ । ସେ ଯୁଗରେ ପାଟନା ବିଶ୍ୱବିଦ୍ୟାଳୟର ପରୀକ୍ଷକ ହେବା ଏତେ ସହଜ ନ ଥିଲା । କୋଡ଼ିଏ ବାଇଶଜଣ ପରୀକ୍ଷକଙ୍କ ମଧ୍ୟରୁ ଓଡ଼ିଶା ଭାଗରେ ମୋଟେ ଦୁଇଜଣ । 'ଚଉଠ କୋଟା' ବି ନୁହେଁ । ପୁଣି ବାରିପଦା ହାଇସ୍କୁଲରୁ ସେ ପର୍ଯ୍ୟନ୍ତ କେହି ଉକ୍ତ ସମ୍ମାନଟିକ ପାଇ ନ ଥିଲେ । ତେଣୁ ଶିକ୍ଷକ-ମହଲରେ ମୋର ମୂଲ୍ୟ ଆହୁରି ବଢ଼ିଗଲା ।

ଅନୁମାନ କଲି, ବୋଧହୁଏ ଡି.ପି.ଆଇ. ଶ୍ୟାମଚନ୍ଦ୍ର ତ୍ରିପାଠୀ, ଓ ଶ୍ରୀ ପ୍ରଧାନଙ୍କ ସୁପାରିଶ୍ ଏବଂ ଚେଷ୍ଟା ଫଳରେ ମୁଁ ଉପର୍ଯ୍ୟୁକ୍ତ ନିଯୁକ୍ତିଟି ପାଇପାରିଛି ।

ଦ୍ୱିତୀୟ ବିଶ୍ୱଯୁଦ୍ଧ ଆରମ୍ଭ ହୋଇଯାଇଥାଏ । ଆମ ସ୍କୁଲର ଜଣେ ଶିକ୍ଷକ ଗୋଟିଏ ରେଡ଼ିଓ କିଣି ଯୁଦ୍ଧ ଖବର ଆମ୍ଭମାନଙ୍କୁ ଶୁଣାଉଥାନ୍ତି । ସେତେବେଳେ ରେଡ଼ିଓ ଗୋଟାଏ ନୂଆ ଜିନିଷ, ପୁଣି ଯୁଦ୍ଧ ତାକୁ କରିଥାଏ ଅଧିକ ଜବର୍ଦ୍ଦ ଓ ଲୋଭନୀୟ । ମୋର ମଧ୍ୟ ଗୋଟିଏ ରେଡ଼ିଓ କିଣିବାକୁ ଇଚ୍ଛା ହେଲା । କଲିକତା ଯାଇ ଫିଲିପ୍‌ସ କମ୍ପାନୀର ରେଡ଼ିଓଟିଏ ଆଣିଲି । ଯୁଦ୍ଧଖବର ଶୁଣିବାକୁ ଅନେକ ବନ୍ଧୁ ମୋ ଘରେ ରୁଣ୍ଡ ହୁଅନ୍ତି । ରାତି ସାଢ଼େ ନଅଟାରେ ଲଣ୍ଡନରୁ ଇଂରାଜି ଖବର ଦେବା ପୂର୍ବରୁ ବିଗ୍ ବେନ୍ ଘଣ୍ଟାରେ ଘଣ୍ଟା ବାଜିଲେ ପରିଷ୍କାର ଶୁଣାଯାଏ । କଲିକତା ଓ ଢାକାରୁ ବଙ୍ଗଳା ସଙ୍ଗୀତ ଶୁଣି ମୁଁ ଯେତିକି ତୃପ୍ତିଲାଭ କରେ ସେତିକି । ହିନ୍ଦୀ ଗୀତର କାଉଁରୀ ମୋତେ ଛୁଇଁ ନ ଥାଏ । କଟକ ବେତାର କେନ୍ଦ୍ରର ଜନ୍ମ ସେତେ-ବେଳଯାଏ ହୋଇନାହିଁ, ଓଡ଼ିଆ କଣ୍ଠ ବା ଶୁଭିବ କେଉଁଠୁ ? କେବଳ ସପ୍ତାହରେ ଦିନେ କେତେ ମିନଟ୍ ପାଇଁ ଓଡ଼ିଆ ରେକର୍ଡ଼ ଶୁଣିବାକୁ ମିଳେ କଲିକତା କେନ୍ଦ୍ରରୁ । ସେ ବି ଅସ୍ପଷ୍ଟ । ମାଗିଆଣିଲା ଢାଅଣ ପରି ସେଥିରେ ମନବୋଧ ହୁଏ ନାହିଁ ।

ମୋର ପ୍ରକାଶକ ଶ୍ରୀ ଉମାଚରଣ ମହାନ୍ତିଙ୍କ ପ୍ରରୋଚନାରେ ମୁଁ କେତେଖଣ୍ଡି ସାହିତ୍ୟ ପାଠ୍ୟପୁସ୍ତକ ବାରିପଦାରେ ଥାଇ ଲେଖିଥିଲି । ସେଗୁଡ଼ିକ ୧୯୩୪ରୁ ୧୯୪୦ ମଧ୍ୟରେ ଲେଖା ହୋଇ ପ୍ରକାଶିତ ହୋଇଥିଲା । ତନ୍ମଧ୍ୟରୁ 'ସାହିତ୍ୟ ସୋପାନ' (୧ମ ଓ ୨ୟ ଭାଗ) ଓଡ଼ିଶା ପାଇଁ ଏବଂ 'ସାହିତ୍ୟ-ବୋଧ' (୧ମ ଓ ୨ୟ ଭାଗ) ମୟୂରଭଞ୍ଜ ପାଇଁ ପାଠ୍ୟପୁସ୍ତକ ରୂପେ ନିର୍ବାଚିତ ହୋଇଥିଲା ।

ମୋର ସହକର୍ମୀଗଣ ବାରିପଦାରେ ଜାଗା କିଣି ଖଣ୍ଡେ ଖଣ୍ଡେ ଘର ତିଆରି କରୁଥାନ୍ତି । ମୁଁ ଉମାଚରଣବାବୁଙ୍କ ସହାୟତାରେ କଟକ ତେଲେଙ୍ଗାବଜାରରେ ପଣ୍ଡିତ ଅକ୍ରୂର ମିଶ୍ରଙ୍କଠାରୁ ୨୧୦୦ ଟଙ୍କାରେ ଖଣ୍ଡେ ଜମି କିଣି ସେହିଠାରେ ଗୃହ ନିର୍ମାଣ କାର୍ଯ୍ୟ ଆରମ୍ଭ କଲି । ଏ ସମସ୍ତ ଟଙ୍କା ମୁଁ କେବଳ ପାଠ୍ୟପୁସ୍ତକ ବିକ୍ରିରୁ ପାଇଥିଲି । ସେହି ଘରର ଆବଶ୍ୟକ ପରିବର୍ତ୍ତନ ଓ ପରିବର୍ଦ୍ଧନ କରାଇ ବର୍ତ୍ତମାନ ମୁଁ ସେଠାରେ ସପରିବାର ବାସ କରୁଅଛି ।

## ପଦୋନ୍ନତି ଓ ସଂଘର୍ଷ

ହାଇସ୍କୁଲର ସହକାରୀ ପ୍ରଧାନ ଶିକ୍ଷକଙ୍କ କାର୍ଯ୍ୟକାଳ ପୂରିଯିବାରୁ ସେ ବୃତ୍ତିରୁ ଅବସର ନେଲେ । ଅନ୍ୟତମ ପ୍ରବୀଣ ଶିକ୍ଷକ ଶ୍ରୀ ଦୈତ୍ୟାରି ବାରିକ ବହରମପୁର ହାଇସ୍କୁଲର ହେଡ଼ମାଷ୍ଟର ନିଯୁକ୍ତ ହୋଇ ସେଠାକୁ ଗଲେ । ତେଣୁ ୧୯୪[illegible]ରେ ମୁଁ ବାରିପଦା ହାଇସ୍କୁଲର ସହକାରୀ ହେଡମାଷ୍ଟର ପଦକୁ ଉନ୍ନୀତ ହେଲି । ମୋ ଶିକ୍ଷକ ଜୀବନର କଠୋର ପରୀକ୍ଷା ଏହିଠାରୁ ଆରମ୍ଭ ହେଲା ।

ହେଡମାଷ୍ଟର ରାଜେନ୍ଦ୍ରବାବୁ ଥିଲେ ବଙ୍ଗଳାର ଅଧିବାସୀ । ଦେଓ୍ୱାନ କେ. ସି. ନିୟୋଗୀ ବଙ୍ଗାଳୀ ଥିବାରୁ ଉଭୟଙ୍କ ମଧ୍ୟରେ ସ୍ୱାଭାବିକ ସଦ୍ଭାବ ରହିଥିଲା । ପଦାଧିକାର ବଳରେ ରାଜେନ୍ଦ୍ରବାବୁ ଦେଓ୍ୱାନଙ୍କ ପାଖକୁ ଅବାଧରେ ଯାଇପାରୁଥିଲେ ଏବଂ ଯେତେଦୂର ମନେହୁଏ, ନିଜର ଦୁର୍ବଳତାକୁ ଢାଙ୍କି ରଖିବା ପାଇଁ ସେଠାରୁ ଶକ୍ତି ସଞ୍ଚୟ କରୁଥିଲେ ।

ମୁଁ ଥିଲି ତାଙ୍କର ପ୍ରଧାନ ସହକାରୀ, ତେଣୁ ସ୍କୁଲର କେତେକ ଦାୟିତ୍ୱ ମୋ ଉପରେ ପରୋକ୍ଷ ଭାବରେ ନ୍ୟସ୍ତ ଥିଲା । ପରିଚାଳନା ସମିତିରେ ମୁଁ ତାଙ୍କ ପାଖରେ ବସି ଶିକ୍ଷକମାନଙ୍କର ପ୍ରତିନିଧିତ୍ୱ କରୁଥିଲି । ତାଙ୍କ କାର୍ଯ୍ୟକଳାପରେ ବଙ୍ଗାଳୀ ଶିକ୍ଷକ ବା ଛାତ୍ରମାନଙ୍କ ପ୍ରତି କୌଣସି ପକ୍ଷପାତିତା ଦେଖିଲେ ତାହାର ବିରୋଧ କରୁଥିଲି । ତା ଛଡ଼ା ମୁଁ ଥିଲି ଓଡ଼ିଆ । ଛାତ୍ର ମହଲରେ ମୋର ଅଧିକ ସୁନାମ ଥିବାର ସେ ଲକ୍ଷ୍ୟ କରୁଥିଲେ । ଶିକ୍ଷାଗତ ଯୋଗ୍ୟତା ମଧ୍ୟ ମୋର ଅଧିକ ଥିଲା । ଏହି ସବୁ କାରଣରୁ ଆମ ଦୁହିଁଙ୍କ ମଧ୍ୟରେ ଆରମ୍ଭ ହେଲା ଏକ ଶୀତଳ ସଂଘର୍ଷ ।

ମନୁଷ୍ୟ ହିସାବରେ ସୁରେନ୍ଦ୍ରବାବୁ ଜଣେ ଉତ୍ତମ ଲୋକ ଥିଲେ । ପ୍ରାୟ ସମସ୍ତଙ୍କ ସଙ୍ଗେ ତାଙ୍କର ସଦ୍‌ଭାବ ଥିଲା, କିନ୍ତୁ ସ୍କୁଲରେ ଶୃଙ୍ଖଳା ରକ୍ଷା କରିବା ଦିଗରେ ସେ ଅପାରଗ ଥିଲେ । ବୋଧହୁଏ ବାର୍ଦ୍ଧକ୍ୟ ଯୋଗୁ ସେ ନିଜର କର୍ମକ୍ଷମତା ହରାଇ ଶିକ୍ଷାଦାନ କାର୍ଯ୍ୟରୁ ସମ୍ପୂର୍ଣ୍ଣ ଅବ୍ୟାହତି ନେଇଥିଲେ । ମୋ ବିଚାରରେ ଏହା ତାଙ୍କର ଏକ ମସ୍ତବଡ଼ ଭୁଲ । କୌଣସି ଶିକ୍ଷାନୁଷ୍ଠାନର ମୁଖ୍ୟଙ୍କ ପକ୍ଷରେ ଏହା କରଣୀୟ ନୁହେଁ । ଯେତେ କମ୍ ସମସ୍ୟା ହେଉ ପଛେ, ପ୍ରଧାନ ଶିକ୍ଷକ ଅଧ୍ୟାପନା କାର୍ଯ୍ୟରେ ସମ୍ପୃକ୍ତ ରହିବା ଉଚିତ । କୌଣସି କ୍ଲାସ ନ ନେଇ କେବଳ ଅଫିସ କାର୍ଯ୍ୟରେ ଆବଦ୍ଧ ରହିଲେ ଛାତ୍ରମାନଙ୍କ ଉପରେ ତାଙ୍କର ପ୍ରଭାବ ଶିଥିଳ ହୋଇଯାଏ ।

ଦିନକୁଦିନ ସ୍କୁଲରେ ବିଶୃଙ୍ଖଳା ବୃଦ୍ଧି ପାଇବାରେ ଲାଗିଲା । କେତେକ ଶିକ୍ଷକ ହେଡ଼ମାଷ୍ଟରଙ୍କ ଦୁର୍ବଳତାର ସୁଯୋଗ ନେଇ ନିର୍ଭୟରେ କର୍ତ୍ତବ୍ୟ ପାଳନରେ ଅବହେଳା କଲେ । ସ୍କୁଲ କାର୍ଯ୍ୟ ପ୍ରତି ବହୁତ ଦୃଷ୍ଟି ନ ଦେଇ ମନଇଚ୍ଛା ଟିଉସନ ଇତ୍ୟାଦିରେ ବ୍ୟାପୃତ ରହିଲେ । ଛାତ୍ରମାନଙ୍କ ମଧ୍ୟରେ ଉଚ୍ଛୃଙ୍ଖଳତା ବଢ଼ିଲା । ପ୍ରତିକାରର ଅନ୍ୟ ଉପାୟ ନ ଦେଖି ଶେଷ ବୟସରେ ତାଟିଆ କାମୁଡ଼ିଲା ପରି ସୁରେନ୍ଦ୍ରବାବୁ କେତେକ ଶିକ୍ଷକଙ୍କୁ ହାତରେ ରଖି ଶିକ୍ଷକ ମହଲରେ ଭେଦନୀତି ପ୍ରୟୋଗ କରିବାକୁ ଆରମ୍ଭ କଲେ । ଯେଉଁ ଶିକ୍ଷକମାନେ ଖୋସାମତ କରି ଜାଣନ୍ତି ନାହିଁ, ଅଥଚ ନିଜର କର୍ତ୍ତବ୍ୟ ସୁରୁଖୁରୁରୂପେ ସମ୍ପାଦନ କରନ୍ତି, ସେମାନେ ହେଲେ ତାଙ୍କର ଚକ୍ଷୁଶୂଳ । ପୁଣି ମୁଁ ତାଙ୍କ ବଙ୍ଗପ୍ରୀତିନୀତିର ବିରୋଧ କରୁଥିବାରୁ ମୋ ଉପରେ ତାଙ୍କର ପ୍ରଥମ କୋପଦୃଷ୍ଟି ପଡ଼ିଲା ।

ସ୍କୁଲ ଘରର ଉତ୍ତରପଟେ ହେଡ଼ମାଷ୍ଟରଙ୍କ କ୍ୱାର୍ଟର୍ସଠାରୁ ଅଳ୍ପ ଦୂରରେ ଆସିଷ୍ଟାଣ୍ଟ ହେଡ଼ମାଷ୍ଟରଙ୍କ ପାଇଁ ଯେଉଁ କ୍ୱାର୍ଟର୍ସ ଥିଲା, ମୁଁ ସେଇ ଘରେ ରହୁଥିଲି । କେଜାଣି କାହିଁକି, ସେ ଘରୁ ମୋତେ ଉଠାଇବା ପାଇଁ କିମ୍ବା ହଇରାଣ କରିବା ପାଇଁ ସେ ଏକ କୌଶଳ ପ୍ରୟୋଗ କଲେ । ତାଙ୍କ ଘର ନିକଟରେ ରହି ମୁଁ ତାଙ୍କର ପାର୍ଶ୍ୱଚରମାନଙ୍କର ଗତିବିଧି ଲକ୍ଷ୍ୟ କରେଁ, ଏହା ବୋଧହୁଏ ସେ ଚାହୁଁ ନ ଥିଲେ । କିନ୍ତୁ ମୋର ପଦାଧିକାର ବଳରେ ତ ମୁଁ ସେଇ ଘର ପାଇଛି, ମୋତେ ସେଠାରୁ ଉଠାଇବେ କିପରି ?

ଦିନେ ନିମ୍ନ ମର୍ମରେ ମୁଁ ଏକ ସରକାରୀ ଆଦେଶ ପାଇଲି—ମୋତେ ନିକଟସ୍ଥ ଅନାଥ ଛାତ୍ରାବାସ (Orphanage)ର ତତ୍ତ୍ୱାବଧାନ ଦାୟିତ୍ୱ ନେବାକୁ ହେବ, ନଚେତ୍ କ୍ୱାର୍ଟର୍ସ ପାଇଁ ଭଡ଼ା ଦେବାକୁ ପଡ଼ିବ । ସେ ପର୍ଯ୍ୟନ୍ତ ଉକ୍ତ ଘର ସହକାରୀ ପ୍ରଧାନ ଶିକ୍ଷକଙ୍କୁ ବିନା ଭଡ଼ାରେ ମିଳୁଥିଲା । ମୋ ପୂର୍ବରୁ ସେହି ପଦରେ ଥିବା ଇନ୍ଦୁବାବୁ ସେ ଘରେ ବିନା ଭଡ଼ାରେ ରହୁଥିଲେ, ଅଥଚ ମୋ ବେଳକୁ ମୟୂରଭଞ୍ଜ ଷ୍ଟେଟ କଣ ଏପରି ଦେବାଳିଆ ହୋଇଗଲା ଯେ ସାମାନ୍ୟ କେତେଟ ।

ଟଙ୍କା ପାଇଁ ସେ ଘର ଉପରେ ଭଡ଼ା ଧାର୍ଯ୍ୟ କଲ ? ହେଡ୍‌ମାଷ୍ଟରଙ୍କ କ୍ୱାର୍ଟର୍ସ କିମ୍ବା ଅନ୍ୟ କୌଣସି ମାଗଣା କ୍ୱାର୍ଟର୍ସ ଉପରେ ତ ଭଡ଼ା ବସିନାହିଁ । ତେବେ କଣ ଇନ୍ଦୁବାବୁ ଓ ରାଜେନ୍ଦ୍ରବାବୁ ବଙ୍ଗାଳୀ ବୋଲି ମାଗଣା ଘର ପାଇଲେ, ଆଉ ମୁଁ ଓଡ଼ିଆ ବୋଲି ଭଡ଼ା ଦେବି ? ଏହା ଯେ ହେଡ୍‌ମାଷ୍ଟରଙ୍କ ଚକ୍ରାନ୍ତର ଫଳ, ତାହା ବୁଝିବାକୁ ମୋର ବାକି ରହିଲା ନାହିଁ ।

ମୁଁ ଅନାଥ ଛାତ୍ରାବାସର ଦାୟିତ୍ୱ ନେଇପାରିବି ନାହିଁ ବୋଲି ସ୍ପଷ୍ଟ ମନା କରିଦେଲି । ତାପରେ ଦ୍ୱିତୀୟ ଆଦେଶ ଆସିଲା—ମୁଁ ଯେଉଁ ଦିନଠାରୁ ଉକ୍ତ ଘର ଦଖଲ କରିଛି, ସେହି ଦିନଠାରୁ ଆରମ୍ଭ କରି ନିର୍ଦ୍ଧାରିତ ହାରରେ ମୋତେ ଏକକାଳୀନ ସାତ ମାସର ଭଡ଼ା ପ୍ରାୟ ସତୁରି ଟଙ୍କା ଅବିଳମ୍ବେ ଦାଖଲ କରିବାକୁ ପଡ଼ିବ ।

ସ୍କୁଲରେ ଏ ଆଦେଶ ପାଇଲି । ସେହି ଦିନ ପ୍ରାୟ ୫ଟା ବେଳେ ମୁଁ ଦାଣ୍ଡପିଣ୍ଡାରେ ଠିଆ ହୋଇଛି, ରାଜେନ୍ଦ୍ରବାବୁ ମୋ ପାଖକୁ ଚାଲି ଚାଲି ଆସି କହିଲେ, "ଦେଖୁନ, କି ରକମ୍ ଏକଟା ଅର୍ଡର ହୟେଛେ—ଏକ ସମୟେ ସବ୍ ଟାକା ଦିତେ ହବେ । ଆପ୍‌ନି ଏକଟା କାଜ୍ କରୁନ୍ । ଇନଷ୍ଟାଲ୍‌ମେଣ୍ଟେ ଦିବାର ଜନ୍ୟ ଏକଟା ଦରଖାସ୍ତ କରୁନ୍—ଆମି ରେକମେଣ୍ଡ୍ କରେ ଦିବ ।" ତାଙ୍କର ଏ ବଗଡ଼ି-ବୈମାତ୍ରିକ ନୀତି ଦେଖି ମୁଁ ମନେ ମନେ ଟିକିଏ ବିରକ୍ତ ହୋଇ କହିଲି, "ସତୁରିଟା ଟଙ୍କା କଣ, ଚାକିରି ଯେତେବେଳେ କରିଛି, ସାତଶହ ଟଙ୍କା ପଡ଼ିଲେ ବି ଦେବାକୁ ହେବ, ନଚେତ୍ ଚାକିରି ଛାଡ଼ିଦେବାକୁ ହେବ । ଏ ଦୁଇଟା ଛଡ଼ା ଅନ୍ୟ ପନ୍ଥା ମୁଁ ଜାଣେ ନାହିଁ ।" ମୋ ଗଳାର ଉତ୍ତେଜିତ ସ୍ୱର ଲକ୍ଷ୍ୟ କରି ସେ ସ୍ପଷ୍ଟ ଜାଣିପାରିଲେ ଯେ ମୁଁ ତାଙ୍କରି ଉପରେ ରାଗିଯାଇଛି । ଭିତର ମନ ଗଣ୍ଠିରେ । ମୁଖରେ କୃତ୍ରିମ ହସ ଫୁଟାଇ କହିଲେ, "ଆପ୍‌ନି ଆମାର ଉପର ଏତ ଅଭିମାନ କର୍‌ଛେନ୍ କେନ ? ଆମାକେ ତ କିଛୁଇ ଜାନା ଛିଲ ନା । ଆମି ଗିୟେ ଦେଓ୍ୱାନ୍ ସାହେବକେ ବଲ୍‌ବ ଏର୍ କିଛୁ ଏକଟା......।" ମୁଁ ବାଧା ଦେଇ କହିଲି, "ନା ନା, କିଛି କହିବା ଦରକାର ନାହିଁ । ମୁଁ ସଙ୍ଗେ ସଙ୍ଗେ ପିଛିଲା ଭଡ଼ା ଦେଇଦେବି ଏବଂ ଏ ଘର ଛାଡ଼ିଦେବି ।"

"ଏଖନ ସଙ୍ଗେ ସଙ୍ଗେ କୋଥାୟ ଏକଟା ବାଡ଼ୀ ପାବେନ୍ ?" ମାର୍କେଟ ନିକଟରେ ଗୋଟାଏ ଘର ଥିବାର ମୁଁ ତାଙ୍କୁ କହିବାରୁ ସେ ପୁଣି କହିଲେ, "ସେଖାନେ କି ଇଲେକ୍‌ଟ୍ରିକ୍ ଆଛେ ? ଇଲେକ୍‌ଟ୍ରିକ୍ ନା ଥାକ୍‌ଲେ ଆପନାର ରେଡିଓ କେମନ୍......?"

ଏଥର ଆହୁରି ଟିକିଏ ଉତ୍ତେଜିତ ଗଳାରେ କହିଲି, "ରେଡିଓ ପାଇଁ ମୁଁ ମୋର ଆତ୍ମସମ୍ମାନକୁ ବଳି ଦେଇ ଏ ଘରେ ରହିପାରିବି ନାହିଁ । ଆବଶ୍ୟକ ପଡ଼ିଲେ ରେଡିଓକୁ ଟିକି ଟିକି କରି ଭାଙ୍ଗିଦେଇ ପାରେ ।"

ଏତିକି ବୋଧହୁଏ ଯଥେଷ୍ଟ ହେଲା । କୃତ୍ରିମ ହସର ଆବରଣ ଭିତରେ ନିଜର ମନୋଭାବକୁ ଲୁଚାଇ ରାଜେନ୍ଦ୍ରବାବୁ ଧୀର ପଦକ୍ଷେପରେ ସେଠାରୁ ଅପସରିଗଲେ ।

ପ୍ରକୃତରେ ସେପର୍ଯ୍ୟନ୍ତ ମୁଁ କୌଣସିଠାରେ ବସାଘର ଠିକ୍ କରି ନ ଥିଲି । ସେହିଦିନ ସନ୍ଧ୍ୟାରେ ସ୍କୁଲ ପରିଚାଳନା ସମିତିର ସଭ୍ୟ ଏବଂ ଡେପୁଟି ମାଜିଷ୍ଟ୍ରେଟ ଶ୍ରୀ ରାଧାଗୋବିନ୍ଦ ଦାସ ମୋତେ ଡକାଇ ପଠାଇଲେ । ଯାଇ ତାଙ୍କୁ ଦେଖା କଲି । ସେ ତାଙ୍କର ଖାଲି ପଡ଼ିଥିବା ବାଣ୍ଟିଆ ଜଗନ୍ନାଥ ମନ୍ଦିର ନିକଟ ନୂଆ ଘରେ ଆସି ରହିବା ପାଇଁ ମୋତେ କହିଲେ । 'ମୁଁ ମାସିକ ପନ୍ଦର ଟଙ୍କାରୁ ଅଧିକ ଭଡ଼ା ଦେଇପାରିବି ନାହିଁ, ଏତେ ବଡ଼ ଘରଟା ଦଖଲ କରିବି କିପରି ?' —ଏହା ଦର୍ଶାଇବାରୁ ସେ କହିଲେ, "ଆପଣ ଆଗ ସେଠାରେ ରହନ୍ତୁ; ଭଡ଼ା କଥା ପରେ ।" ମୁଁ ତାଙ୍କୁ ଧନ୍ୟବାଦ ଜଣାଇ ବସାକୁ ଫେରିଲି ଏବଂ ପରଦିନ ସେଠାକୁ ଯିବାପାଇଁ ପ୍ରସ୍ତୁତ ହେଲି ।

ସକାଳୁ ମୋର ଜିନିଷପତ୍ର ସେହି ନୂଆ ବସାକୁ ବୁହା ଚାଲିଲା । ପ୍ରାୟ ୮ ଟା ସମୟ । ମୁଁ ସେ ନୂଆ ଘରେ ବସି ଜିନିଷପତ୍ର ସଜାଡ଼ୁଛି, ରାଜେନ୍ଦ୍ରବାବୁ ସେଠାରେ ଆସି ଉପସ୍ଥିତ । ତାଙ୍କ ସ୍ୱଭାବସୁଲଭ ହସ ହସି ପଚାରିଲେ, "ଏଇଖାନେ ଥାକ୍‌ବାର ଠିକ୍ କର୍‌ଲେନ୍ ନା କି ?" ମୁଁ ହଁ କହିବାରୁ ପୁଣି ପଚାରିଲେ, "ଆପନି କି ଅତ ବଡ଼ ବାଡ଼ୀଟାର ଭାଡ଼ା ଦିତେ ପାର୍‌ବେନ୍ ?" ମୁଁ କହିଲି, "ବର୍ତ୍ତମାନ ରହୁଛି ତ, ଦେଖିବା କଣ ହେବ ।"

ସେତେବେଳେ ସେ ଘରଟାର ଭଡ଼ା ମାସିକ ଚାଳିଶ ଟଙ୍କାରୁ କମ୍ ହୁଅନ୍ତା ନାହିଁ । ମୋର ଦରମା ମାସକୁ ମାତ୍ର ନବେ ଟଙ୍କା । ଲୋକଟାର କିଦ୍ ନା ଦୁଃସାହସ ଏ ! କିଛି ଉତ୍ତର ଦେଇ ନ ପାରି ସେ ଧୀରେ ଧୀରେ ସେଠାରୁ ବାହାରିଗଲେ ।

ଘରର ମାଲିକ ରାଧାଗୋବିନ୍ଦବାବୁ ତାଙ୍କ ପୁଅ ବିନୋଦ ପାଇଁ ବୋଧହୁଏ ଜଣେ ଭଲ ଟିଉସନ ମାଷ୍ଟର ଖୋଜୁଥିଲେ । ମୁଁ ଟିଉସନ କରେ ନାହିଁ ବୋଲି ଭରସି କରି ମୋତେ କିଛି କହିପାରୁ ନ ଥିଲେ । ଏ ଏକ ସୁଯୋଗ ଜୁଟିଲା । ମୋର ନିତାନ୍ତ ଦରକାରବେଳେ ମୁଁ ଘରଟି ପାଇଲି । ବଡ଼ଲୋକିଆ ଘର, ଇଲେକ୍‌ଟ୍ରିକ୍ ଅଛି, ରେଡ଼ିଓକୁ ଟିକି ଟିକି କରି ଭାଙ୍ଗିବା ଆଉ ଦରକାର ପଡ଼ିବ ନାହିଁ ! ତେଣୁ ବିନା ଆପତ୍ତିରେ କିଛିଦିନ ଶ୍ରୀମାନ୍ ବିନୋଦକୁ ପଢ଼ାଇବା ପାଇଁ ରାଜି ହୋଇଗଲି ।

ଏଠାରେ ଆଉ ଗୋଟିଏ କଥା ମନେ ପଡ଼ୁଛି । ଦିନେ ସ୍ୱର୍ଗୀୟ ଶରତଚନ୍ଦ୍ର ଦାସ ମୋତେ ଡକାଇ ପଠାଇଲେ । ଦେଖା ହେବାରୁ କହିଲେ, "ବାରିପଦା ହାଇସ୍କୁଲକୁ କଲିକତା ବିଶ୍ୱବିଦ୍ୟାଳୟ ଅଧୀନକୁ ନେଇଯିବା ଲାଗି ରାଜେନ୍ଦ୍ରବାବୁ ଚେଷ୍ଟା କରୁଛନ୍ତି । ଦେଓ୍ୱାନଙ୍କର ପରୋକ୍ଷ ସମର୍ଥନ ଏଥିରେ ନିଶ୍ଚୟ ଥିବ । ଏ ସମ୍ପର୍କରେ କଲିକତା ବିଶ୍ୱବିଦ୍ୟାଳୟ କର୍ତ୍ତୃପକ୍ଷଙ୍କ ସହ ଗୋପନରେ ଦୁଇ ତିନୋଟି

ପଥ ବ୍ୟବହାର ମଧ୍ୟ କରାଯାଇ ପାରିଲନି । ତେଣୁ କାଳବିଳମ୍ବ ନ କରି ଆମ୍ଭମାନଙ୍କୁ ଏହାର ପ୍ରତିରୋଧ କରିବାକୁ ହେବ । ଆଜି ରାତି ୧୦ଟାରେ ମୁଁ ଓ ଆଉ କେତେଜଣ ଭଦ୍ରବ୍ୟକ୍ତି ଗୋଟିଏ ଡେପୁଟେସନରେ ମହାରାଜାଙ୍କୁ ଭେଟିବାକୁ ସ୍ଥିର କରିଛୁ ।" ଏହା କହି ସ୍କୁଲ କଲିକତା ବିଶ୍ୱବିଦ୍ୟାଳୟ ଅଧୀନକୁ ଗଲେ କି କି ଅସୁବିଧା ଘଟିବ, ସେଗୁଡ଼ିକର ଏକ ସଂକ୍ଷିପ୍ତ ବିବରଣୀ ତାଙ୍କୁ ଘଣ୍ଟାକ ଭିତରେ ଦେବାପାଇଁ ମୋତେ ଅନୁରୋଧ କଲେ ।

ଓଡ଼ିଶାର ଅନ୍ନରେ ପ୍ରତିପାଳିତ ହୋଇ ଓଡ଼ିଆମାନଙ୍କ ସ୍ୱାର୍ଥକୁ ରାଜେନ୍ଦ୍ରବାବୁ ଯେପରି ବଳି ଦେବାକୁ ଆଗେଇ ଯାଇଥିଲେ, ତାହା ଶୁଣି ମନରେ ଘୋର ବିରକ୍ତି ଆସିଲା । ଭାବିଲି, ମହାରାଜା କଣ ବିଚାର କରୁଛନ୍ତି ଦେଖାଯାଉ । ମୁଁ ଶରତବାବୁଙ୍କୁ ଛଅ ସାତଟି ଅସୁବିଧାର ତାଲିକା ଦେଲି । କହିବା ବାହୁଲ୍ୟ, ମହାରାଜାଙ୍କ ଗୋଚରକୁ ନେବା ପରେ ଏ ଘଟନା ସେତିକିରେ ରହିଲା, ଆଉ ଆଗେଇ ପାରିଲା ନାହିଁ ।

ଦ୍ୱିତୀୟ ବିଶ୍ୱଯୁଦ୍ଧ କ୍ରମେ ଘନେଇ ଆସିଲା । ରେଡ଼ିଓରୁ ଯୁଦ୍ଧ ଖବର ଶୁଣି ଖଣ୍ଡେ ଖାତାରେ ପ୍ରଧାନ ପ୍ରଧାନ ଘଟଣାମାନ ଟିପି ରଖୁଥାଏ । ଜର୍ମାନୀର ପକେଟ ରଣତରୀ 'ଗ୍ରାଫ୍ ସ୍ପି'ର ଆଟଲାଣ୍ଟିକ ମହାସାଗରରେ ଉତ୍ପାତ, ସିଙ୍ଗାପୁର ପତନ ଜାପାନୀ ବୋମାବର୍ଷୀ ବିମାନଗୁଡ଼ିକର ଲୁହାକୁ ଲୁହା ଆକ୍ରମଣ, ହିଟଲରଙ୍କର ଜ୍ୱାଲାମୟୀ ବକ୍ତୃତା, ଲଣ୍ଡନ ଉପରେ ଜର୍ମାନୀର ବୋମାବର୍ଷଣ—ଏ ସବୁ ରେଡ଼ିଓର ମୂଲ୍ୟ ଯଥେଷ୍ଟ ବଢ଼ାଇ ଦେଇଥାଏ । ପ୍ରାୟ ପ୍ରତିଦିନ ରାତିରେ ଶିକ୍ଷାବିଭାଗ ସୁପରିଣ୍ଟେଣ୍ଡେଣ୍ଟ ଶଚୀବାବୁ ରେଡ଼ିଓରୁ ଯୁଦ୍ଧ ଖବର ଶୁଣିବାପାଇଁ ମୋ ଘରକୁ ଆସନ୍ତି । ବିଶେଷତଃ ରାତି ସାଢ଼େ ଆଠଟାରେ ବର୍ଲିନରୁ ହିନ୍ଦୀରେ ଯେଉଁ ସମ୍ବାଦ ପ୍ରଚାରିତ ହୁଏ, ବ୍ରିଟିଶ ସରକାର ସେହି ଧ୍ୱନି-ତରଙ୍ଗକୁ ବିକୃତ କରି ଦେଉଥିଲେ ସୁଦ୍ଧା, ସମସ୍ତ ଶ୍ରୋତା ତାକୁ ଆଗ୍ରହର ସହିତ ଶୁଣନ୍ତି ।

ଦିନେ ମୁଁ ରାତି ସାଢ଼େ ନଅଟାରେ ମୋ ଦାଣ୍ଡଘରେ ଏକୁଟିଆ ବସି ରେଡ଼ିଓ ଶୁଣୁଛି, ଆମ ହାଇସ୍କୁଲର ଅନ୍ୟତମ ଶିକ୍ଷକ ଶ୍ରୀ ସନ୍ତୋଷ କୁମାର କବି ଭିତରକୁ ପଶି ଆସିଲେ । ଏତେ ରାତିରେ କାହିଁକି ଆସିଛନ୍ତି ପଚାରିବାରୁ ସେ କହିଲେ, "ମୁଁ ଟିଉସନରୁ ଫେରୁଥିଲି । ଗୋଟାଏ ବିଷୟ ଶୁଣି ଆପଣଙ୍କୁ ଜଣାଇବାକୁ ଇଚ୍ଛା ହେଲା ।"

"କି ବିଷୟ ?" ଉତ୍କଣ୍ଠିତ ହୋଇ ପଚାରିଲି । ସନ୍ତୋଷବାବୁ କହିଲେ, "ମୋ ଆଗେ ଆଗେ କେତେଜଣ ବଙ୍ଗୀୟ ମହିଳା ଏଇ ରାସ୍ତାରେ ଯାଉଥିଲେ । ସେମାନଙ୍କ କଥାବାର୍ତ୍ତା ମୋତେ ଶୁଭୁଥିଲା । ଆପଣଙ୍କ ଘରକୁ ଦେଖାଇ ଜଣେ ପଚାରିଲେ, "ଏ ବାଡ଼ୀତେ କେ ଥାକେନ ?" ଅନ୍ୟ ଜଣେ କହିଲେ, "ଏଟାତେ ହାଇସ୍କୁଲ ମାଷ୍ଟାର ରାମଚନ୍ଦ୍ରବାବୁ ଥାକେନ ।" ପ୍ରଥମ ମହିଳା ବିସ୍ମିତ ହୋଇ କହିଲେ, "ହାଇସ୍କୁଲ ମାଷ୍ଟାର ହୟେ ଅତ ବଡ଼ ବାଡ଼ୀତେ କି କରେ ଥାକେନ୍ ?"

ଜାଣିଥିବା ଭଦ୍ରମହିଳା ଜଣକ ଉତ୍ତର ଦେଲେ—କେନ ଥାକବେନ୍ ନା ? ଆମାଦେର ରାଜେନବାବୁ ହେଡ୍‌ମାଷ୍ଟର ହୟେଛେନ ବଟେ, କିନ୍ତୁ ଛେଲେରା ତ ବଲେ—'ଉନି କିଚ୍ଛୁଇ କରେନ୍ ନା, ରାମର୍ଜି ଷ୍ଟିବାବୁଇ ସ୍କୁଲେର ସବ୍ କିଚ୍ଛୁ କରେନ୍ । ଉନି ଏକଜନ ଭାଲ ମାଷ୍ଟାର······ଇତ୍ୟାଦି ।' ସେମାନଙ୍କ ମୁହଁରୁ ଏଭଳି ପ୍ରଶଂସା ଶୁଣି ମୁଁ ଆପଣଙ୍କୁ ନ କହି ରହିପାରିଲି ନାହିଁ ।"

ସନ୍ତୋଷବାବୁଙ୍କ କଥା ଶୁଣି ମୋର ଅନ୍ତତଃ ଏତିକି ସନ୍ତୋଷ ଆସିଲା ଯେ ଛାତ୍ରମାନଙ୍କୁ ବାହାରର ଦୂଷିତ ବାତାବରଣ ସ୍ପର୍ଶ କରିନାହିଁ । ବଙ୍ଗାଳୀ ଛାତ୍ରମାନେ ମଧ୍ୟ ଓଡ଼ିଆ ଶିକ୍ଷକଙ୍କର ମୂଲ୍ୟ ଦେବାରେ ତ୍ରୁଟି କରି ନାହାନ୍ତି । ପ୍ରକୃତରେ କହିବାକୁ ଗଲେ ମାନବିକତାର ବିକାଶ ଯେଉଁଠି ଶିକ୍ଷାର ଲକ୍ଷ୍ୟ, ସେଠାରେ ଶିକ୍ଷକ-ଛାତ୍ର ସମ୍ପର୍କକୁ ନଷ୍ଟ କଲାଭଳି କୌଣସି ସଂକୀର୍ଣ୍ଣ ଭେଦଭାବ ପ୍ରବେଶ କରିପାରେ ନାହିଁ ।

ଛାତ୍ର-ବିଶୃଙ୍ଖଳା କଥା ଆଜିକାଲି ସବୁଆଡ଼େ ଶୁଣାଯାଉଛି, କିନ୍ତୁ କୌଣସି କାରଣ ନ ଥାଇ ଏହା ଯେ ଏପରି ବ୍ୟାପକ ଆକାର ଧାରଣ କରିଛି, ତାହା ବିଶ୍ୱାସ କରାଯାଇ ନ ପାରେ । ପଙ୍ଗପାଳଦଳର ଅତର୍କିତ ଆକ୍ରମଣ ପରି ଏହା ଆକସ୍ମିକ ନୁହେଁ କି ଯାଦୁସମ୍ରାଟ ପି.ସି. ସରକାରଙ୍କ କୁହୁକ ପରି ଅବୋଧ୍ୟ ନୁହେଁ । ଯେଉଁ କର୍ତ୍ତାମାନେ ଏଥିରେ ବେଶୀ ବିବ୍ରତ, ସେହିମାନେ ହିଁ ଅନେକାଂଶରେ ଏଥିଲାଗି ଦାୟୀ ଏବଂ ଏ ବ୍ୟାଧି ନିରାକରଣର ପ୍ରତିଷେଧକ ତାଙ୍କରି ହାତରେ ଅଛି ।

ଛାତ୍ରମାନେ ସ୍ୱଭାବତଃ କୋମଳଚିତ୍ତ ଓ ଭାବପ୍ରବଣ । ଏହି କାରଣରୁ ହିଁ ଯେତିକି ଚଞ୍ଚଳ ସେମାନେ ଉତ୍ତେଜିତ ହୋଇପଡ଼ନ୍ତି, ସେତିକି ସହଜରେ ମଧ୍ୟ ଶାନ୍ତ ଓ ପ୍ରକୃତିସ୍ଥ ହୋଇଯାଆନ୍ତି । ଆଉ ଗୋଟିଏ କଥା, ଶିକ୍ଷକ ବା ଅଭିଭାବକଙ୍କର କୌଣସି ଦୁର୍ବଳତା ଯେପରି ଛାତ୍ରର ଆଖିରେ ନ ପଡ଼େ । ତା ହେଲେ ତାକୁ ଶାସନ କରିବା କଷ୍ଟକର ହୁଏ । ଯେଉଁ ମୁହୂର୍ତ୍ତରେ ଛାତ୍ରର ଧାରଣା ହୁଏ ଯେ ସ୍ୱୀକାର ଲୋଭରୁ ହେଉ ବା ଅନ୍ୟ କୌଣସି କାରଣରୁ ହେଉ, ତାର ଶିକ୍ଷକ ଆତ୍ମସମ୍ମାନକୁ ବଳି ଦେବାକୁ କୁଣ୍ଠିତ ନୁହନ୍ତି, ସେହି ମୁହୂର୍ତ୍ତରୁ ସେ ତାଙ୍କୁ ଲଘୁ ଦୃଷ୍ଟିରେ ଦେଖେ । ଯେ କୌଣସି ଗୁରୁଜନ ସ୍ଥାନୀୟ ବ୍ୟକ୍ତିଙ୍କ ପକ୍ଷରେ ମଧ୍ୟ ଏ ଉକ୍ତି ସତ୍ୟ ।

ମୋର ଅଭିଜ୍ଞତାରୁ ଗୋଟିଏ ଘଟଣା ଏ ପ୍ରସଙ୍ଗରେ ଉଲ୍ଲେଖ କରୁଛି । ମୁଁ ଥାଏ ଏକାଦଶ ଶ୍ରେଣୀ 'କ' ବିଭାଗର ଶ୍ରେଣୀ ଶିକ୍ଷକ । ଦିନେ ସେହି ଶ୍ରେଣୀର ଆଗ ବେଞ୍ଚରେ ବସୁଥିବା ଜଣେ ବଙ୍ଗାଳୀ ପିଲା ଅନୁପସ୍ଥିତ ଥିବାରୁ ମୁଁ ସୀତେଶ୍ୱର ନାମକ ଅନ୍ୟ ଜଣେ ଛାତ୍ରକୁ ସେଦିନ ତା ସ୍ଥାନରେ ବସିବାକୁ ଅନୁମତି ଦେଇଥିଲି । ତା ପରଦିନ ମୁଁ ଉପସ୍ଥାନ ନେଲାବେଳେ ଜାଣ ପେନ୍ ସେ ଦୁଇ ପିଲାଙ୍କ ଭିତରେ ଝଗଡ଼ା ଆରମ୍ଭ ହେଲା । ବଙ୍ଗାଳୀ ପିଲାଟି ଶ୍ରେଷ୍ଠ, ତେଣୁ ଆଗ ବେଞ୍ଚରେ ସେ ବସିବାକୁ

ସୁହେଁ, କିନ୍ତୁ ଖରେଶ୍ୱର ତାକୁ ଜାଗା ଛାଡ଼ିବାକୁ ନାରାଜ । ତାର ଯୁକ୍ତି, 'ମୁଁ କାଲି ଏଠାରେ ବସିଥିଲି ।'

ବିବାଦର କାରଣ ବୁଝିସାରି ମୁଁ ଖରେଶ୍ୱରକୁ ପଛ ବେଞ୍ଚକୁ ଯିବାକୁ ଆଦେଶ ଦେଲି, ମାତ୍ର ସେ ଉପର୍ଯ୍ୟୁକ୍ତ ଯୁକ୍ତି ଦର୍ଶାଇଲା ।

"କାଲି ସେ ଅନୁପସ୍ଥିତ ଥିବାରୁ ତୁମେ ସିନା ତା ଜାଗାରେ ବସିଥିଲ । ଆଜି ତ ସେ ଆସିଛି । ସେ ଶ୍ରେଷ୍ଠ ପିଲା, ଆଗରେ ବସିବ । ତୁମେ ପଛ ବେଞ୍ଚକୁ ଯାଅ ।" ମୁଁ ଟିକିଏ କଡ଼ା ସ୍ୱରରେ ତାକୁ କହିଲି ।

"ମୁଁ ଯିବି ନାହିଁ ।" ସେ ଜବାବ ଦେଲା ।

"ତୁମକୁ ଯିବାକୁ ହେବ ।"

"ମୁଁ ଯିବି ନାହିଁ ।" ସେ ପୁନର୍ବାର ଦମ୍ଭର ସହିତ ଉତ୍ତର ଦେଲା ।

"ତେବେ ତୁମେ ମୋ କ୍ଲାସରୁ ବାହାରି ଯାଅ ।" ମୁଁ ଆଦେଶ ଦେଲି ।

ଖରେଶ୍ୱରକୁ ସମସ୍ତେ ଡରନ୍ତି । ସେ ଜଣେ ଠାଣୁଆ ଛାତ୍ରନେତା, ପୁଣି ଜଣେ ପ୍ରଥମ ଶ୍ରେଣୀ ଡେପୁଟି ମାଜିଷ୍ଟ୍ରେଟଙ୍କ ଭଣଜା । ହେଡ଼ମାଷ୍ଟରଙ୍କୁ ସେ ଡରେଇ ଥରେଇ ରଖିଛି, ଅନ୍ୟ ଶିକ୍ଷକଙ୍କୁ ସେ କଣ ସହଜେ ଡରିବା ଜନ୍ତୁ ! ତାକୁ ପୁଣି ସମସ୍ତଙ୍କ ଆଗରେ ଶ୍ରେଣୀବାହାର ହୁକୁମ !

ଖରେଶ୍ୱର ଖର ଦର୍ପରେ ତା ବହିତକ ଧରି କ୍ଲାସରୁ ବାହାରି ଗଲା ଏବଂ ବାରଣ୍ଡାରେ ଠିଆହୋଇ ମୋତେ ଆହ୍ୱାନ ଦେବା ଭଙ୍ଗୀରେ ପଚାରିଲେ, "କୁଆଡ଼େ ଯିବି ?"

"ତୁମର ଯୁଆଡ଼େ ଇଚ୍ଛା, ଯାଇପାର । ହେଡ଼ମାଷ୍ଟରଙ୍କ ପାଖକୁ ଯାଅ ବା ମହାରାଜାଙ୍କ ପାଖକୁ ଯାଅ ।" ଏତିକି କହି ମୁଁ ଅନ୍ୟ ଶ୍ରେଣୀରେ ପାଠ ପଢ଼ାଇବାକୁ ଚାଲିଗଲି ।

ସ୍କୁଲ ଛୁଟିପରେ ମୁଁ ହେଡ଼ମାଷ୍ଟରଙ୍କୁ ଏହି ଘଟଣା ଜଣାଇବାକୁ ଯିବାବେଳେ ଦେଖିଲି ଖରେଶ୍ୱରର ମାମୁ ଭଗୀରଥ ପାଲ ତାଙ୍କ ପାଖରେ ବସିଛନ୍ତି । ମୁଁ କିଛି କହିବା ପୂର୍ବରୁ ଧ୍ୱଜେନ୍ଦ୍ରବାବୁ ହସି ହସି ମୋତେ ପଚାରିଲେ, "ଆଜ୍ ଖରେଶ୍ୱର ଏସେ କେନ୍ଦେ କେନ୍ଦେ ଆମାକେ ବଲ୍‌ଛିଲ, 'ରମେନ୍ଦ୍ରକୃଷ୍ଣବାବୁ ଆମାକେ କ୍ଲାସଥେକେ ବେର୍ କରେ ଦିୟେ ଘୋର ଅପମାନ ଦିୟେଛେନ ।' ବ୍ୟାପାର୍‌ଟା କି ?"

ମୁଁ ଘଟଣାଟି ବର୍ଣ୍ଣନା କଲି ଏବଂ କହିଲି, "ଦେଖନ୍ତୁ ମହାଶୟ, ମୁଁ ଯଦି ତାକୁ କିଛି ଅନ୍ୟାୟ ଆଦେଶ ଦେଇଥିଲି ବୋଲି ସେ ମନେ କଲା, ସେ ଅନ୍ତତଃ କିଛି ସମୟ ଧୈର୍ଯ୍ୟ ଧରି ମୋର ଆଦେଶ ପ୍ରଥମେ ମାନିଥାନ୍ତା ଏବଂ ପରେ ଆସି ଆପଣଙ୍କୁ

ଜଣାଇଥାନ୍ତି । କିନ୍ତୁ ତା ନ କରି କ୍ଲାସରେ ସିଧା ସିଧା ମୋତେ ଅମାନ୍ୟ କଲେ ମୁଁ ସେଠି ଶୃଙ୍ଖଳା ରଖିବି କିପରି ?"

ଭଗୀରଥବାବୁ ଏହିଠାରେ ମୋତେ ବାଧା ଦେଇ କହିଲେ, "ଆପଣଙ୍କର ଆଉ କିଛି କହିବା ଆବଶ୍ୟକ ନାହିଁ, ରାମକୃଷ୍ଣବାବୁ । ଏଥିପୂର୍ବରୁ ଅନେକ ଘଟନାରେ ମୁଁ ତା ଆଚରଣରେ ବ୍ୟସ୍ତ ହୋଇ ପଡ଼ିଲିଣି । ତା ବିରୁଦ୍ଧରେ ପୁଲିସ ରିପୋର୍ଟ ମଧ୍ୟ ପାଇଛି । ଆଜି ପୁଣି ଯେତେବେଳେ ଅଫିସରେ ଆଇ ଶୁଣିଲି ଯେ ଆପଣଙ୍କୁ ସେ ବିରକ୍ତ କରିଛି ଏବଂ ତାକୁ ଆପଣ କ୍ଲାସ୍‌ରୁ ବାହାର କରି ଦେଇଛନ୍ତି, ମୋ ପକ୍ଷରେ ସେ ଯଥେଷ୍ଟ ହୋଇଗଲା । ମୁଁ ଆସିଛି ହେଡ୍‌ମାଷ୍ଟରଙ୍କୁ କହି ତାର ଟ୍ରାନ୍‌ସଫର ସାର୍ଟିଫିକେଟ ନେଇଯିବି ।"

ମୁଁ କହିଲି, "ପିଲାର ଟ୍ରାନ୍‌ସଫର ନେଇଗଲେ ତ ତାର ସଂଶୋଧନ ହେଲା ନାହିଁ । ଶିକ୍ଷକ ଭାବରେ ମୁଁ କହିବି—ସେ ଏଠାରେ ଥାଉ । ତାକୁ ବାଟକୁ ଆଣିବାକୁ ହେବ । ମୋର ବିଶ୍ୱାସ, ସେ ନିଶ୍ଚୟ ବାଟକୁ ଆସିବ ।"

ହେଡ୍‌ମାଷ୍ଟରଙ୍କ ଦୁର୍ବଳତାର ସୁଯୋଗ ନେଇ ପିଲାମାନେ ଯେ ଦିନକୁ ଦିନ ଏପରି ଉଚ୍ଛୃଙ୍ଖଳ ହୋଇ ଯାଉଛନ୍ତି, ଏହି ଧାରଣା ମୋର ଦୃଢ଼ୀଭୂତ ହୋଇଥିଲା । ମୁଁ ଆସିଲାବେଳେ ତାଙ୍କରି ଆଡ଼କୁ ଚାହିଁ କହିଲି, "ଦେଖନ୍ତୁ, କାଲି ଯେପରି ଲିଖିତ କ୍ଷମାପ୍ରାର୍ଥନା ନ କରି ବୀରେଶ୍ୱର ମୋ କ୍ଲାସରେ ପ୍ରବେଶ ନ କରେ । ତା ନ ହେଲେ ସେ କ୍ଲାସ ଛାଡ଼ିବ, ନଚେତ୍ ମୋତେ କ୍ଲାସ୍ ଛାଡ଼ିବାକୁ ହେବ ।" ଏତିକି କହି ମୁଁ ସେଠାରୁ ଚାଲି ଆସିଲି ।

ପରଦିନ କ୍ଲାସକୁ ଗଲାବେଳେ ଦେଖିଲି, ହାତରେ କାଗଜ ଖଣ୍ଡିଏ ଧରି ବୀରେଶ୍ୱର ଦ୍ୱାର ମୁହଁରେ କବାଟ ପଛରେ ଠିଆ ହୋଇଛି । ଆଖି ତାର ଲୁହରେ ଛଳ ଛଳ । ତା ପିଠିରେ ହାତ ମାରି ତାକୁ କ୍ଲାସ ଭିତରକୁ ଟାଣି ନେଇ କହିଁଲା ସ୍ୱରରେ କହିଲି, "କାଲି ଏପରି ଦୁର୍ବୁଦ୍ଧି କାହିଁକି ହେଲା ତୋର ?"

ଅଧିକ କିଛି କହିବା ଆବଶ୍ୟକ ପଡ଼ିଲା ନାହିଁ । ବୀରେଶ୍ୱର ସେହିଦିନଠୁ ବଦଳିଗଲା । ମୁଁ ସେ ସ୍କୁଲ ଛାଡ଼ିବା ପର୍ଯ୍ୟନ୍ତ ଆଉ କେବେ ଥରେ ସୁଦ୍ଧା ତାର ଦୁଷ୍ଟାମି ଦେଖିନାହିଁ ବରଂ ଅନେକ ଘଟନାରେ ଛାତ୍ରମାନଙ୍କୁ ଶୃଙ୍ଖଳିତ କରିବା ସକାଶେ ତାର ନେତୃତ୍ୱକୁ ବ୍ୟବହାର କରିଛି ।

ଆମର ଓଡ଼ିଆରେ ଗୋଟିଏ ଢଗ ଅଛି, "ଖୁଣ୍ଟ ଗୁଣେ ଘୋଡ଼ା କୁଦେ ।" ମୋର ଦୃଢ଼ ଧାରଣା, ପିଲାର ଦୁଷ୍ଟାମି ପାଇଁ ତାର ମୁରବିମାନେ ବହୁ ପରିମାଣରେ ଦାୟୀ । ପିଲାକୁ ବାଟକୁ ଆଣିବାକୁ ହେଲେ ତୁମକୁ ପ୍ରଥମେ ବାଟରେ ଚାଲିବାକୁ

ହେବ । ଆଇନ ଓ ଶୃଙ୍ଖଳା ରକ୍ଷା କରିବା ଦିଗରେ ଦୃଢ଼ତା, ବାହାରେ କଠୋରତା ଅଥଚ ଅନ୍ତରରେ ସ୍ନେହ ସହାନୁଭୂତି, ପଦେ କହିଁଲେ କଥା—ଯେତେ ଦୁଷ୍ଟ ପିଲାକୁ ମଧ୍ୟ ମହମ ପରି ତରଳାଇ ଦେବ । ମାତ୍ର ତୁମ ଭିତରେ ସୂର୍ଯ୍ୟତାପର ସଂଜୀବନୀ ଥିବା ଦରକାର !

ଏଥିପୂର୍ବରୁ ମୁଁ ହେଡ୍‌ମାଷ୍ଟରଙ୍କ ଅନୁରୋଧରେ କେତେକ ମାସ ପାଇଁ ମଝିଆଁ ଲାଲ ସାହେବଙ୍କ କନିଷ୍ଠ ପୁତ୍ର ଶ୍ରୀମାନ୍ ନଳିନୀଚନ୍ଦ୍ର ଭଞ୍ଜ ଦେଓଙ୍କ ଗୃହଶିକ୍ଷକ ରୂପେ କାମ କରିଥିଲି । ସେତେବେଳେ ରାଜତନ୍ତ୍ରସ୍ଥ ସାହେବ ଥିଲେ ତାଙ୍କର ଅଭିଭାବକ, ସୁତରାଂ କେତେଥର ତାଙ୍କ ପାଖକୁ ଯିବାକୁ ପଡ଼ିଥିଲା । ସେ ରହନ୍ତି ରାଜବାଟୀରେ । କୋଡ଼ିଏ ସ୍ତାବକ ଓ ପରିଚରଙ୍କ ଦ୍ୱାରା ପରିବେଷ୍ଟିତ ହୋଇ ଝଣ୍ଡିଏ ଆରାମ ଚୌକିରେ ସେ ବସିଥାନ୍ତି । ସେବକମାନେ କିଏ ପାଣି ଗ୍ଲାସ, କିଏ ପିକଦାନି, କିଏ ବା ମୁହଁପୋଛା ତଉଲିଆ ଆଣି ପହଞ୍ଚାଇ ଦେଉଥାନ୍ତି । ରାଜତନ୍ତ୍ରସ୍ଥ ସାହେବ ହାଇ ମାରିଲେ ପାଖ ଲୋକମାନେ ଚୁଟିକି ଫୁଟାଇବାର ଦୃଶ୍ୟ ମୁଁ ଦେଖିଛି । ସେତିକିବେଳେ ମୋର 'ଦାସେ ଆପଣେ'ଙ୍କ ଚିନିକୋଣିଆ ବଗିଚ୍ଚ ବକ୍ତୃତା କଥା ମନେ ପଡ଼ିଯାଏ । 'ତୁମ୍ଭ' 'ମଣିମା' ଆଦି ସମ୍ବୋଧନରେ ଅଭ୍ୟସ୍ତ ନ ଥିବାରୁ ମୁଁ ସେଠାରେ ଖୁବ୍ କମ୍ କଥା କହୁଥିଲି । ଥରେ କଣ କହୁଁ କହୁଁ 'ଆପଣ' କହି ଦେଇଥିଲି ବୋଲି ଜଣେ ସ୍ତାବକ ବାହାରକୁ ଆସି ମୋତେ ଚେତାଇ ଦେଇଥିଲେ । କିନ୍ତୁ ମହାରାଜା ପ୍ରତାପଚନ୍ଦ୍ରଙ୍କ ପାଖରେ ସବୁ ପ୍ରକାର ସମ୍ବୋଧନ ଚାଲିଯାଉଥିଲା । ବୋଧହୁଏ ରାଜତନ୍ତ୍ରସ୍ଥ ସାହେବଙ୍କ ଦରବାର ଥିଲା ଏଇସବୁ ରାଜବଂଶୀୟ ପରମ୍ପରାର ଶେଷ ସ୍ମାରକ ।

ବଡ଼ ଲାଲସାହେବଙ୍କ ବାସଭବନ ଥିଲା ଶଙ୍ଖପଟାରେ, ସହରର କେନ୍ଦ୍ରସ୍ଥଳରୁ ଟିକିଏ ଦୂରରେ । ଦିନେ ଲାଲସାହେବ ଶରତଚନ୍ଦ୍ର ମୋତେ ଡକାଇ ପଠାଇଥିଲେ । ସାଇକେଲରେ ଯାଇ ତାଙ୍କୁ ଦେଖାକଲି । ସେ ତାଙ୍କ ପୁଅକୁ କିଛି ସମୟ ପଢ଼ାଇବାକୁ ମୋତେ କହିଲେ । ମୁଁ ଜାଣିଥିଲି ଯେ ହାଇସ୍କୁଲର ପୂର୍ବତନ ସହକାରୀ ପ୍ରଧାନ ଶିକ୍ଷକ ଇନ୍ଦୁବାବୁ ତାଙ୍କ ପୁଅକୁ ଇଂରାଜୀ ପଢ଼ାଇବାକୁ ନିଯୁକ୍ତ ହୋଇଛନ୍ତି । ପ୍ରତିଦିନ ପ୍ରାୟ ପାଞ୍ଚ ମାଇଲ ବାଟ ସାଇକେଲରେ ଯିବା ଆସିବା କରି ସାଢ଼େ ଦଶଟା ପୂର୍ବରୁ ସ୍କୁଲରେ ପହଞ୍ଚି କାମ କରିବା ମୋ ପକ୍ଷରେ ଅସମ୍ଭବ ନ ହେଲେ ବି କଷ୍ଟକର । ତେଣୁ ବିନୀତ ଭାବରେ ଅକ୍ଷମତା ଜଣାଇଲି । ସେ କହିଲେ, "ମୋ ପୁଅକୁ ଇଂରାଜୀ ପଢ଼ାଇବାକୁ ଇନ୍ଦୁବାବୁ ତ ଅଛନ୍ତି । ତା ଛଡ଼ା ଜଣେ ଆଙ୍ଗ୍ଲୋ-ଇଣ୍ଡିଆନ୍ ମହିଳା ଇଂରାଜୀରେ କଥାବାର୍ତ୍ତା ଶିଖାଇବାକୁ ରହିଛନ୍ତି । ଅଙ୍କ, ସାହିତ୍ୟ ପ୍ରଭୃତି ପଢ଼ାଇବାକୁ ମଧ୍ୟ ଅନ୍ୟ ଶିକ୍ଷକ ନିଯୁକ୍ତ ଅଛନ୍ତି । ମୁଁ ଆପଣଙ୍କୁ ପାଠ ପଢ଼ାଇବାକୁ ଡାକିନାହିଁ । ମୋ ପୁଅ ପାଠ ପଢ଼ି ଚାକିରି କରିବ, ଏ ଉଦ୍ଦେଶ୍ୟ ମୋର ନାହିଁ । ତାକୁ ଉପଯୁକ୍ତ ମଣିଷ କରି ଗଢ଼ିବା ମୋର ଇଚ୍ଛା । ସେଥିପାଇଁ ଜଣେ ଆଦର୍ଶ

ଶିକ୍ଷକ ପାଖରେ ଘଣ୍ଟାଏ ଘଣ୍ଟାଏ ବସିଲେ ଦେଖି ଶୁଣି ସେ ଅନ୍ତତଃ କିଛି ଭଲ ଗୁଣ ଶିଖିପାରିବ । ଏ ସମ୍ପର୍କରେ ଖବର ନେବାରେ କେତେକ ଲୋକ ମୋତେ ଆପଣଙ୍କ ନାମ କହିବାରୁ ମୁଁ ଡକାଇ ପଠାଇଥିଲି । ଆପଣଙ୍କୁ ସମସ୍ତ ନ ହେଲେ ମୁଁ ଗାଡ଼ି ପଠାଇ ଘେନି ଆସିବି ।"

ତାଙ୍କଠାରୁ ଏତିକି ଶୁଣିଲା ପରେ ମୋର ପୂର୍ବ ଉତ୍ତରକୁ ସଂଶୋଧନ କରିବା ଉଚିତ ମନେକରି କହିଲି, "ନିତାନ୍ତ ଦରକାର ହେଲେ ଆସିବି ।" ସେଦିନ ଲାଲସାହେବ ଶରତଚନ୍ଦ୍ରଙ୍କ ଦୂରଦୃଷ୍ଟି ଓ ମୂଲ୍ୟବୋଧକୁ ମନେ ମନେ ପ୍ରଶଂସା କରି ଘରକୁ ଫେରିଲି । ମାତ୍ର କେଉଁ କାରଣରୁ ଜାଣେନା, ସେ ମୋତେ ଆଉ ଡକାଇ ନ ଥିଲେ ।

ଏଣେ ସ୍କୁଲର ଶାସନକଳ କ୍ରମେ ଢିଲା ହୋଇ ଆସୁଥାଏ । ୧୯୪୧ ମସିହା ଡିସେମ୍ବର ମାସ । ଯେଉଁଦିନ ସ୍କୁଲର ଟେଷ୍ଟ ପରୀକ୍ଷା ଆରମ୍ଭ ହେବ, ସେହିଦିନ ସକାଳେ ଚପରାସି ହାତରେ ରାଜେନ୍ଦ୍ରବାବୁ ମୋତେ ବସାରୁ ଡକାଇ ପଠାଇଲେ । ଯାଇ ଯାହା ଶୁଣିଲି, ଅବାକ୍ ହୋଇଗଲି । ପୂର୍ବ ରାତିରେ ସ୍କୁଲର କମନ୍ ରୁମ୍, ଅଫିସ୍ ଓ ଲାଇବ୍ରେରୀ ବ୍ୟତୀତ ଅନ୍ୟ ସମସ୍ତ ଘରେ ଏପରିଭାବରେ ବସ୍ତା ପକାଇ ଦିଆଯାଇଥିଲା, ଯେପରି କି ଟେଷ୍ଟ ପରୀକ୍ଷା ହୋଇପାରିବ ନାହିଁ । କି ଜଘନ୍ୟ ପୈଶାଚିକ କାଣ୍ଡ ! ସ୍କୁଲର ନିର୍ଦ୍ଦିଷ୍ଟ କାର୍ଯ୍ୟକ୍ରମକୁ ଅକାମୀ କରିଦେବା ପାଇଁ କି ଅଭିନବ ଯୋଜନା ! କେତେବେଳେ, କେଉଁଠୁ ଓ କାହା ପ୍ରରୋଚନାରେ ଏତେ ମଇଳା ସଂଗୃହୀତ ହେଲା, ଭାବିପାରିଲି ନାହିଁ । ଢିଲା ଶାସନର ଅବଶ୍ୟମ୍ଭାବୀ ପରିଣତି ଏ ନିଶ୍ଚୟ । ସ୍କୁଲଗୃହର ପରିସ୍ଥିତି ଓ ବିଶୋଧନର ବ୍ୟବସ୍ଥା ସମ୍ପର୍କରେ ରାଜେନ୍ଦ୍ରବାବୁ ମୋ ସହ ଆଲୋଚନା କଲେ । ଟେଷ୍ଟ ପରୀକ୍ଷା ଅଗତ୍ୟା ଅନ୍ୟ ଦିନକୁ ଘୁଞ୍ଚାଇ ଦିଆଗଲା ।

ପ୍ରତ୍ୟେକ କଥାର ଗୋଟାଏ ସୀମା ଅଛି । ହାଇସ୍କୁଲରେ ଆଇନ ଶୃଙ୍ଖଳାର ଅଧୋଗତି ଯେ ସେହି ସୀମା ଅତିକ୍ରମ କରିଗଲାଣି, ତାହା ଉଲ୍ଲିଖିତ ଘଟଣାରୁ ସ୍ପଷ୍ଟ ଜଣାପଡ଼ିଲା । କର୍ତ୍ତୃପକ୍ଷଙ୍କ ନିକଟରେ ହେଡ୍‌ମାଷ୍ଟର ରାଜେନ୍ଦ୍ରବାବୁ କି କୈଫିୟତ୍ତ ଦେଲେ, ମୋତେ ଜଣାନାହିଁ, କିନ୍ତୁ କର୍ତ୍ତାଙ୍କର ସେଥିରେ ବୋଧହୁଏ ହୃଦ୍‌ବୋଧ ହେଲା ନାହିଁ । ୧୯୪୧ ମସିହାର ଆୟୁ ନିଃଶେଷ ହେବା ସଙ୍ଗେ ସଙ୍ଗେ ରାଜେନ୍ଦ୍ର-ବାବୁଙ୍କର ହେଡ୍‌ମାଷ୍ଟରୀ ମଧ୍ୟ ଅସ୍ତମିତ ହେଲା । ନବ ବର୍ଷର ପ୍ରାରମ୍ଭରେ ଉପର ମହଲରୁ ନିର୍ଦ୍ଦେଶ ଆସିଲା, ମୋତେ ସମସ୍ତ ଦାୟିତ୍ୱ ବୁଝାଇଦେଇ ସେ ଦିନକ ଭିତରେ ସ୍କୁଲରୁ ବିଦାୟ ନେବେ ।

ରାତିକ ଭିତରେ ରାଜେନ୍ଦ୍ରବାବୁ ରାଜେନ୍ଦ୍ରାସନରୁ ଖସି ପଙ୍କାର ହେଲେ । ସରକାରୀ ଆଦେଶ ଅନୁସାରେ ସେ ମୋତେ ସ୍କୁଲର କାଗଜପତ୍ର ବୁଝାଇଦେଲେ,

କିନ୍ତୁ ସବୁଠାରୁ ତାତ୍ପର୍ଯ୍ୟପୂର୍ଣ୍ଣ ହେଲା ତାଙ୍କ କ୍ୱାର୍ଟର୍ସର ଗୁର୍ଜ ଦେବା । ପିଲାଙ୍କୁ ଆଙ୍କୁ ଧରି ଘନଘନ ଭିତରେ ବସା ଛାଡ଼ିଦିବା ତାଙ୍କ ପକ୍ଷରେ କଷ୍ଟକର ହେବ ଜାଣି ସେ ମୋର ଅନୁଗ୍ରହ ଭିକ୍ଷା କଲେ । ଆଉ ଦୁଇଗୃହଦାନ ରହି ସୁବିଧାରେ ବସା ଛାଡ଼ିବାକୁ ଅକୁଣ୍ଠିତ ଚିତ୍ତରେ ମୁଁ ତାଙ୍କୁ ଅନୁମତି ଦେଲି । ସେତିକିବେଳେ ମୋର ମନେପଡ଼ିଲା, ସେ କିପରି ମୋର ନ୍ୟାଯ୍ୟ ପ୍ରାପ୍ୟ କ୍ୱାର୍ଟର୍ସରୁ କୂଟକୌଶଳ କରି ମୋତେ ବାହାର କରିଦେଇଥିଲେ । ଆଜି ତାଙ୍କ କ୍ୱାର୍ଟର୍ସରେ ଆଉ ଦୁଇଗୃହଦାନ ରହିବାପାଇଁ ସେ ମୋର ଅନୁଗ୍ରହପ୍ରାର୍ଥୀ ! ଭଗବାନଙ୍କ ଦରବାରରେ ବିଚାର ଓ ଶାସ୍ତିବିଧାନ ଏହିପରି ଯାଙ୍ଗେ ଯାଙ୍ଗେ ହୁଏ । ନାଲି ଫିତାର ଜାଲ୍‌ଫିସାଦ ତାକୁ ଦଣ୍ଡେ ଅଟକାଇ ରଖି-ପାରେନାହିଁ ।

ଏ ୧୯୪୬ ମସିହା ଜାନୁଆରି ପ୍ରଥମ ସପ୍ତାହର ଘଟନା । ସେହି ମାସ ୨° ତାରିଖ ଅଢ଼ିକୁ ପଡ଼ିଲା ସରସ୍ୱତୀ ପୂଜା । ସ୍କୁଲରେ କିପରି ଶୃଙ୍ଖଳାର ସହ ପୂଜାକାର୍ଯ୍ୟ ଏବଂ ବିସର୍ଜନ ଅନୁଷ୍ଠିତ ହେବ, ସେ ବିଷୟରେ ମୁଁ ଚିନ୍ତିତ ହୋଇପଡ଼ିଲି । ପୂଜାକାର୍ଯ୍ୟ ପରି ବିସର୍ଜନ ଦିନ ହାଇସ୍କୁଲ ଛାତ୍ରମାନେ ସହରର ପ୍ରଧାନ ରାସ୍ତା ଦେଇ ବୁଢ଼ାବଳଙ୍ଗ ନଦୀକୁ ଯାଆନ୍ତି ମେଢ଼ ସହିତ ପଟୁଆର କରି । ଦୀର୍ଘ ପଥ । ପୂର୍ବବର୍ଷମାନଙ୍କରେ ଏହି ଉପଲକ୍ଷରେ କେତେଥର ଗଣ୍ଡଗୋଳ ଘଟିଛି । ଏଥର ପୁଣି ଛାତ୍ରମାନେ ଅଧିକତର ଶକ୍ତିଶାଳୀ ହୋଇଛନ୍ତି । ଏକ ସମ୍ପୂର୍ଣ୍ଣ ଅଭିନବ ଉପାୟରେ ଟେଷ୍ଟ ପରୀକ୍ଷା ବନ୍ଦ କରି ଦେଇଛନ୍ତି । ତା ସତ୍ତ୍ୱେ ହେଡ଼ମାଷ୍ଟରଙ୍କ ଗୁରୁତ୍ୱ ବରଂ ଯାଇଛି, ସେମାନଙ୍କର କିଛି କ୍ଷତି ହୋଇନାହିଁ !

କିନ୍ତୁ ଆତ୍ମପ୍ରତ୍ୟୟବଳରେ ମୁଁ ଦମ୍ଭ ଧରି ବସିଥାଏ । ମୁଁ କିପରି ଏ ଆଠଶହ ଉଚ୍ଛୃଙ୍ଖଳ ଛାତ୍ରଙ୍କୁ ଆୟତ୍ତ କରି ନିର୍ବିଘ୍ନରେ ପୂଜାକାର୍ଯ୍ୟ ତୁଲେଇବି, ତାହା ଦେଖିବାକୁ ବନ୍ଧୁମାନେ ଓ ଶତ୍ରୁମାନେ ଅପେକ୍ଷା କରି ରହିଥାନ୍ତି । ପୂଜାର ସପ୍ତାହକ ପୂର୍ବରୁ ଦିନେ ଶିକ୍ଷକବନ୍ଧୁମାନଙ୍କୁ କହିଲି, "ମୁଁ ଟିକିଏ ଆଜି ଉପର ଶ୍ରେଣୀର ଛାତ୍ର-ମାନଙ୍କୁ ହଲ୍‌ରେ ଏକୁଟିଆ ଭେଟିବି । ଆପଣମାନେ ତଳ ଶ୍ରେଣୀର ପିଲାଙ୍କୁ ସମ୍ଭାଳି ରଖିଥାନ୍ତୁ ।"

ପ୍ରାୟ ତିନିଶହ ଛାତ୍ର ଉପର ମହଲାରେ ଥିବା ହଲ୍‌କୁ ଗଲେ । ଏଥିପୂର୍ବରୁ ଏହି ହଲ୍‌ରେ କେତେବେ ସଭାସମିତି ହେଉଥିଲେ ପ୍ରଧାନ ଶିକ୍ଷକ ଓ ଅନ୍ୟ ତିନିଶ ଜଣ ଶିକ୍ଷକଙ୍କ ଉପସ୍ଥିତିରେ ମଧ୍ୟ ଛାତ୍ରମାନେ ଦଣ୍ଡେହେଲେ ସୁସ୍ଥ ଧରି ବସିପାରନ୍ତି ନାହିଁ । ଟେବୁଲ ଉପରେ ଗୋଡ଼ ରଖି ଘୋଡ଼ାନାଚ ଓ ମାଛହାଟର ଅଭିନୟ କରନ୍ତି । ଆଜି ସେ ହଲ୍‌ରେ ଉପର ଶ୍ରେଣୀର ଛାତ୍ରମାନେ ସମବେତ । ଅଣତିରିଶ ଜଣ ଶିକ୍ଷକଙ୍କୁ ତଳେ ରଖି ମୁଁ ଆସିଛି ଏକା ସେମାନଙ୍କର ସମ୍ମୁଖୀନ ହେବାପାଇଁ ।

ମୋର ବକ୍ତବ୍ୟ କହିବାକୁ ଠିଆହେଲି । ସମସ୍ତେ ଚୁପ୍‌ଚାପ୍ । ମୁଁ କଣ କହିବି ଶୁଣିବାକୁ ଉତ୍କଣ୍ଠ ହୋଇ ରହିଥାନ୍ତି । କହିଲି, "ପିଲାମାନେ, ଏଥିମଧ୍ୟରେ ଯାହାସବୁ

ଘଟିଯାଇଛୁ, ସେଥିରୁ ସାଧାରଣ ଲୋକଙ୍କର ଏବଂ ମହାଶୟାଙ୍କର ମଧ୍ୟ ଧାରଣା ହୋଇଯାଇଛି ଯେ ହାଇସ୍କୁଲ୍ ପିଲାମାନେ ନିତାନ୍ତ ଅଭଦ୍ର ଓ ବଜାଙ୍ଗ ପାଲଟି-ଗଲେଣି । ଘଟନା ଦୃଷ୍ଟିରୁ ସେମାନଙ୍କର ଏପରି ଧାରଣା ହେବା ଅସ୍ୱାଭାବିକ ନୁହେଁ । କିନ୍ତୁ ମୋର ବିଶ୍ୱାସ, ତୁମ୍ଭେମାନେ ଯେଉଁ ଭୁଲ୍ କରିଛ, ସେଥିଲାଗି ଆମେ ଅଧିକାଂଶରେ ଦାୟୀ । ତୁମ୍ଭେମାନେ ପ୍ରକୃତରେ ବଜାଙ୍ଗ ବା ଅଭଦ୍ର ନୁହଁ । ସମସ୍ତେ ଭଦ୍ରପରିବାରର ପିଲା । କିନ୍ତୁ ତୁମକୁ ଏହାର ପ୍ରମାଣ ଦେବାକୁ ହେବ । ବାରିପଦା ସହରବାସୀଙ୍କୁ ଦେଖାଇଦେବାକୁ ହେବ ଯେ ତୁମ୍ଭେମାନେ ସମସ୍ତେ ଭଦ୍ରଘରର ସନ୍ତାନ ଏବଂ ଭଦ୍ରବ୍ୟବହାର ଶିଖିଛ । କଣ ପାରିବ ନାହିଁ ?''

ଗୋଟିଏ ସ୍ୱରରେ ସ୍ତ୍ରରଣିହ କଣ୍ଠରୁ ଉଠିଲି, ''ହଁ ସାର୍, ନିଶ୍ଚୟ ପାରିବୁ ।'' ବିରାଟ ହଲ୍‌ଟି ମୁହୂର୍ତ୍ତିକପାଇଁ ଶବ୍ଦାୟିତ ହୋଇ ପୁଣି ନୀରବ ହୋଇଗଲା ।

ମୁଁ ଦେଖିଲି ଔଷଧ ଠିକ୍ ଧରିଛି । ପୁଣି କହିଲି, ''ସର୍ବଦା ପୂଜା Processionରେ ଶିକ୍ଷକ, ହେଡ଼ମାଷ୍ଟର ଓ ଲାଠିଧାରୀ ପୁଲିସ୍ ତୁମ ପାଖେ ପାଖେ ଚାଲନ୍ତି । ଏଥର କିନ୍ତୁ କେହି ଯିବେନାହିଁ । ମୁଁ ବି ଯିବିନାହିଁ । କେବଳ ବାଧ୍ୟରକ୍ଷା ପାଇଁ ଜଣେ ପୋଲିସବାଲା ଯାଇପାରନ୍ତି । ତୁମ୍ଭମାନଙ୍କୁ ନିଜ ଦାୟିତ୍ୱରେ ପୂର୍ଣ୍ଣ ଶୃଙ୍ଖଳାର ସହିତ Procession ପରିଚାଳନା କରିବାକୁ ହେବ । କଣ କହୁଛ ?''

ସେହି ଗୋଟିଏ ଉତ୍ତର, ''ହଁ ସାର୍, ନିଶ୍ଚୟ କରିପାରିବୁ ।''

ତହିଁ ଆରଦିନ ଗଳେ ସାଲୁ କନା ଓ ଦୁଇ ତଜନଖଣ୍ଡେ ସେଫ୍‌ଟିପିନ୍ ମଗାଇଦେଲି । କୋଡ଼ିଏଜଣ ସ୍ୱେଚ୍ଛାସେବକଙ୍କ ପାଇଁ ବ୍ୟାଜ୍ ତିଆରି ହେଲା । ସେଇ ଦି ଦି ଆଙ୍ଗୁଳ ନାଲି କନା ମ୍ୟାଜିକ୍ ପରି କାମ ଦେଲା । ସେ ବର୍ଷ ଶୋଭାଯାତ୍ରାରେ ଶୃଙ୍ଖଳାର କୌଣସି ବ୍ୟତିକ୍ରମ ଘଟିଲା ନାହିଁ । ଧାଡ଼ିରୁ ଜଣେ କିଏ ଟିକିଏ ପଦାକୁ ବାହାରିଗଲେ ସ୍ୱେଚ୍ଛାସେବକମାନେ ସଙ୍ଗେ ସଙ୍ଗେ ତାକୁ ଧାଡ଼ିଭୁକ୍ତ କରିଦେଉଥାନ୍ତି । ସହରବାସୀ ଏ ଦୃଶ୍ୟ ଦେଖି ଅବାକ୍ ହୋଇଗଲେ । ପୂଜା ପରେ ମୁଁ ପୁଣି ଥରେ ପିଲାମାନଙ୍କୁ ଏକାଠି କରି ସେମାନଙ୍କ ଶୃଙ୍ଖଳାଜ୍ଞାନକୁ ସାବସ୍ ଦେଲି । ଗୁରୁଙ୍କଠାରୁ ପ୍ରଶଂସା ଶୁଣି ସେମାନଙ୍କର ହୃଦୟ ଗର୍ବ ଓ ଆନନ୍ଦରେ ଫୁଲିଉଠିଲା । ପାଠକମାନଙ୍କୁ ଏଠାରେ ସ୍ମରଣ କରାଇଦେବାକୁ ଚାହେଁ ଯେ ଏ ଶୋଭାଯାତ୍ରା ପରିଚାଳନାରେ ଏକ ମୁଖ୍ୟ ଅଂଶ ଗ୍ରହଣ କରିଥିଲା ମୋର ସେହି ଅବାଧ୍ୟ ଛାତ୍ର ବୀରେଶ୍ୱର ।

## ପୁଣି ଏକ ସଙ୍କଟ

ପ୍ରାୟ ଦେଢ଼ମାସ ମୁଁ ଏହିପରି ଅସ୍ଥାୟୀଭାବରେ ସ୍କୁଲର ପ୍ରଧାନ ଶିକ୍ଷକକାର୍ଯ୍ୟ ଚଳାଇଲା ପରେ ଶଚୀନ୍ଦ୍ରନାଥ ଦାସ ଫେବୃଆରୀ ୧୨ ତାରିଖରେ ସ୍କୁଲକୁ ପ୍ରଧାନ

ଶିକ୍ଷକ ହୋଇ ଆସିଲେ । ଏ ମହାଶୟ ପୂର୍ବେ ସେହି ହାଇସ୍କୁଲର ହେଡ୍‌ମାଷ୍ଟର ଥିଲେ । ତାପରେ ପଦୋନ୍ନତି ଫଳରେ ଷ୍ଟେଟ ଶିକ୍ଷା ବିଭାଗର ସୁପରିଣ୍ଟେଣ୍ଡେଣ୍ଟ ହୋଇଥିଲେ । ବର୍ତ୍ତମାନ ଶ୍ରୀ ଗୋକୁଳଚନ୍ଦ୍ର ଶତପଥୀଙ୍କୁ ଉକ୍ତ ପଦରେ ରଖାଇ ତାଙ୍କୁ 'ପୁନର୍ମୂଷିକୋ ଭବ' କରାଗଲା । ଶଚୀବାବୁ ଆସିବାରୁ ମୁଁ ପୁଣି ମୋର ପୂର୍ବ ସ୍ଥାନ ସହକାରୀ ପ୍ରଧାନ ଶିକ୍ଷକ ପଦକୁ ଚାଲି ଆସିଲି ।

ଶଚୀବାବୁ ସ୍କୁଲକୁ ଆସିବାପରେ ତାଙ୍କର ମାନସିକ ବିକୃତି ବୃଦ୍ଧିପ୍ରାପ୍ତ ହେଲା । ଏଥିପୂର୍ବରୁ ଜଟିଳଙ୍କୁ ନିକାଶୀବାବୁଙ୍କୁ ନେଇ ଯେତେବେଳେ ତାଙ୍କ ଉପରେ ଅବସ୍ଥାପିତ କରାଯାଇଥିଲା, ସେତେବେଳେ ତାଙ୍କର ମସ୍ତିଷ୍କ ବିକାର ପ୍ରଥମେ ଦେଖାଦେଇଥିଲା । ନିକାଶୀବାବୁ ସେଠାରୁ ବିଦାୟ ନେଇ ଆସିବା ପରେ ପରେ ସେ କିଛିଦିନ ପାଇଁ କିଛିଟା ପ୍ରକୃତିସ୍ଥ ହୋଇଥିଲେ । ବର୍ତ୍ତମାନ ଗ୍ରେଡରେ ତାଙ୍କୁ ତଳକୁ ଖସାଇ ଦିଆଯାଇଥିବାରୁ ସେ ବିଶେଷ ଲାଞ୍ଛିତ ଓ ଅପମାନିତ ବୋଧକଲେ ଏବଂ ତାହା ପ୍ରତିହିଂସା ତାଙ୍କୁ କଲା ଅନ୍ଧପାଗଳ ।

ସ୍କୁଲ ଇତିହାସରେ ଚରମ ଦୁର୍ଗତିର ବେଳ ଆସି ପହଞ୍ଚିଲା । ଦେୱାନ ଜେ. ଏ. ନିୟୋଗୀଙ୍କ ସମୟରେ ଜାତିବର୍ଣ୍ଣନିର୍ବିଶେଷରେ ସମସ୍ତ ପ୍ରଜାଙ୍କୁ ନିରପେକ୍ଷ ବିଚାର ମିଳୁ ନ ଥିବାର ଘଟନା ହେବାରୁ ମିଃ ପାଣ୍ଡେ ନାମକ ଜଣେ ଉତ୍ତର ଭାରତୀୟ ବ୍ୟକ୍ତିଙ୍କୁ ଷ୍ଟେଟର ଦେୱାନ ନିଯୁକ୍ତ କରାଯାଇଥାଏ । ଠିକ୍ ସେତିକବେଳେ ଶଚୀବାବୁ ତାଙ୍କ ଶକ୍ତିସାମର୍ଥ୍ୟର ପ୍ରମାଣ ଦେବାକୁ ଆରମ୍ଭ କଲେ । ତାଙ୍କର ଧାରଣା ହୋଇଥିଲା ଯେ ଷ୍ଟେଟ କର୍ତ୍ତୃପକ୍ଷ ତାଙ୍କୁ ଦୁର୍ବଳ ଓ ଅସମର୍ଥ ମନେକରି ତଳକୁ ଖସାଇ ଆଣିଛନ୍ତି । ଏ ବିଷୟ ଏକାଧିକ ବାର ମୁଁ ତାଙ୍କ ମୁହଁରୁ ଶୁଣିଛି । ସେ ମୋତେ ଥରେ ସ୍କୁଲର ଏକ ନିଭୃତ ପ୍ରକୋଷ୍ଠକୁ ଡାକି ନେଇ କହିଲେ, "ରାମକୃଷ୍ଣବାବୁ, ଆପଣଙ୍କ ପରି ଜଣେ ସୁଯୋଗ୍ୟ ଲୋକକୁ ଏ ଷ୍ଟେଟ ଏପର୍ଯ୍ୟନ୍ତ ଚିହ୍ନିପାରିଲେ ନାହିଁ । ବାହାରକୁ ଚାଲିଗଲେ ଆପଣଙ୍କୁ ଯଥେଷ୍ଟ ଆଦର ସମ୍ମାନ ମିଳିବ ମୁଁ ଜାଣେ । କିନ୍ତୁ ଏଠାରେ ଆପଣଙ୍କପ୍ରତି କି ବିଚାର କରାଯାଇଛି ? ମୋ କଥା ତ ଦେଖୁଛନ୍ତି··· ·" ଇତ୍ୟାଦି ଇତ୍ୟାଦି । ମୋ ଗ୍ରେଡରେ ମୁଁ ଆଦୌ ଅସନ୍ତୁଷ୍ଟ ନ ଥିଲି କି ସେପର୍ଯ୍ୟନ୍ତ ତାଙ୍କୁ ସେ ବିଷୟରେ କିଛି କହି ନ ଥିଲି । ଅଥଚ ମୋତେ ଏପରି ଡାକି କହିବା ତାଙ୍କର କି ଆବଶ୍ୟକ ଥିଲା ? କେବଳ ତାଙ୍କ ନିଜ ମନୋଭାବ ବଖାଣିବା ଥିଲା ତାଙ୍କର ଉଦ୍ଦେଶ୍ୟ । କିନ୍ତୁ ଏପରି ଅରଣ୍ୟରୋଦନଦ୍ୱାରା ଶକ୍ତି ସଞ୍ଚୟ କରିବାକୁ ଚେଷ୍ଟା କରିବା ନ୍ୟୂନମନୋବୃତ୍ତିର ଲକ୍ଷଣ ଛଡ଼ା ଆଉ କିଛି ନୁହେଁ ଏବଂ ଶଚୀବାବୁ ଥିଲେ ସେହି ପ୍ରକୃତିର ଲୋକ ।

ଷ୍ଟେଟ ସରକାର ଏବଂ ମହାରାଜାଙ୍କପ୍ରତି ତାଙ୍କର ଆନୁଗତ୍ୟ ଦେଖାଇପାରିଲେ ତାଙ୍କୁ ସୁବିଚାର ମିଳିବ ଭାବି ସେ ତାର ପ୍ରଥମ ପ୍ରମାଣ ଦେବାକୁ ଆରମ୍ଭ

କଲେଜ ହାଇସ୍କୁଲ ପଡ଼ିଆରେ । ବ୍ୟାୟାମବିଶାରଦ ଶ୍ରୀ ରାଧାଶ୍ୟାମ ଦାସଙ୍କ ସହାୟତାରେ ଅନବରତ ସ୍କୁଲର ପିଲାମାନଙ୍କର ମାର୍ଚ୍ଚିଂ ଓ ଡ୍ରିଲ । ଗୋଲପବାଗ ପ୍ରକମ୍ପିତ ହେଲା କାନ୍ତକବି ଲକ୍ଷ୍ମୀକାନ୍ତଙ୍କ ରଚିତ ଗୋଟିଏ ଉନ୍ମାଦନାଭରା ଜାତୀୟ ସଙ୍ଗୀତର ଝଙ୍କାରରେ—

"ମୋର ଏହୁ ଭକ୍ତଭୂମି ମୋର ମହାରାଜା,
ଜନ୍ମେ ଜନ୍ମେ ଏ ଦୁହିଙ୍କୁ କରୁଥିବି ମୁଁ ପୂଜା ।
ଦେଖରେ ଦେଖରେ ପୂର୍ବ ନଭେ ଉଇଁ ଆସୁଛି ସୂର୍ଯ୍ୟ
ଦମାମ୍ ଦମାମ୍ ମାଦଳ ବାଜେ ଗର୍ଜିଉଠେ ତୂର୍ଯ୍ୟ ।
କର୍ମ ଆଗେ କର୍ମ ଆଗେ, ଆଗେଇ ଚାଲରେ ଅଗ୍ରଭାଗେ
ସେବା ଧର୍ମ ମର୍ମେ ଜାଗେ ରକ୍ତ ଲାଗେ ତାଜା,
ମୋର ଏହୁ ଭକ୍ତଭୂମି ମୋର ମହାରାଜା । ..." ଇତ୍ୟାଦି

ଏ ମାଦଳ ଓ ତୂର୍ଯ୍ୟର ପ୍ରତିଧ୍ୱନି ମହାରାଜାଙ୍କ କାନରେ ବାଜିଲା କି ନାହିଁ କେଜାଣି, ସ୍କୁଲର ପାଠପଢ଼ା ସମ୍ପୂର୍ଣ୍ଣ ବିପର୍ଯ୍ୟସ୍ତ ହୋଇ ପଡ଼ିଲା । ଏତେ ବଡ଼ ଗୋଟାଏ ଶିକ୍ଷାନୁଷ୍ଠାନର ମୁଖ୍ୟ ଯଦି ବିକୃତମସ୍ତିଷ୍କ ହୁଅନ୍ତି, ତେବେ ତାର ପରିଣତି କଣ ହେବ, ଯେ କୌଣସି ବ୍ୟକ୍ତି ହୃଦୟଙ୍ଗମ କରି ପାରୁଥିବେ । କିନ୍ତୁ ପରିତାପର କଥା, ସେତେବେଳେ ଷ୍ଟେଟର କର୍ତ୍ତାମାନେ କେହି ତାହା ଉପଲବ୍ଧି କଲେ ନାହିଁ । ମହାରାଜା ଦେଓ୍ୱାନଙ୍କ ଉପରେ ସବୁ ଭାର ଅର୍ପଣ କରି ନିଶ୍ଚିନ୍ତ ରହିଥିଲେ । ଦେଓ୍ୱାନଙ୍କୁ ଧାରଣା ଦିଆଗଲା ଯେ ହାଇସ୍କୁଲର ଶିକ୍ଷକମାନେ କାମ ନ କରି ଠକୁଥିଲେ, ଶଚୀବାବୁ ସେମାନଙ୍କୁ କାମରେ ଖଟାଇବାରୁ ସେମାନେ ତାଙ୍କୁ ପାଗଳ ବୋଲି ପ୍ରଚାର କରୁଛନ୍ତି ।

ମୁଁ ବଡ଼ ଅଡ଼ୁଆ ପରିସ୍ଥିତିରେ ପଡ଼ିଲି । ଶଚୀବାବୁ ମୋ ପ୍ରତି କୌଣସି ଦୁର୍ବ୍ୟବହାର କରୁ ନ ଥିଲେ ସତ, କିନ୍ତୁ ମୋର ଜ୍ଞାତସାରରେ ଅନ୍ୟ ଶିକ୍ଷକମାନଙ୍କୁ ହଇରାଣ କରୁଥିଲେ ଏବଂ ବେଳେ ବେଳେ ଅପମାନ ମଧ୍ୟ ଦେଉଥିଲେ । ମୁଁ ତାଙ୍କ ବସା ପାଖରେ ରହୁଥିବାରୁ ଅନେକ ସମୟରେ ତାଙ୍କର ପାଗଳାମି ଦେଖୁଥିଲି ଏବଂ ବାଗ୍ଲଳତା ଶୁଣୁଥିଲି । ପଡ଼ିଆ ମଝିରେ ଏକାଦିକ୍ରମେ ଘଣ୍ଟା ଘଣ୍ଟା ଠିଆ ହୋଇ ସେ ମୋତେ ତାଙ୍କର ପ୍ରଲାପ ଶୁଣାନ୍ତି । ମୋତେ ଯେତେ କଷ୍ଟ ବୋଧ ହେଲେ ସୁଦ୍ଧା ତାଙ୍କ ପାଖରୁ ଖସି ଆସିବାର ଉପାୟ ନ ଥାଏ । ଥରେ ଥରେ ରାତି ନ ପାହୁଣୁ ସେ ମୋ ଘରର ବାଡ଼ ଦ୍ୱାରବାଟେ ଅତର୍କିତ ଭାବରେ ପ୍ରବେଶ କରି ଆରମ୍ଭ କରନ୍ତି ତାଙ୍କର ବିରାମହୀନ ଅଭିନୟ । ଶାନ୍ତିରେ କର୍ତ୍ତବ୍ୟ ସମ୍ପାଦନ କରିବା ଦିନକୁ ଦିନ ଅସମ୍ଭବ ହେଲା । ହେଡ଼ମାଷ୍ଟରଙ୍କ ବିରୁଦ୍ଧରେ ଦେଓ୍ୱାନ ବା ମହାରାଜାଙ୍କ ନିକଟରେ ଫେରାଦ ହେବାକୁ ମୋତେ କେତେକ ବରିଷ୍ଠ ବ୍ୟକ୍ତି ପରାମର୍ଶ ଦେଲେ । କିନ୍ତୁ

ଶଚୀବାବୁଙ୍କର କୌଣସି ଅନିଷ୍ଟ କରିବାକୁ ମୁଁ ଇଚ୍ଛା କରୁ ନ ଥିଲି । ଏକେ ତ ସେ ମୋର ଗୁରୁସ୍ଥାନୀୟ, ବୟସ୍କ, ବିଦ୍ୱାନ୍ ଏବଂ ଅଭିଜ୍ଞ, ଦ୍ୱିତୀୟରେ ଅତ୍ୟନ୍ତ ଅଭାବଗ୍ରସ୍ତ । ଏଭଳି ଲୋକର ଚାକିରିରେ ଆଘାତ ଘଟାଇଲା ଭଳି କୌଣସି ପଦକ୍ଷେପ ନେବା ନିଷ୍ଠୁରତା ହେବ ବୋଲି ମନେ କଲି । ମୁଁ ସ୍ଥିର କଲି, ଇସ୍ତଫା ଦେଇ ବରଂ ସେଠାରୁ ଚାଲି ଆସିବି କିନ୍ତୁ ତାଙ୍କର କିଛି ଅନିଷ୍ଟ କରିବି ନାହିଁ ।

ମୋର ଅଧ୍ୟାପକ ଶ୍ରୀରାମଚନ୍ଦ୍ର ମହାପାତ୍ର ସେହି ବର୍ଷ ଫେବୃଆରୀ ମାସରେ ମାଟ୍ରିକ୍ୟୁଲେଶନ ପରୀକ୍ଷାକେନ୍ଦ୍ରର ସୁପରିଣ୍ଟେଣ୍ଡେଣ୍ଟ ହୋଇ ବାରିପଦା ଯାଇଥାନ୍ତି । ଠିକ୍ ସେହି ସମୟରେ ପରୀକ୍ଷକମାନଙ୍କ ସଭାରେ ଯୋଗ ଦେବାଲାଗି ମୁଁ ପାଟନା ଯିବାକୁ ବାହାରିଥାଏ । ଶଚୀବାବୁଙ୍କ ପାଗଳାମି କଥା ଶୁଣି ଶ୍ରୀରାମବାବୁଙ୍କ କପରି ନିର୍ବିଘ୍ନରେ ପରୀକ୍ଷା ପରିଚାଳନା କରିବେ ଭାବି ଚିନ୍ତିତ ହୋଇ ପଡ଼ିଲେ । ତେଣୁ ମୁଁ ବାଧ୍ୟ ହୋଇ ପାଟନା ଯିବା ବନ୍ଦ କଲି । ପରୀକ୍ଷା ଶେଷରେ ମୁଁ ଶ୍ରୀରାମବାବୁଙ୍କୁ ସମସ୍ତ ବିଷୟ ଜଣାଇଲି ଏବଂ ସେ ପରିସ୍ଥିତିରେ ମୁଁ ଇସ୍ତଫା ଦେବାକୁ ସ୍ଥିର କରିଥିବା କଥା କହିଲି । ହଠାତ୍ ଇସ୍ତଫା ନ ଦେଇ କିଛିଦିନ ଛୁଟି ନେବାକୁ ସେ ମୋତେ ପରାମର୍ଶ ଦେଲେ । ତଦନୁଯାୟୀ ମୁଁ କଟକ ଆସି ଦୀର୍ଘ ଛୁଟି ପ୍ରାର୍ଥନା କରି ଦରଖାସ୍ତ ପଠାଇଦେଲି ।

ମୁଁ ଚାଲି ଆସିବା ପରେ ସ୍କୁଲର ଅବସ୍ଥା ଅସମ୍ଭାଳ ହେଲା । କର୍ତ୍ତୃପକ୍ଷଙ୍କ ନିର୍ଦ୍ଦେଶମତେ ମୁଖ୍ୟ ଡାକ୍ତର ଶଚୀବାବୁଙ୍କୁ ପରୀକ୍ଷା କରି ରିପୋର୍ଟ ଦେଲେ ଏବଂ ତାହାର ଫଳରେ ତାଙ୍କୁ କିଛିଦିନ ଛୁଟି ନେବାକୁ ବାଧ୍ୟ କରାଗଲା ।

ତା ୫-୩-୪୬ ଠାରୁ ତା ୨୧-୬-୪୬ ପର୍ଯ୍ୟନ୍ତ ଛୁଟିରେ ରହି ମୁଁ ବାରିପଦା ଫେରିଲି । ସେଠାରେ ପହଞ୍ଚି ଦେଖିଲି ଶଚୀବାବୁ ମଧ୍ୟ ଛୁଟିରୁ ଫେରି କାର୍ଯ୍ୟରେ ଯୋଗ ଦେଇଛନ୍ତି । ଦିନେ ଦୁଇଦିନ ତାଙ୍କର ଗତିବିଧି ଦେଖିବା ପରେ ଜାଣିଲି ତାଙ୍କ ପାଗଳାମିର ମାତ୍ରା ଆହୁରି ବଢ଼ିଛି ପଛକେ, କମିନାହିଁ । ପ୍ରଥମ ସାକ୍ଷାତବେଳେ କଥାପ୍ରସଙ୍ଗରେ ସେ ମୋତେ କହିଲେ, "ରାମକୃଷ୍ଣବାବୁ, ଏ ଛୁଟିଭିତରେ ମୁଁ ବଡ଼ ଅଭାବରେ ପଡ଼ିଗଲି । ଗୋଟିଏ ପଇସା ମତେ ଶହେ ଟଙ୍କା ପରି ଲାଗିଲା ।" ...... ଇତ୍ୟାଦି କେତେ କଣ ।

ଏଭଳି ଲୋକ ବିରୁଦ୍ଧରେ କିଛି କରିବାଟା ନିଶ୍ଚୟ ଅନ୍ୟାୟ ହେବ, କିନ୍ତୁ ତାଙ୍କ ଅଧୀନରେ ମୁଁ କାମ କରିବି କେମିତି ?

## ଚାକିରିରୁ ଇସ୍ତଫା

ମନ ମୋର ତିକ୍ତ ହୋଇ ଉଠିଲା । ଷ୍ଟେଟ୍ କର୍ତ୍ତୃପକ୍ଷ କିପରି ନିଶ୍ଚିନ୍ତ ରହି ଏ ପ୍ରହସନ ଦେଖୁଛନ୍ତି, ଭାବି ଆଶ୍ଚର୍ଯ୍ୟ ହେଲି । ଯାହା ହେବାର ହେଉ, ମୋତେ

ପରବର୍ତ୍ତୀ ପନ୍ଥା ଅତି ଶୀଘ୍ର ସ୍ଥିର କରିବାକୁ ହେବ । ଇସ୍ତଫା ଦେବା ଛଡ଼ା ଅନ୍ୟ ଉପାୟ ନାହିଁ । ଏଗାର ବର୍ଷର ମାୟାମମତାକୁ ପାଦରେ ଠେଲି ଦେଇ ୧୯୪୬ ଜୁନ୍ ୨୪ ତାରିଖରେ ଇସ୍ତଫାପତ୍ରଟିଏ ଲେଖି ଅଫିସରେ ଦେଇଆସିଲି ।

ଶଚୀବାବୁ ମହା ଅଡୁଆରେ ପଡ଼ିଲେ ! ରାମକୃଷ୍ଣବାବୁ କାହିଁକି ଚାଲି ଯାଉଛନ୍ତି, ଏ କଥା ନିଶ୍ଚୟ ସ୍କୁଲ ଓ ଅଭିଭାବକ ମହଲରେ ଆଲୋଚିତ ହେବ ଏବଂ ମୁଁ ଇସ୍ତଫାର କାରଣ ଯାହା ଲେଖିଥିଲେ ସୁଦ୍ଧା ତାହା ସମସ୍ତେ ସ୍ପଷ୍ଟ ଅନୁମାନ କରିନେବେ । 'ଲୁଚୁଛୁ ନା ଗୋଡ଼ ଦୁଇଟି ଦିଶୁଛୁ ।' ଅଧିକାଂଶ ଭାବିବେ ଯେ ଶଚୀବାବୁଙ୍କ ପାଗଲାମି ଯୋଗୁ ସେ ଚାଲି ଯାଉଛନ୍ତି । ଦେଓ୍ୱାନଙ୍କ କାନକୁ ମଧ୍ୟ କଥାଟା ଯିବ । ଅଥଚ ଏଣେ ମୁଁ ଚାଲିଗଲେ ତାଙ୍କ ପଥ ପରିଷ୍କାର ହୋଇ ଯାଉଛି । ମ୍ୟାନେଜିଂ କମିଟିରେ ମୋତେ ହେଡ୍‌ମାଷ୍ଟର କରିବାପାଇଁ ଯେଉଁ ପ୍ରସ୍ତାବ ଆସିଥିଲା, ତାହାର ମୂଲ୍ୟ କିଛି ରହିବ ନାହିଁ । ଏ ବିଷୟରେ ବହୁତ ଭାବି ଭାବି ଶେଷରେ ମୋ ଇସ୍ତଫା ପତ୍ରରେ ମୋର ଏକ ଲମ୍ବା ଚଉଡ଼ା ପ୍ରଶସ୍ତି ଲେଖି ସୁପାରିସ୍ କରି ଉପରକୁ ପଠାଇଦେଲେ ।

ଷ୍ଟେଟ୍ ସରକାରଙ୍କଠାରୁ ଟ୍ରେନିଂବେଳେ ଷ୍ଟାଇପେଣ୍ଡ୍ ନେଇ ମୁଁ ପାଞ୍ଚ ବର୍ଷ ଚାକିରି କରିବି ବୋଲି ଚୁକ୍ତି ଲେଖି ଦେଇଥିଲି । ପାଞ୍ଚ ବର୍ଷ ପୂରି ନାହିଁ, ଇସ୍ତଫା ଦେଉଛି । ଫଳାଫଳ ପାଇଁ ମୁଁ ପ୍ରସ୍ତୁତ । ଖୁବ୍ ହେଲେ ଷ୍ଟାଇପେଣ୍ଡ୍ ଟଙ୍କାଟା ଫେରସ୍ତ ଦେବାକୁ ପଡ଼ିପାରେ । ତା' ପଛେ ଦେବି, କିନ୍ତୁ ଏଠାରେ ଆଉ ଅଧିକ କାଳ ଚାକିରି କରିବା ସମ୍ଭବ ନୁହେଁ । ଜଣେ ପାଗଳ ହେଡ୍‌ମାଷ୍ଟର ଯେଉଁଠି ଛଅମାସ ରାଜତ୍ୱ କରି ପାରୁଛନ୍ତି, ସେଠାରେ ଚାକିରିର ମର୍ଯ୍ୟାଦା ଆଉ କଅଣ ଅଛି ଯେ ରହିବ ?

ଇସ୍ତଫା ଦାଖଲ କରିବାର ଏକ ମାସ ପରେ ଦିନେ ଚିଫ୍ ସେକ୍ରେଟେରୀଙ୍କୁ ଦେଖା କରିବାକୁ ଗଲି । ଜଣେ ଦକ୍ଷିଣ ଭାରତୀୟ ଲୋକ ସେ; ତାମିଲ କି ତେଲୁଗୁ ମନେ ନାହିଁ । ସ୍କୁଲକୁ ଥରେ ଅଘୋଷିତ ପରିଦର୍ଶନରେ ଯାଇ ସ୍ୱଚକ୍ଷୁରେ ସମସ୍ତ ବିଷୟ ଦେଖି ଆସିବାକୁ ତାଙ୍କୁ କହିଲି ଏବଂ ମୋତେ ଶୀଘ୍ର ଅବ୍ୟାହତି ଦେବାପାଇଁ ମଧ୍ୟ ଅନୁରୋଧ କଲି । ଦେଖିଲି ସେ ଜଣେ ସୁବିଧାବାଦୀ । ସେଠାରେ ଓଡ଼ିଆ-ବଙ୍ଗାଳୀ, ସ୍ଥାନୀୟ ଓଡ଼ିଆ ଏବଂ ବାହାର ଓଡ଼ିଆଙ୍କ ଭିତରେ ଚାକିରି କ୍ଷେତ୍ରରେ ଯେଉଁ ବାଛ-ବିଚାର ଚାଲିଛି, ତାହା ଦର୍ଶାଇ ନୂଆ ହେଡ୍‌ମାଷ୍ଟର ନିଯୁକ୍ତି ବିଷୟରେ ସେ କାହିଁକି ଉଦାସୀନ ରହିଛନ୍ତି, ତାହା ପ୍ରକାଶ କଲେ । ମୋ ପଛେ ପଛେ ଅବଶ୍ୟ ସେ ସ୍କୁଲ ଦେଖିବାକୁ ଆସିଲେ । ଯାହା ଦେଖିଲେ, ତାର ବର୍ଣ୍ଣନା ନିଷ୍ପ୍ରୟୋଜନ । ଶଚୀବାବୁଙ୍କ ତୋଫାନୀ ଅଭିନୟ ଦେଖି ସେ ତାଙ୍କ ବିଷୟରେ କି ଧାରଣା ନେଇ ଫେରିଗଲେ, ସେ ଜାଣିଥିବେ ।

ମୋ ଦରଖାସ୍ତ ଦେଓ୍ୱାନଙ୍କ ପାଖକୁ ଗଲା । ଶଚୀବାବୁ ଏ ଖବର ପାଇ ମୋତେ ସାଙ୍ଗରେ ନେଇ ଦିନେ ସାଢ଼େ ଆଠଟାରେ ଦେଓ୍ୱାନଙ୍କ କୋଠିକୁ ଗଲେ । ପାଗଳ ମୁନିବଙ୍କ ଆଦେଶ, ନ ମାନିବାକୁ ମୋର ସ୍ୱର କାହିଁ ? ବାଟରେ ଗଲାବେଳେ ମୁଁ ଭାବୁଥାଏ, ଯଦି ଏଠି ନିରୁଛିଆ ସ୍ଥାନ ଦେଖି ଶଚୀବାବୁ ମୋ ଉପରେ ଆକ୍ରମଣ କରନ୍ତି, ତେବେ··· ? ଏପରି କରିବା ତାଙ୍କ ପକ୍ଷରେ ଅସମ୍ଭବ ନ ଥିଲା । ସ୍କୁଲ ପଢ଼ାଘରେ ସେ କେତେକ ଶିକ୍ଷକଙ୍କ ପ୍ରତି ପୂର୍ବରୁ ଏହିପରି ଦୈହିକ ବଳ ପ୍ରୟୋଗ କରିଥାନ୍ତି । ରଙ୍ଗଭୂମିରୁ ଫେରି ରାଧାନାଥଙ୍କ 'ବେଣୀସଂହାର'ରୁ

'ଭଗ୍ନି ଶୃଙ୍ଖଳ ଶ୍ୟାମ ବରିଷ୍ଠ ମୂରତି
ଭଗ୍ନି ଚାହିଁଲ ରୋଷେ ଅନ୍ତରୀକ୍ଷ ପ୍ରତି;
ଗର୍ଜିଣ କହିଲ ଅହେ ଆହେ ଶୂରଗଣ ·····'

ଅଂଶକ ଆବୃତ୍ତି କରି ସେ ଯେପରି ଦାନ୍ତ କଡ଼ମଡ଼ କରି ଅଭିନୟ କରନ୍ତି, ତାହା ମୁଁ ସ୍ୱଚକ୍ଷୁରେ ଦେଖିଥିଲି । ପାଗଳ ପକ୍ଷରେ ଅସମ୍ଭବ କଣ ? କିନ୍ତୁ ମୋ ଭାଗ୍ୟ ଭଲ, ସେପରି କିଛି ହେଲା ନାହିଁ, ବରଂ ତାଙ୍କଠାରୁ ଅନ୍ୟ ପ୍ରକାର କଥା ଶୁଣିଲି । ସେ ବାଟରେ ମୋତେ କହିଲେ, "ରାମକୃଷ୍ଣବାବୁ, ମୁଁ ଭଲରୂପେ ଜାଣେ ଆପଣ ଏଠାରେ ରହିବା ପାଇଁ ବା ଏ ସ୍କୁଲର ହେଡ଼ମାଷ୍ଟର ହେବାପାଇଁ ଆଦୌ ଲାଳାୟିତ ନୁହନ୍ତି । ଆପଣ ସେଇ କଥା ଦେଓ୍ୱାନଙ୍କୁ କହିଦେବେ ।"

ତାଙ୍କ ଅଭିଯୋଗର ଅସଲ ଉଦ୍ଦେଶ୍ୟ ଏଥର ବୁଝିପାରିଲି । ଦେଓ୍ୱାନଙ୍କ କୋଠିରେ ପହଞ୍ଚି ସେ ପ୍ରଥମେ ପହରା ଦେଉଥିବା କନେଷ୍ଟବଳଙ୍କୁ ଅଣ୍ଟାଠାରେ ୯୦ ଡିଗ୍ରୀ କୋଣ କରି ଗୋଟିଏ ଲମ୍ବାଚଉଡ଼ା ପ୍ରଣାମ ଜଣାଇଲେ । ମୁଁ ସେ ଦୃଶ୍ୟ ଦେଖି ସ୍ତମ୍ଭିତ ହୋଇଗଲି । ଶୁଭେ ଶୁଭେ କିପରି ଏ ପାଗଳ ସାଥିରେ ଭଲରେ ଘରକୁ ଫେରିବ ତାହାହିଁ ଭାବୁଥାଏ ।

ଶଚୀବାବୁ ଆଗ ଦେଓ୍ୱାନଙ୍କୁ ଦେଖାକଲେ । ସେ ଚାଲି ଆସିବାପରେ ଦେଓ୍ୱାନ ମୋତେ ଡକାଇ ମୋ ଇସ୍ତଫାର କାରଣ ଏବଂ ଶଚୀବାବୁଙ୍କ ପାଗଳାମି ବିଷୟରେ କେତେକ କଥା ପଚାରିଲେ । 'ନରେ ବା କୁଞ୍ଜରେ' ଢଙ୍ଗରେ ମୋତେ ଉତ୍ତର ଦେବାକୁ ହେଲା ।

ଦେଓ୍ୱାନ—ମୁଁ ଶୁଣୁଛି, ଶଚୀବାବୁଙ୍କ ଉତ୍ପୀଡ଼ନଯୋଗୁ ଆପଣ କୁଆଡ଼େ ଚାଲି-ଯାଉଛନ୍ତି ?

ମୁଁ—ଶଚୀବାବୁ ମୋ ଉପରେ ତ କୌଣସି ଉତ୍ପୀଡ଼ନ କରନାହାନ୍ତି ।

ଦେଓ୍ୱାନ—ହଁ, ମୁଁ ସେଇ କଥା ଭାବୁଛି । କେତେକ ଲୋକ କହୁଛନ୍ତି ସେ ପାଗଳ । ଆଉ ମଧ୍ୟ ଶୁଣୁଛି, ଉଚ୍ଛୃଙ୍ଖଳ, କର୍ମବିମୁଖ ଶିକ୍ଷକମାନଙ୍କୁ ସେ କାମରେ ଖଟାଇବାରୁ ସେମାନେ ତାଙ୍କ ନାମରେ ଏ ଅପପ୍ରଚାର ଚଳାଇଛନ୍ତି । ମୋର ବିଶ୍ୱାସ, ଅଳ୍ପଦିନ ଭିତରେ ସତ୍ୟ ଘଟଣା ନିଶ୍ଚୟ ଜଣାପାଇବ । ସେ ଯାହାହେଉ, ଆପଣ ଏ ଷ୍ଟେଟ ପାଇଁ ଖୁବ୍ ଭଲ କାମ କରିଛନ୍ତି ବୋଲି ଶୁଣିଛି । ତେଣୁ ଆପଣ ଚାଲିଗଲେ ମୁଁ ଦୁଃଖିତ ହେବି । ଆପଣ ତ ସ୍ୱାସ୍ଥ୍ୟ କାରଣ ଦର୍ଶାଇ ଇସ୍ତଫା ଦେଇଛନ୍ତି । ମୁଁ ଆପଣଙ୍କୁ ରାଇରଙ୍ଗପୁର ହାଇସ୍କୁଲକୁ ହେଡ୍‌ମାଷ୍ଟର କରି ପଠାଇ ଦେଉଛି । ଉତ୍ତମ ସ୍ଥାନ ସେ । ଅସୁବିଧା କଣ ?

ଦିନେ ସରକାରୀ ଚାକିରିକୁ ଉପେକ୍ଷା କରି ଏଠାକୁ ଆସିଥିଲି, ଏଠା ଭଲ ଲାଗୁଥିଲା ବୋଲି । ଆଜି କିନ୍ତୁ ସେ ଅବସ୍ଥା ନାହିଁ । ପୋଡ଼ିଗଲା ଘିଅରେ ସୁଆଦ କାହୁଁ ଆସିବ ? ଯାହାକୁ ଛି କରିଦେଲିଣି, ସେଠାରେ ଆଉ ରହି କୌଣସି ଲାଭ ନାହିଁ । ପ୍ରାଣ ଏ ଅନ୍ଧାରୀ ମୁଲକରୁ ମୁକ୍ତି ଚାହୁଁଛି । କହିଲି, "ସତ କହିବାକୁ ଗଲେ ମୋର ମା ଏ ବୃଦ୍ଧ ସମୟରେ ମୋର ଏଠାରେ ରହିବାଟା ଚାହୁଁ ନାହାନ୍ତି ।"

ଦେଓ୍ୱାନ ଜଣେ ନୈଷ୍ଠିକ ହିନ୍ଦୁ; ପରିବାରଧର୍ମ ଉପରେ ବିଶ୍ୱାସ କରନ୍ତି । ନିରୁପାୟ ହୋଇ କହିଲେ, "ଆପଣ ଯେତେବେଳେ ମାଆଙ୍କ କଥା କହୁଛନ୍ତି, ମୁଁ ଆଉ କଅଣ କହିବି ? ତେବେ ମହାରାଜାଙ୍କ ଆସିବା ପର୍ଯ୍ୟନ୍ତ ଅପେକ୍ଷା କରନ୍ତୁ । ସେ ବର୍ତ୍ତମାନ ବାରିପଦାରେ ନାହାନ୍ତି । ସେ ଆସିଲେ ତାଙ୍କୁ କହିକରି ଯିବେ ।"

"ଆପଣ ତ ମହାରାଜାଙ୍କର ପ୍ରତିନିଧି । ମୋ କଥା ତାଙ୍କୁ ଜଣାଇଦେବେ । ମୁଁ ମାସାଧିକକାଳ ଅପେକ୍ଷା କଲିଣି । ଦୟା କରି ମୋତେ ଶୀଘ୍ର ଅବ୍ୟାହତି ଦିଅନ୍ତୁ ।" —ଏତିକି କହି ମୁଁ ତାଙ୍କ ପାଖରୁ ବିଦାୟ ନେଇ ଆସିଲି ।

ଜୁଲାଇ ୨୭ ତାରିଖରେ ମୋର ଇସ୍ତଫା ଗୃହୀତ ହୋଇଥିବାର ଆଦେଶ ଆସିଗଲା । ଅଗଷ୍ଟ ୬ ତାରିଖରେ ମୋର ପ୍ରିୟ ଛାତ୍ର, ସହକର୍ମୀ ଓ ବନ୍ଧୁମାନଙ୍କୁ ଶୋକାଭିଭୂତ କରି ଏଗାର ବର୍ଷର କର୍ମସ୍ଥଳୀ ବାରିପଦାରୁ ବିଦାୟ ନେଇ କଟକ ଅଭିମୁଖେ ଯାତ୍ରାକଲି ।

## ବାରିପଦାରେ ମୁଁ ଯାହା ଯାହା ଲେଖିଥିଲି

ଲେଖାଲେଖି କରିବା ଦିଗରେ ମୋର ଯେଉଁ ଟିକିଏ ପ୍ରବୃତ୍ତି ଥିଲା, ବାରିପଦାର ଶିକ୍ଷକ-ଜୀବନ ସେ ପ୍ରବୃତ୍ତିକୁ ଚରିତାର୍ଥ କରିବା ଦିଗରେ ଅନୁକୂଳ ପରିବେଶ ଯୋଗାଇଦେଲା । ସ୍କୁଲ ଲାଇବ୍ରେରିରୁ ଏବଂ ଜୁବିଲି ଲାଇବ୍ରେରିରୁ ବହି ଆଣି ମୁଁ ପଢ଼ିବାର ସୁବିଧା ପାଇଲି । ମୋର ସହକର୍ମୀ ସ୍ୱର୍ଗୀୟ ଜଗତ୍ ମୋହନ ସେନ

ଜଣେ ତରୁଣ ଲେଖକ ଓ କଳାକାର ଥିଲେ । ଆମେ ଦୁଇଜଣ ଅନେକ ସମୟରେ ଏକାଠି ବସି ପରସ୍ପର ମଧ୍ୟରେ ଭାବ ଆଦାନପ୍ରଦାନ କରୁଥିଲୁ । ସାହିତ୍ୟିକ ଆଲୋଚନା ପାଇଁ ବାରିପଦା ମଧ୍ୟ ପ୍ରଶସ୍ତ କ୍ଷେତ୍ର ଥିଲା । ସେଠାର ସାହିତ୍ୟ ସମାଜ ଅନୁକୂଳରେ ଅନୁଷ୍ଠିତ ସମ୍ମିଳନୀ ଓ ସାଂସ୍କୃତିକ କାର୍ଯ୍ୟକ୍ରମମାନ ମୋତେ ଯଥେଷ୍ଟ ଅନୁପ୍ରାଣିତ କରିଥିଲା ।

୧୯୫୫ରେ ବରିଷ୍ଠ ଲେଖକ ଓ କବିମାନଙ୍କର କେତେକ ପ୍ରସିଦ୍ଧ ଉକ୍ତିକୁ ସଂଗ୍ରହ କରି 'ପ୍ରଦ୍ୟୁମ୍ନ' ନାମକ ଖଣ୍ଡିଏ କ୍ଷୁଦ୍ର ପୁସ୍ତିକା ସଙ୍କଳନ କଲି । ସେହି ବର୍ଷ ତାହା ପ୍ରକାଶ ପାଇଲା । ଦ୍ୱିତୀୟ ଓ ତୃତୀୟ ଶ୍ରେଣୀ ପାଇଁ ମୋର 'ସାହିତ୍ୟ-ସୋପାନ' ଏବଂ ଚତୁର୍ଥ ଓ ପଞ୍ଚମ ଶ୍ରେଣୀ ପାଇଁ 'ସାହିତ୍ୟ-ବୋଧ' ପାଠ୍ୟପୁସ୍ତକ ମୁଁ ଏହିଠାରେ ଲେଖିଥିଲି । ମୋର ସୁପରିଚିତ ପ୍ରାର୍ଥନା ଗୀତ 'ଆହେ ଦୟାମୟ ବିଶ୍ୱବିହାରୀ ! ଘେନ ଦୟା ବିହି ମୋର ଗୁହାରି···' ଏବଂ ମୋର ଆଉ କେତେକ ଶିଶୁ-କବିତା ଏହି ସମୟର ରଚନା । କଟକ ପବ୍ଲିଶିଂ ହାଉସ୍‌ର ପ୍ରତିଷ୍ଠାତା ଶ୍ରୀ ଉମାଚରଣ ମହାନ୍ତି ମୋର ବହିଗୁଡ଼ିକ ପ୍ରକାଶ କରି ମୋତେ ଲେଖାଲେଖି ଦିଗରେ ଉତ୍ସାହିତ କରୁଥିଲେ ।

ସରସ୍ୱତୀ ପୂଜାରେ ମୋ ରଚିତ 'କୃଷ୍ଣାକୁମାରୀ' ନାଟିକାଟି ଥରେ ସ୍କୁଲ ଛାତ୍ରଙ୍କ ଦ୍ୱାରା ଅଭିନୀତ ହୋଇଥିଲା । ସେ ପାଣ୍ଡୁଲିପିଟିକୁ ମୁଁ ସାଇତି ରଖି ପାରିନାହିଁ । କେବଳ ସେଥିରେ ଥିବା 'ନିର୍ଗୁଣ ଜନର ଆଶା ହେ ତୁମେ ବିଣା ବାଟୋଇର ସାଥୀ ··' ଗୀତଟି ମୋର ମନେ ରହିଯାଇଛି ।

ଏହି ଗୀତଟି ସମ୍ପର୍କରେ ଗୋଟିଏ କୌତୂହଳପ୍ରଦ କଥା ଏଠାରେ କହେଁ । ପରବର୍ତ୍ତୀ ଜୀବନରେ ମୁଁ ପାରିଜାତ ପ୍ରେସ ପ୍ରତିଷ୍ଠା କରି ଯେତେବେଳେ କଟକରେ ରହୁଥିଲି, ସେ ସମୟରେ ଦିନେ ଅଫିସରେ ବସିଥିଲାବେଳେ ମାଳଗୋଦାମ ହାଇସ୍କୁଲର ଶିକ୍ଷକ ଶ୍ରୀ ମନମୋହନ ଦାସ ମୋ ପାଖକୁ ଆସି ପଚାରିଲେ, "ରାମକୃଷ୍ଣବାବୁ, ମୁଁ ସ୍କୁଲ ଛାତ୍ରଙ୍କ ପାଇଁ ନାନାଆଡ଼ୁ ପ୍ରାର୍ଥନା ସଙ୍ଗୀତ ଗୁଡ଼ିଏ ସଂଗ୍ରହ କରି ପ୍ରକାଶ କରିବାକୁ ଯାଉଛି । ସେଥିରେ ଥିବା ସବୁ ପଦ୍ୟର ରଚୟିତାମାନଙ୍କ ନାମ ପାଇଲିଣି, କିନ୍ତୁ ଗୋଟିକର ପାଉନାହିଁ । ଆପଣ କାଳେ ଜାଣିଥିବେ, ପଚାରିବାକୁ ଆସିଲି ।" ଏହା କହି ସେ ମୋର ସେଇ 'ନିର୍ଗୁଣ ଜନର ଆଶା ହେ ତୁମେ······' ସଙ୍ଗୀତଟିର ନାମ କହିଲେ । କାକତାଳୀୟ ନ୍ୟାୟରେ ଲେଖକର ନାମ ଏତେ ଚଞ୍ଚଳ ପାଇଯିବାରୁ ସେ ଯେତିକି ଆନନ୍ଦିତ ହେଲେ, ମୁଁ ମଧ୍ୟ ସେତିକି ଆମୋଦ ଲାଭ କଲି ।

ମୋର ସତ୍ୟବାଦୀ ଜାତୀୟ ବିଦ୍ୟାଳୟରେ ଶିକ୍ଷକ ଏବଂ ବାରିପଦାରେ ସହକର୍ମୀ ଶ୍ରୀଯୁକ୍ତ ବାସୁଦେବ ମହାପାତ୍ର ଓ ମୁଁ ଏକତ୍ର ମିଶି ଏହିଠାରେ ମାଟ୍ରିକ୍ ପରୀକ୍ଷାର୍ଥୀଙ୍କ ଉପଯୋଗୀ 'ରଚନା-ଦର୍ପଣ' ପୁସ୍ତକ ଖଣ୍ଡି ପ୍ରଣୟନ କରିଥିଲୁ । ଏହା ବ୍ରହ୍ମପୁରର 'ଷ୍ଟୁଡେଣ୍ଟସ୍ ଷ୍ଟୋର'ଙ୍କ ଦ୍ୱାରା ପ୍ରଥମେ ପ୍ରକାଶିତ ହୋଇଥିଲା ।

ବାରିପଦାରେ ଥିଲାବେଳେ ପ୍ରସିଦ୍ଧ ହାସ୍ୟରସାତ୍ମକ ଗଳ୍ପ *Don Quixote*ର ମର୍ମାନୁବାଦ କରି ଲେଖି ରଖିଥିଲି । ପରେ ଯେତେବେଳେ କଟକରେ ପ୍ରେସ ଆରମ୍ଭ କଲି, ସେତିକବେଳେ 'ଡନ୍ କୁଯ୍‌ଟି' ନାମ ଦେଇ ତାହାକୁ ପ୍ରକାଶ କଲି ।

ମୋର ଅନ୍ୟତମ ରଚନା 'ସଂଗ୍ରାମ ଓ ସାଧନା'ର ପ୍ରଥମ ଭାଗ ମଧ୍ୟ ଏହିଠାରେ ଥିଲାବେଳେ ରଚିତ ଓ ପ୍ରକାଶିତ ହୋଇଥିଲା । ଏ ବହିପାଇଁ କେତେଗୋଟି ଚିତ୍ର ମୁଁ ନିଜ ହାତରେ ଆଙ୍କି ପ୍ରକାଶକଙ୍କୁ ଦେଇଥିଲି । ସେଗୁଡ଼ିକ ବ୍ଲକ୍ ହୋଇ ଉକ୍ତ ବହିରେ ସ୍ଥାନ ପାଇଛି ।

ଏହାଛଡ଼ା 'ଭକ୍ତପ୍ରଦୀପ', 'ସହକାର' ଓ 'ନବଭାରତ'ରେ ମୋର କେତେକ ଗଳ୍ପ, କବିତା ଏବଂ ପ୍ରବନ୍ଧ ଏହି ସମୟରେ ପ୍ରକାଶ ପାଇଥିଲା । ବମ୍ବେରୁ ପ୍ରକାଶିତ 'The Progressive India' ଏବଂ ସ୍ୱର୍ଗତ ଲକ୍ଷ୍ମୀନାରାୟଣ ସାହୁଙ୍କ 'The Vaitarani' ପାଇଁ ମଧ୍ୟ କେତେକ ଇଂରାଜୀ ପ୍ରବନ୍ଧ ମଧ୍ୟେ ମଧ୍ୟେ ଲେଖୁଥିଲି । ମୟୂରଭଞ୍ଜ ଷ୍ଟେଟ ସରକାରଙ୍କ ଦ୍ୱାରା ପ୍ରକାଶିତ ଶିଶୁ-ପାଠ୍ୟ 'ଅବସର ପାଠ' ଲେଖିବାରେ ମୋର ସହାୟତା ଲୋଡ଼ା ହୋଇଥିଲା । ଏହାଛଡ଼ା ଗୋଟିଏ ଖଣ୍ଡକାବ୍ୟ (ଅପ୍ରକାଶିତ), ଇଂରାଜୀରେ Model Essays and Letters, New Systematic Translation Book II, Translation Primer ପ୍ରଭୃତି ମଧ୍ୟ ଏହିଠାରେ ଲେଖିଥିଲି ।

## ଶିକ୍ଷକର ଜୀବନର ଆରପାଖ

ବାରିପଦାରେ ଯେଉଁ ଏଗାର ବର୍ଷ କଟିଲି, ସେହି ସମୟ ଭିତରେ ମୋର ପାରିବାରିକ ଜୀବନରେ ବହୁ ପରିବର୍ତ୍ତନ ଘଟିଗଲା । ୧୯୩୪ରେ ମୋର ପିତାମହ ବୃନ୍ଦାବନ ନନ୍ଦ ପ୍ରାଣତ୍ୟାଗ କଲେ ଏବଂ ତା ପରବର୍ଷ ମୋର ସାନ ଭଉଣୀ ପଦ୍ମା ତାର ଏକମାତ୍ର ଶିଶୁପୁତ୍ରକୁ ଛାଡ଼ି ପୃଥିବୀରୁ ଚିର ବିଦାୟ ନେଲା । ଏଇସବୁ ବିପର୍ଯ୍ୟୟ ମଧ୍ୟରେ ଘରେ ଥିବା ମୋର ଅନ୍ୟ ତିନି ଭାଇଙ୍କୁ ଏକାଠି ରଖି ସେମାନଙ୍କୁ ସ୍ୱାବଲମ୍ବୀ କରିବାର ଭାର ପଡ଼ିଲା ମୋ ଉପରେ । ପ୍ରତ୍ୟେକ ଛୁଟିରେ ମୁଁ ଗ୍ରାମକୁ ଗଲେ ମୋର ପ୍ରଥମ କାର୍ଯ୍ୟ ହୁଏ, ପରିବାରର ସୁଶୃଙ୍ଖଳ ପରିଚାଳନା ବିଷୟରେ ଭାଇମାନଙ୍କ ସଙ୍ଗେ ଆଲୋଚନା କରିବା ଏବଂ ସେମାନଙ୍କୁ ଆବଶ୍ୟକ ଆର୍ଥିକ ସାହାଯ୍ୟ ଦେବା । ମୁଁ ୭୦ ଟଙ୍କାରେ ବାରିପଦାରେ ଶିକ୍ଷକତା ଆରମ୍ଭ କରି ବିଦାୟ ନେଇ ଆସିଲାବେଳକୁ ପାଉଥିଲି ମାସିକ ୧୫ ଟଙ୍କା । ଏହା ଛଡ଼ା ବହି ଲେଖା ପାରିଶ୍ରମିକରୁ ବର୍ଷକୁ ମୋଟେ ହାରାହାରି ୫୦୦ ଟଙ୍କା ମିଳୁଥିଲା । ମୋର ଚାରୋଟି କନ୍ୟା—ପଦ୍ମିନୀ, ପୁଷ୍ପ, ବୀଣା ଓ ଶୈଳ—ବାରିପଦାରେ ଜନ୍ମ ହୋଇଥିଲେ । ଶସ୍ତାକାଳ ଥିବାରୁ ମୁଁ ଏତିକି ଆୟରେ ମୋ ପିଲାମାନଙ୍କୁ ଚଳାଇ ଘରକୁ ନିୟମିତ ସାହାଯ୍ୟ ଦେଉଥିଲି । ବାରିପଦାରେ ପ୍ରଥମେ ପ୍ରଥମେ ଟଙ୍କାକୁ ବାଲେଶ୍ୱରୀ ୨୦ ସେର ଗୁଡ଼ାଳ କିଣିବାର ମୋର ମନେ

ଅଛୁ । ଦୁଇଟଙ୍କାରେ ଖଣ୍ଡେ ଭଲ ମିଲ୍ ଶାଢ଼ୀ ଏବଂ ପାଞ୍ଚଅଣାକୁ ଝିଅପାଇଁ ଖଣ୍ଡେ ଫ୍ରକ୍ ମିଳୁଥିଲା । ସୁନା ଭରି ୨୨ ଟଙ୍କାରୁ ବଢ଼ି ବଢ଼ି ୪୦ ଟଙ୍କାକୁ ଯାଇଥିଲା ।

ମୋର ପ୍ରକାଶକ ଶ୍ରୀ ଉମାଚରଣ ମହାନ୍ତି ୧୯୪୧ରେ ମୋ ପାଇଁ ତଲତେଲେଙ୍ଗାବଜାରରେ ଖଣ୍ଡିଏ ଜମି କିଣି ଦେଇଥିଲେ ଏବଂ ତାଙ୍କର ତତ୍ତ୍ୱାବଧାନରେ ସେଠାରେ ମୁଁ ଗୋଟିଏ ଘର ତୋଳିବାକୁ ଆରମ୍ଭ କଲି । ୧୯୪୩ରେ ସେ ଘରର ନିର୍ମାଣ କାର୍ଯ୍ୟ ଶେଷ ହେଲା ଏବଂ ସେଥିରେ ମୋର ଯାହା ଖର୍ଚ୍ଚ ହୋଇଥିଲା, ସେ ସମସ୍ତ ଟଙ୍କା ମୁଁ ମୋ ବହିଲେଖା ପାରିଶ୍ରମିକରୁ ପାଇଥିଲି ।

ଏକମାତ୍ର କନ୍ୟା ପଦ୍ମାର ମୃତ୍ୟୁ ପରେ ବୋଉ ଅତ୍ୟନ୍ତ ମ୍ରିୟମାଣ ହୋଇ ପଡ଼ିଲା । ତା ମନରୁ ଶୋକର ସେ ଅଳିଭା ଦାଗ ପୋଛିବାର କୌଣସି ଉପାୟ ତ ନ ଥିଲା; ତେବେ ସାମୟିକ ପରିବର୍ତ୍ତନ ପାଇଁ ମୁଁ ତାକୁ ଥରେ କଲିକତା ବୁଲାଇ ନେଇଥିଲି । ସେଠାରେ ଗଙ୍ଗାସ୍ନାନ ଓ କାଳୀଦର୍ଶନ କରାଇ ତିନି ଚାରିଦିନ ପରେ ବାରିପଦା ଫେରି ଆସିଥିଲି । ତା ଜୀବନରେ ଓଡ଼ିଶା ବାହାରକୁ ଯିବା ସେଇ ପ୍ରଥମ, ସେଇ ଶେଷ ।

ସବୁଦିନେ ଅବସର ଟିକିଏ ପାଇଲେ ମୁଁ କିଛି ନା କିଛି ହାତକାମ ବା ଧନ୍ଦାରେ ନିଯୁକ୍ତ ରହି ଭାରାକ୍ରାନ୍ତ ମନକୁ ହାଲୁକା କରିବାକୁ ଚେଷ୍ଟା କରେ । ପିଲାଦିନେ ଅନାଥାଶ୍ରମରେ ଥିଲାବେଳେ ମୁଁ ଯେଉଁ ଲୁଗାବୁଣା ଓ ସତରଞ୍ଜି ବୁଣା ଶିଖିଥିଲି, ସେହି ଜ୍ଞାନର ସାହାଯ୍ୟରେ ବାରିପଦାରେ ଖଟ ଫିତା ଓ ସତରଞ୍ଜି ଆସନ ବୁଣିବାକୁ ଆରମ୍ଭ କଲି । ସ୍କୁଲ ଛୁଟି ପରେ ଛାତ୍ର ଓ ସହକର୍ମୀମାନଙ୍କ ସଙ୍ଗେ ଭଲିବଲ୍, ବ୍ୟାଡ଼୍ମିଣ୍ଟନ, ଟେନିକଏଟ୍ ଆଦି ଖେଳିବାର ଅଭ୍ୟାସ ଥିଲା, କିନ୍ତୁ ଯେଉଁଦିନ ଖେଳିବାକୁ ନ ଯାଏ, ଘରେ ବସି ବୁଣାବୁଣି କରେ । କେବେ କେବେ ଚିତ୍ର ଆଙ୍କିବାରେ ବା ପଦ୍ୟ ରଚନା କରିବାରେ ମନ ଦିଏ ।

ବାରିପଦାରେ ଉପରୋକ୍ତ ଧନ୍ଦା ସାଙ୍ଗକୁ ଅବସର ବିନୋଦନ ପାଇଁ ମୁଁ ଆଉ ଗୋଟିଏ ନୂଆ ବିଦ୍ୟା ଶିଖିଲି—ଫଟୋଗ୍ରାଫି । କ୍ୟାମେରା ଓ ତାର ଆନୁଷଙ୍ଗିକ ଉପକରଣମାନ କିଣି ସେଥିରେ କିଛି ଦିନ ଏପରି ମାତିଗଲି ଯେ ଭୋକଶୋଷ ମଧ୍ୟ ଜଣାଗଲା ନାହିଁ । ମୋର ଜ୍ୟେଷ୍ଠ ଶ୍ୟାଳକ ବାଳମୁକୁନ୍ଦ ମୋ ପାଖରେ ରହି ସେଠାରେ ପଢ଼ୁଥିଲା । ଦିନେ ଦିନେ ରାତି ଗୋଟାଏ ପର୍ଯ୍ୟନ୍ତ ଆମେ ଦୁହେଁ ଅନ୍ଧାର ଘରେ ପଶି ଦିନରେ ଉଠାଇଥିବା ଫଟୋକୁ ଧୂଆଧୋଇ କରୁ ଏବଂ ଛାପୁ । ଫିଲ୍ମଗୁଡ଼ିକୁ ଅନ୍ୟତ୍ର ଧୋଇବା ଓ ଛାପିବା ପାଇଁ ସେତେବେଳେ କୌଣସି ଅସୁବିଧା ନ ଥିଲା । କଲିକତାର ବ୍ୟବସାୟୀମାନେ ନିୟମ କରିଥିଲେ ଯେ ସେମାନଙ୍କଠାରୁ ଫିଲ୍ମ କିଣିଲେ ସେମାନେ ମାଗଣା ଧୋଇଦେବେ (developing) । ତା ଛଡ଼ା ବାରିପଦାର ପ୍ରସିଦ୍ଧ ଫଟୋଗ୍ରାଫର ଜଗମୋହନଙ୍କ ପାଖରେ ମଧ୍ୟ ଫଟୋ ଛପାଇବାର ସୁବିଧା ଥିଲା । ତା

ହେଲେ ସୁଦ୍ଧା ମୁଁ ନିଜ ହାତରେ ଅନେକ ଫଟୋ ଧୋଉଥିଲି ଏବଂ ଛପୁଥିଲି । ଫଟୋ ବିଦ୍ୟାର ବିଭିନ୍ନ ପ୍ରଣାଳୀଗୁଡ଼ିକ ଶିଖିବା ଥିଲା ମୋର ଲକ୍ଷ୍ୟ । ଦ୍ୱିତୀୟରେ ନିଜେ ଉଠାଇଥିବା ଫଟୋଗୁଡ଼ିକୁ ଧୋଇବା ଓ ଛପିବାରେ ଯେଉଁ ମାଦକତା ଅଛି, ମୁଁ ସେଥିରେ ବିହ୍ୱଳ ହୋଇପଡ଼ୁଥିଲି । ଅନ୍ଧକାରମୟ ପ୍ରକୋଷ୍ଠର କ୍ଷୀଣ ରକ୍ତିମ ଆଲୋକରେ ଯେତେବେଳେ ସାଦା ଫିଲ୍ମ ବା କାଗଜ ଦେହରୁ ଚିତ୍ରର ରୂପଗୁଡ଼ିକ କ୍ରମେ ଫୁଟି ଉଠନ୍ତି, ସେ ଦୃଶ୍ୟ କେଡ଼େ ଲୋଭନୀୟ, ତାହା କେବଳ ଅନୁଭବୀମାନେ ହିଁ ବୁଝିପାରିବେ ।

ବାରିପଦାରେ ମୁଁ ଚାକିରି ଆରମ୍ଭ କଲାବେଳେ ଷ୍ଟେଟ୍ ଚାକିରିରେ କେବଳ ପେନସନ୍ ବ୍ୟବସ୍ଥା ରହିଥିଲା, କିନ୍ତୁ ଦେଓ୍ୱାନ କେ. ସି. ନିୟୋଗୀଙ୍କ ସମୟରେ ଏକ ବିକଳ୍ପ ବ୍ୟବସ୍ଥା ଖଞ୍ଜାଗଲା । ଏହା ଫଳରେ ଷ୍ଟେଟ୍ କର୍ମଚାରୀମାନଙ୍କୁ ପେନସନ୍ ବା ପ୍ରଭିଡେଣ୍ଟ୍ ଫଣ୍ଡ, ଦୁଇଟି ମଧ୍ୟରୁ ଯେ କୌଣସି ଗୋଟିକୁ ବାଛି ନେବାପାଇଁ ସୁବିଧା ଦିଆଗଲା । ପ୍ରଥମ ବୟସରୁ ଚାରି ବର୍ଷ କଂଗ୍ରେସରେ ରହିବା ଫଳରେ ମୋର ଚାକିରି ସ୍ପୃହା କମି ଯାଇଥିଲା । ମୁଁ ଶେଷ ପର୍ଯ୍ୟନ୍ତ ଚାକିରି କରି ପେନସନ୍ ଉପଭୋଗ କରିପାରିବି, ଏ ବିଶ୍ୱାସ ମୋର ନ ଥିବାରୁ ମୁଁ ପେନସନ୍ ଛାଡ଼ି ପ୍ରଭିଡେଣ୍ଟ ଫଣ୍ଡ ସୁବିଧା ଆଦରି ନେଇଥିଲି ।

ମନୁଷ୍ୟ ଯେତେ ଧୈର୍ଯ୍ୟଶୀଳ ହେଲେ ସୁଦ୍ଧା ବିପଦରେ ପଡ଼ିଲେ ଭଗବାନଙ୍କୁ ଡାକେ, ଯେତେ ଆଧୁନିକ ଭାବାପନ୍ନ ହେଲେ ବି ବେଳେ ବେଳେ ଜ୍ୟୋତିଷ-ବଚନ ଓ ଭାଗ୍ୟଚକ୍ରକୁ ବିଶ୍ୱାସ କରିବାକୁ ବାଧ୍ୟ ହୁଏ । ମୋ ଜୀବନରେ ଏହିପରି ଏକ ବେଳା ଆସି ପହଞ୍ଚିଲା । ବାରିପଦାରୁ ଚାକିରି ଛାଡ଼ି ବେକାର ଅବସ୍ଥାରେ ଗ୍ରାମରେ ଆସି ବସି ରହିଲି । ଆମେ ଚାରି ଭାଇ, ଆମର ଗୁଡ଼ିଏ ପିଲା କୁଟୁମ୍ବ—ସମସ୍ତଙ୍କର ଭରଣପୋଷଣ ମୋ'ରି ଉପରେହିଁ ଅନେକାଂଶରେ ନିର୍ଭର କରୁଥିଲା । ଏଣେ ମୁଁ ଅର୍ଶ ରୋଗରେ ପ୍ରଥମଥର ପାଇଁ ଆକ୍ରାନ୍ତ ହୋଇ ଭୀଷଣ କଷ୍ଟ ପାଉଥିଲି । ମୋର ଦୁଇଟି କନ୍ୟା ଉତ୍କଟ ମ୍ୟାଲେରିଆର କବଳରେ ପଡ଼ି ଛଟପଟ ହେଉଥିଲେ । ମୋ ସ୍ତ୍ରୀଙ୍କର ସ୍ୱାସ୍ଥ୍ୟ ମଧ୍ୟ ଭଲ ନ ଥିଲା । ଗ୍ରାମରେ ଔଷଧ ଓ ଚିକିତ୍ସାର ଅଭାବ ଏବଂ ବାସଗୃହର ଅସୁବିଧା ମୋ ଦୁଃଖକୁ ଶତଗୁଣିତ କଲା । ମୋର ଶନିସପ୍ତା ଦଶା ପଡ଼ିଥିବାରୁ ଏପରି ହେଉଛି ବୋଲି ଜ୍ୟୋତିଷୀଙ୍କର କଥାକୁ ବିଶ୍ୱାସ କଲି । କିନ୍ତୁ ସେଥିରେ କଣ ଦୁଃଖର ଉପଶମ ହୁଅନ୍ତା ? ଦଶା କଟିଲେ ଯାଇ ଏ ଦୁର୍ଗତିରୁ ଉଦ୍ଧାର ମିଳିବ—ମନକୁ ଏତିକି ଆଶ୍ୱାସନା ଦେବା ଛଡ଼ା ଅନ୍ୟ ଉପାୟ ନ ଥିଲା ।

ମୋର ସାନ ଭାଇ ରାଧାକୃଷ୍ଣ ଆମ ଗ୍ରାମ ନିକଟବର୍ତ୍ତୀ ଅନ୍ୟ ଏକ ପଡ଼ା ଗାଁ ଇଚ୍ଛାପୁରଠାରେ ରହୁଥାଏ । ସେଠାରେ ଆମର ଅନେକଗୁଡ଼ିଏ ଜମିବାଡ଼ି, ନଡ଼ିଆ ବଗିଚା ଓ ଗୋଟିଏ ଖମାର ଥାଏ । ବାଇରୋଇରେ ମୋର ପିଲାମାନେ ଅସୁବିଧାରେ ଚଳୁଥିବାର ଦେଖି ସେ ମୋତେ ତା ପାଖରେ ଯାଇ ରହିବାକୁ ଅନୁରୋଧ କଲା । ମୁଁ

ତା ପ୍ରସ୍ତାବ ମାନି ପିଲମାନଙ୍କୁ ନେଇ ଇଚ୍ଛାପୁର ଗ୍ଲଗଲି । ସେଠାରେ ଆମର ଯେଉଁ ଘରଖଣ୍ଡିକ ଥିଲା, ତାହା ଦୁଇଟି ପରିବାର ପାଇଁ ଯଥେଷ୍ଟ ନ ହେବାରୁ ମୋ ପିଲାଙ୍କ ପାଇଁ ଆଉ ଗୋଟିଏ ଖଞ୍ଜା ତିଆରି କରାଗଲା । ମୁଁ ସେହିଠାରେ ରହିଲି ।

## କଟକ ଟ୍ରେନିଂ କଲେଜ

ଦିନେ ଭଦ୍ରକର ପଦ୍ମଚରଣ ଦାଶ (ସେ କ ମୟୂରଭଞ୍ଜ ଷ୍ଟେଟ୍ ପ୍ରେସ୍‌ର ମ୍ୟାନେଜର ଥିଲେ) ଅନ୍ୟ ଜଣେ ଭଦ୍ରବ୍ୟକ୍ତିଙ୍କ ସହ ମୋ ପାଖରେ ପହଞ୍ଚିଲେ ଏବଂ ମୋତେ ଭଦ୍ରକ ହାଇସ୍କୁଲର ହେଡ୍‌ମାଷ୍ଟର କରି ନେବା ପାଇଁ ଉକ୍ତ ସ୍କୁଲର ସେକ୍ରେଟେରୀ ଚୌଧୁରୀ ଗଙ୍ଗାଧର ଦାଶଙ୍କ ଅଭିପ୍ରାୟ ମୋତେ ଜଣାଇଲେ । ମୁଁ ଠିକ୍ ସେହି ସମୟରେ କଟକ ଟ୍ରେନିଂ କଲେଜର ଅଧ୍ୟକ୍ଷ ଶ୍ରୀଯୁକ୍ତ ମହେଶଚନ୍ଦ୍ର ପ୍ରଧାନଙ୍କଠାରୁ ନିମ୍ନ ମର୍ମରେ ଖଣ୍ଡେ ପତ୍ର ପାଇଥାଏ :

'ପ୍ରିୟ ରାମକୃଷ୍ଣବାବୁ,

ଗୋଟିଏ ଚାକିରି ସମ୍ପର୍କରେ ମୋ ସଙ୍ଗେ ଆସି ଦେଖାକର ।'

ଚିଠିଟି ପଦ୍ମଚରଣବାବୁଙ୍କୁ ଦେଖାଇଲି; ତଥାପି ମୁଁ ଭଦ୍ରକ ଯାଇ ଚୌଧୁରୀ ମହାଶୟଙ୍କୁ ନିଶ୍ଚୟ ଦେଖା କରିବି, ଏ କଥା କହି ସେ ଦୁହିଁଙ୍କୁ ବିଦାୟ ଦେଲି ।

ଏକାବେଳକେ ଦୁଇଟି ଚାକିରି ଜୁଟିବାରୁ ଶନିସପ୍ତା ଦଶାର ଅବସାନ ଘଟିଛି ଭାବି ଆଶ୍ୱସ୍ତ ହେଲି । ସ୍ଥିର କଲି ଭଦ୍ରକ ବାଟ ଦେଇ କଟକ ଯିବି । ତାହାହିଁ କଲି ।

କୃତୀୟ ତାଳଗ କଥା କିଛିଏ ପରେ କହିବି ।

ମୁଁ ତାଙ୍କୁ ସାକ୍ଷାତ କରିବି ବୋଲି ଚୌଧୁରୀ ଗଙ୍ଗାଧର ଦାଶ ବିଶ୍ୱାସ କରି ନ ଥିଲେ, କାରଣ ପଦବାବୁଙ୍କଠାରୁ ସେ ପ୍ରିନସିପାଲ୍‌ଙ୍କ ଚିଠି କଥା ଶୁଣିଥିଲେ । ମୁଁ କିନ୍ତୁ ତାଙ୍କୁ ନିର୍ଭର ପ୍ରତିଶ୍ରୁତି ଦେଲି ଯେ ଯଦିବା ଶ୍ରୀ ପ୍ରଧାନଙ୍କୁ ଦେଖା କରିବା ପାଇଁ କଟକ ଯାଉଛି, ସରକାରୀ ଚାକିରି କରିବା ମୋର ଇଚ୍ଛା ନୁହେଁ । ତାପରେ କହିଲି, "ମୁଁ ଆପଣଙ୍କ କଥା ରକ୍ଷା କରି ନିଶ୍ଚୟ ଆସିବି, ମାତ୍ର ବେଶି ଦିନ ଚାକିରିରେ ରହିପାରିବି ନାହିଁ ।" ସେ ଏଥିରେ ଅତ୍ୟନ୍ତ ଆନନ୍ଦିତ ହୋଇ ମୋର ବେତନ ପ୍ରସଙ୍ଗ ଉତ୍‌ଥାପନ କଲେ ଏବଂ କହିଲେ, "ପୂର୍ବ ହେଡ୍‌ମାଷ୍ଟରଙ୍କୁ ଆମେ ୯୫ ଟଙ୍କା ଦେଉଥିଲୁ । ଆପଣଙ୍କୁ ଶହେ ଟଙ୍କା ଦେବୁ ।" ଦର ମୂଲଚାଲ କରିବାର ଅଭିପ୍ରାୟ ବା ଅବସର ନ ଥିଲା । ମୁଁ କେବଳ କହିଲି, "ଶୁଣିପାରୁଛି, ପୂର୍ବ ହେଡ୍‌ମାଷ୍ଟର ଶଙ୍କରବାବୁଙ୍କୁ ବଡ଼ ଅଶୋଭନୀୟ ଭାବରେ ଏଠାରୁ ବିଦା କରିଦିଆଗଲା । ମୁଁ ଆପଣଙ୍କର ପଡ଼ୋଶୀ; ଚାକିରିରୁ ଗଲାପରେ ମଧ୍ୟ ଆପଣଙ୍କ ସଙ୍ଗେ ନାନାଭାବରେ

ମୋର ସମ୍ପର୍କ ରହିବ । ମୁଁ ତ ସ୍କୁଲର ଉନ୍ନତି ଲାଗି ଯଥାସାଧ୍ୟ ମୋର କର୍ତ୍ତବ୍ୟ କରିବ । ତଥାପି ଆପଣ ଯେଉଁ ମୁହୂର୍ତ୍ତରେ ମୋ କାର୍ଯ୍ୟରେ ସନ୍ତୁଷ୍ଟ ନ ହେବେ, ମୋତେ ତାହା କେବଳ ସେତିକି କହିଦେବେ । ତାହାହିଁ ଯଥେଷ୍ଟ ହେବ । ମୁଁ ଶୁଭେ ଶୁଭେ ଚାଲିଯିବି ।"

ଚୌଧୁରୀ ମହାଶୟ ପରମ ପ୍ରୀତ ହୋଇ ମୋତେ ବିଦାୟ ଦେଲେ । ଆସିଲାବେଳେ ହସି ହସି କହିଲେ, "ସରକାରୀ ଚାକିରି ଛାଡ଼ି ଦେଇ ଆପଣ ଯେ ଭଦ୍ରକରେ ଏଠାକୁ ଆସିବେ, ମୋର ବିଶ୍ୱାସ ଆସୁନାହିଁ । ମୁଁ ଆପଣଙ୍କ ପଛେ ପଛେ କଟକ ଯାଉଛି ଯେ ।"

କଟକରେ ପହଞ୍ଚି ସିଧା ଚାଲିଲି ଟ୍ରେନିଂ କଲେଜ ପ୍ରିନ୍ସିପାଲ ଶ୍ରୀ ପ୍ରଧାନଙ୍କ ପାଖକୁ । ସେ ମୋତେ ଦେଖି କୁଶଳ ପ୍ରଶ୍ନ ପରେ ରେଭେନ୍ସା କଲେଜିଏଟ ସ୍କୁଲରେ ଯୋଗ ଦେବାକୁ କହିଲେ ।

ନାନା କାରଣରୁ ସରକାରୀ ଚାକିରି କରିବାକୁ ମୋର ସ୍ପୃହା ନ ଥିଲା; ପୁଣି ଏ ବୟସରେ ସମସ୍ତଙ୍କର କନିଷ୍ଠ ହୋଇ ଚାକିରି ଆରମ୍ଭ କରିବାକୁ ହେବ । ଅର୍ଥ ନାହିଁ କି ସମ୍ମାନ ନାହିଁ । ମୋ ପ୍ରତି ସୁଦୃଷ୍ଟି ରଖିବାକୁ ମହେଶବାବୁ କଣ ସବୁଦିନେ ଟ୍ରେନିଂ କଲେଜରେ ଥିବେ ? ତେଣୁ ସ୍ପଷ୍ଟ ନାହିଁ କରିଦେଲି ।

"ପିଲାଙ୍କ ପରି କଣ ଉତ୍ତର ଦେଉଛ ? ଭଲକରି ବିଚାର କରିବ । ତରତରରେ କୁହ ନାହିଁ । ତିନିଦିନ ସମୟ ଦେଲି; ଯାଅ । ତିନିଦିନ ପରେ ଆସି ଦେଖା କରିବ ।"—ପ୍ରିନ୍ସିପାଲ କହିଲେ ।

ମୋର ନିଷ୍ପତ୍ତିକୁ ବଦଳାଇବାର କୌଣସି କାରଣ ନ ଥିଲା । ତଥାପି ତାଙ୍କୁ ଅଧିକ କିଛି ଉତ୍ତର ନ ଦେଇ ସେଦିନ ଚାଲି ଆସିଲି । ତିନିଦିନ ଆଉ କଟକରେ ବସି ରହିବି କାହିଁକି ? ପୂର୍ବରୁ ତ ଏ ବିଷୟରେ ଯଥେଷ୍ଟ ଭାବିଚିନ୍ତି ଭିଙ୍ଗାରପୁର ଯିବା ସ୍ଥିର କରିଛି । ତାହାହିଁ ତାଙ୍କୁ ଜଣାଇଦେବି । ଦିନେ ଗଲି ଏବଂ ମୋର ନିଷ୍ପତ୍ତି ତାଙ୍କୁ ଜଣାଇଲି । ସେ ପ୍ରଥମେ ଟିକିଏ ଦୁଃଖିତ ହେଲେ । ତାପରେ କହିଲେ, "ଆଚ୍ଛା ଭଲ କଥା । ତୁମେ ଯଦି ସରକାରୀ ଚାକିରି କରିବ ନାହିଁ ବୋଲି ସ୍ଥିର କରିଛ, ତେବେ ମୋର କିଛି କହିବାର ନାହିଁ । କିନ୍ତୁ ମୁଁ ଶୁଣୁଛି, ତୁମେ କୁଆଡ଼େ ଭିଙ୍ଗାରପୁର ଯାଉଛ ? ଯଦି ପ୍ରାଇଭେଟ ସ୍କୁଲରେ ରହିବାର ଇଚ୍ଛା, ତେବେ ଖୋର୍ଦ୍ଧା ପରି କୌଣସି ଭଲ ସ୍କୁଲକୁ ଯାଉନାହଁ ?"

ମୁଁ କହିଲି, "ଭିଙ୍ଗାରପୁର ମୋର ପୁରୁଣା ଜାଗା । ମୁଁ ସେଠାରୁ ମାଇନର ପାସ୍ କରିଥିଲି, ତେଣୁ ସେ ସ୍ଥାନ ପ୍ରତି ମୋର କିଛି କର୍ତ୍ତବ୍ୟ ଅଛି । ତା ଛଡ଼ା ଭଲ ସ୍କୁଲରେ ମୁଁ କାମ ଦେଖାଇବି କଣ ? ଖରାପ ସ୍କୁଲକୁ ଭଲ କରିପାରିଲେ ଧନ୍ୟ

ମନରେ ସନ୍ତୋଷ ଆସିବ ।" ପ୍ରିନ୍‌ସିପାଲ ଏହା ଶୁଣି ଖୁସି ହୋଇ ମୋ ପିଠିରେ ହାତ ମାରି କହିଲେ, "ତୁମର ଯଦି ଏପରି ଉଦ୍ଦେଶ୍ୟ ଥାଏ, ମୁଁ ତୁମକୁ ବାଧା ଦେବାକୁ ଚାହେଁନା । ଯାଅ, ମୁଁ ଆଶୀର୍ବାଦ ଦେଉଛି ।"

ଏତିକରେ ସେ ଦେଖାସାକ୍ଷାତ ଶେଷ ହେଲା । ଏହା ପରେ ଯଥା ସମୟରେ ନିଯୁକ୍ତିପତ୍ର ପାଇ ଭିଙ୍ଗାରପୁର ଗଲି ଏବଂ ଶ୍ରୀ ବଳେଶ୍ବର ହାଇସ୍କୁଲରେ ପ୍ରଧାନ ଶିକ୍ଷକ ରୂପେ ଯୋଗ ଦେଲି ।

## ଭିଙ୍ଗାରପୁରରେ ଶିକ୍ଷକତା (୧୯୪୨-୧୯୪୭)

କୁଶଭଦ୍ରା ନଦୀର ଦକ୍ଷିଣ ପାର୍ଶ୍ବରେ ଏକ ପ୍ରଶସ୍ତ ମୁକ୍ତ ପ୍ରାନ୍ତର ମଧ୍ୟରେ ଚୌଧୁରୀ ଗଙ୍ଗାଧର ଦାଶଙ୍କ ସ୍ବପ୍ନର ଶିକ୍ଷାମନ୍ଦିର ଶ୍ରୀ ବଳେଶ୍ବର ହାଇସ୍କୁଲ ଗୋଟିଏ ରୁଗ୍ଣ ଶିଶୁ ପରି ଯେତେବେଳେ ଖାଦ୍ୟ ପାଇଁ ଅସ୍ଥିର ହେଉଥିଲା, ସେତିକିବେଳେ ତାର ଲାଳନପାଳନର ଦାୟିତ୍ବ ନେଇ ମୁଁ ସେଠାରେ ଉପସ୍ଥିତ ହେଲି । ମୁଁ ଯେଉଁ ସ୍କୁଲରୁ ଆସିଲି, ସେଠାରେ ଥିଲେ ଆଠଶହ ଛାତ୍ର ଓ ତିରିଶ ଜଣ ଶିକ୍ଷକ । ତା ତୁଳନାରେ ଏ ବିଦ୍ୟାଳୟ ଅତ୍ୟନ୍ତ ଛୋଟ । ସବୁଗୁଡ଼ିକ ଶ୍ରେଣୀର ଛାତ୍ରସଂଖ୍ୟା ମିଶି ୧୫୦ରୁ ମଧ୍ୟ ଊଣା । ଦୁଇ ଜଣ ମାତ୍ର ଗ୍ରାଜୁଏଟ ଶିକ୍ଷକ ସଦ୍ୟ ଓ.ଇଡି. ପାସ କରି ମୋ ଯିବାର ଅଳ୍ପ ଦିନ ପୂର୍ବରୁ କାର୍ଯ୍ୟରେ ଯୋଗ ଦେଇଥାନ୍ତି । ହଷ୍ଟେଲରେ ବହୁ ସ୍ଥାନ ଖାଲି ପଡ଼ିଥାଏ । ଛାତ୍ରସଂଖ୍ୟାବୃଦ୍ଧିର ଅନ୍ୟ ଉପାୟ ନ ଦେଖି ସ୍କୁଲର ମ୍ୟାନେଜିଂ କମିଟି କୁଶଭଦ୍ରା ନଦୀର ଉତ୍ତର ପଟେ ଥିବା ପୁରାତନ ମାଇନର ସ୍କୁଲକୁ ହାଇସ୍କୁଲ ସଙ୍ଗେ ମିଶାଇବା ଉଦ୍ଦେଶ୍ୟରେ ପଦକ୍ଷେପ ନେଇଥାନ୍ତି । ବିଦ୍ୟାଳୟର ଆର୍ଥିକ ଅବସ୍ଥା ମଧ୍ୟ ସ୍ବଚ୍ଛଳ ନ ଥିଲା । ସେକ୍ରେଟାରୀ ଗଙ୍ଗାଧର ଦାଶଙ୍କ ଦାନ ଉପରେ ନିର୍ଭର କରି ସେହି ଶିଶୁ ଅନୁଷ୍ଠାନଟି ସେ ପର୍ଯ୍ୟନ୍ତ ତିଷ୍ଠି ରହିଥାଏ ।

ହେଡ଼ମାଷ୍ଟର ହିସାବରେ ମୋର ଅଧ୍ୟାପନା କାମ କମ୍, ମାତ୍ର ତତ୍ତ୍ବାବଧାନ ଦାୟିତ୍ବ ବେଶି । ମ୍ୟାନେଜିଂ କମିଟିରେ ଯେଉଁ କେତେଜଣ ଚୌଧୁରୀ ପରିବାରର ସଭ୍ୟ ଥାଆନ୍ତି, ସେମାନଙ୍କର ମନ ମିଳେ ନାହିଁ । ମୁଁ ଯିବାପରେ କମିଟିର ଯେଉଁ ପ୍ରଥମ ବୈଠକ ବସିଲା, ସେଥିରେ ଯୋଗ ଦେବା ପାଇଁ ମୁଁ ଚୌଧୁରୀ ନୀଳକଣ୍ଠ ଦାଶଙ୍କୁ ଡାକିବାକୁ ନିଜେ ଯାଇଥିଲି । ସେ କମିଟିର ପ୍ରେସିଡେଣ୍ଟ, କିନ୍ତୁ କୌଣସି ମନୋମାଳିନ୍ୟବଶତଃ ସ୍କୁଲ ପ୍ରତି ବୀତଶ୍ରଦ୍ଧ ହୋଇପଡ଼ିଥିଲେ । ମୁଁ ଡାକିବାରୁ କହିଲେ, "କାହିଁକି ଯିବି ? ଆମର ସେଥିରେ କଣ ଅଛି ?" ମୁଁ କହିଲି, "ଆପଣ ପରା ମ୍ୟାନେଜିଂ କମିଟିର ପ୍ରେସିଡେଣ୍ଟ ?" ତାପରେ ସେ କହିଲେ, "ସେ କଣ ମ୍ୟାନେଜିଂ କମିଟିର ସ୍କୁଲ ? ସେ ତ ଗଙ୍ଗାଭଉଣାଙ୍କ ସ୍କୁଲ ।"

ପୂର୍ବରୁ କିଛି ଜାଣି ନ ଥିଲି । ବର୍ତ୍ତମାନ ଅନୁମାନ କଲି, ସେକ୍ରେଟାରୀ ଓ ପ୍ରେସିଡେଣ୍ଟ ଦୁହିଁଙ୍କ ମଧ୍ୟରେ ଭଲ ବୁଝାମଣା କିଛି ଘଟିଥିବାରୁ ବୋଧହୁଏ ଏ

ପରିସ୍ଥିତ ଉପୁଜିଛି । ଉଭୟେ ଶିକ୍ଷିତ ଏବଂ ଚୌଧୁରୀ ପରିବାରର ଜଣାଶୁଣା ଲୋକ । କହିଲି, "ମୁଁ ତ ନୂଆ ଆସିଛି ଏବଂ ଭାବୁଛି ଏହା ମ୍ୟାନେଜିଂ କମିଟିର ସ୍କୁଲ । ଯେତେବେଳେ ଗଙ୍ଗାଭାଇନାଙ୍କ ସ୍କୁଲ ବୋଲି ଜଣାପିବ, ସେତେବେଳେ ପଛେ ଆପଣ ନ ପିବେ । ବର୍ତ୍ତମାନ ମୁଁ ଡାକୁଛି, ଦସ୍ତଖତ କରି ଆସନ୍ତୁ ।"

ପ୍ରକୃତ କଥାଟା ହେଲା ଗଙ୍ଗାଧରବାବୁ ସ୍କୁଲର ପ୍ରାଣପ୍ରତିଷ୍ଠାତା ଏବଂ ପୃଷ୍ଠପୋଷକ ଥିଲେ । ସ୍କୁଲପାଇଁ ସେ ଅକାତରରେ ଅର୍ଥବ୍ୟୟ କରୁଥିଲେ । ତେଣୁ କମିଟିର ସଭ୍ୟମାନଙ୍କ ମତାମତକୁ ଅପେକ୍ଷା ନ କରି କାର୍ଯ୍ୟର ଗୁରୁତ୍ୱ ଦୃଷ୍ଟିରୁ କେତେକ ଘଟଣାରେ ହୁଏତ ନିଜ ବିଚାରରେ କିଛି କରି ପକାଉଥିବେ । ସାଧାରଣତଃ ଅନ୍ୟତ୍ର ମଧ୍ୟ ଏହିପରି ଘଟିଥାଏ । ଏଥିରେ ଅନ୍ୟମାନେ କ୍ଷୁଣ୍ଣ ହୋଇ ଆଡ଼େଇ ରହିଥାନ୍ତି । ହେଲେ ପୁଣି ମୁଁ ଏ ସମସ୍ୟା ଉପରେ ପ୍ରଥମେ ବିଶେଷ ଗୁରୁତ୍ୱ ଦେବା ଆବଶ୍ୟକ ମନେ କଲି ନାହିଁ । ବିଦ୍ୟାଳୟର ଆଭ୍ୟନ୍ତରୀଣ ଅବସ୍ଥା ପ୍ରତି ଦୃଷ୍ଟି ଦେଇ ସେଗୁଡ଼ିକୁ ଆଗ ଶୃଙ୍ଖଳିତ କରିବାରେ ମନ ଦେଲି ।

ସେଠାରେ କାର୍ଯ୍ୟଭାର ନେବାର ଅଳ୍ପଦିନ ପରେ ବାରିପଦା ହାଇସ୍କୁଲର ହେଡ଼ମାଷ୍ଟର ରାୟ ସାହେବ ବିଶ୍ୱମ୍ଭର ମିଶ୍ରଙ୍କଠାରୁ ଖଣ୍ଡିଏ ଚିଠି ପାଇଲି । ସେ ଲେଖିଥିଲେ—

ପ୍ରିୟ ରାମକୃଷ୍ଣବାବୁ,

ଯେଉଁଭଳି ପରିସ୍ଥିତିରେ ଆପଣ ଏଠାରୁ ଇସ୍ତଫା ଦେଇ ଚାଲି ଯାଇଛନ୍ତି, ଷ୍ଟେଟ କର୍ତ୍ତୃପକ୍ଷ ତାହା ହୃଦୟଙ୍ଗମ କରି ପୁନର୍ବାର ଆପଣଙ୍କୁ ଫେରାଇ ଆଣିବାକୁ ଚାହାନ୍ତି । ଆପଣଙ୍କର ମତାମତ ଶୀଘ୍ର ଜାଣିପାରିଲେ ସୁଖୀ ହେବି ।

ସ୍ୱାଃ ବିଶ୍ୱମ୍ଭର ମିଶ୍ର
ହେଡ଼ମାଷ୍ଟର, ବାରିପଦା ହାଇସ୍କୁଲ

ଶୁଣିଲି, ମୁଁ ବାରିପଦା ଛାଡ଼ିବାର ପ୍ରାୟ ପନ୍ଦର ଦିନ ପରେ ହାଇସ୍କୁଲର ଉପର ଶ୍ରେଣୀର ଛାତ୍ରମାନେ ଏକଜୁଟ ହୋଇ ଦିନେ ଖିଆବେଳେ ମହାରାଜାଙ୍କ ସଙ୍ଗେ ଦେଖା କରିବା ପାଇଁ ଧାଡ଼ି ବାନ୍ଧି ରାଜବାଟୀ ନିକଟକୁ ଯାଇଥିଲେ । ମହାରାଜା ଏ ସମ୍ବାଦ ପାଇ ସେମାନଙ୍କୁ ଭେଟି, ଆସିବାର କାରଣ ପଚାରିବାରୁ ପିଲାମାନେ କହିଲେ, "ପରୀକ୍ଷା ଆଉ ଅଳ୍ପଦିନ ରହିଲା । ଶଚୀବାବୁଙ୍କ ପାଗଳାମି ଯୋଗୁ ଭଲ ଭଲ ଶିକ୍ଷକମାନେ ସ୍କୁଲ ଛାଡ଼ି ଚାଲିଗଲେଣି । ଯଦି ପ୍ରତିକାରର ବ୍ୟବସ୍ଥା ନ କରିବେ ଆମ୍ଭେମାନେ ବାଧ୍ୟ ହୋଇ ଟ୍ରାନ୍ସଫର ସାର୍ଟିଫିକେଟ ନେଇ ଅନ୍ୟତ୍ର ଚାଲିଯିବୁ ।" ଏହା ପରେ ପରେ ମହାରାଜା ସ୍କୁଲକୁ ଆସି ଶିକ୍ଷକମାନଙ୍କଠାରୁ ସତ୍ୟାସତ୍ୟ ବୁଝିଲେ ଏବଂ ସେତେବେଳର ଡ.ପି.ଆଇ. ସ୍ୱର୍ଗତ ଶ୍ୟାମଚନ୍ଦ୍ର ତ୍ରିପାଠୀଙ୍କ ସଙ୍ଗେ ପରାମର୍ଶ କରି ଶଚୀବାବୁଙ୍କୁ ସ୍କୁଲରୁ କାଢ଼ି ଅବସରପ୍ରାପ୍ତ ଅଭିଜ୍ଞ ଶିକ୍ଷକ ରାୟସାହେବ ବିଶ୍ୱମ୍ଭର

ମିଶ୍ରଙ୍କୁ ହେଡ଼ମାଷ୍ଟର ପଦରେ ନିଯୁକ୍ତ କଲେ । ବିଶ୍ୱମ୍ଭରବାବୁ ସମସ୍ତ ଘଟନା ବୁଝି ଷ୍ଟେଟ କର୍ତ୍ତୃପକ୍ଷଙ୍କ ନିର୍ଦ୍ଦେଶରେ ବୋଧହୁଏ ମୋ ପାଖକୁ ଉପରୋକ୍ତ ପତ୍ରଟି ଲେଖିଥିଲେ ।

ନିମ୍ନ ମର୍ମରେ ମୁଁ ତାଙ୍କ ପତ୍ରର ଉତ୍ତର ଦେଲି ।

ପ୍ରିୟ ମହାଶୟ,

ମୁଁ ଇସ୍ତଫା ଦେଇ ଆସିଲା ପରେ ପୁଣି ମୟୂରଭଞ୍ଜ ଷ୍ଟେଟ କର୍ତ୍ତୃପକ୍ଷ ଯେ ମୋତେ ପୁନର୍ବାର ଚାକିରିକୁ ଡକାଇଛନ୍ତି, ସେଥିପାଇଁ ମୁଁ ତାଙ୍କୁ ଅଶେଷ ଧନ୍ୟବାଦ ଦେଉଛି । ଷ୍ଟେଟ ସରକାର ଯଦି ଭାବୁଥାନ୍ତି ଯେ ମୁଁ ସେଠା ଚାକିରି ଗୁଡ଼ା ଦୁର୍ଗତିରେ ପଡ଼ି ଏଠାରେ ଆସି ଆଶ୍ରୟ ନେଇଛି ଏବଂ ଡାକିଲା ମାତ୍ରେ ଆନନ୍ଦରେ ସେଠାକୁ ପୁଣି ଫେରିଯିବି, ତେବେ ସେ ଭୁଲ ବୁଝିଛନ୍ତି । ମୁଁ ଯାହା କରିଛି, ଭଲରୂପେ ଭାବିଚିନ୍ତି କରିଛି । ମୟୂରଭଞ୍ଜ ଷ୍ଟେଟ ନିକଟରେ ମୋର କୃତଜ୍ଞତା ଜଣାଇ ରହିଲି ।

ଏ ଚିଠି ଫେରି ପଠାଇ ଦେବାର ଅଳ୍ପଦିନ ପରେ ମୋର ପ୍ରଭିଡେଣ୍ଟ ଫଣ୍ଡ ବାବଦ ପ୍ରାପ୍ୟ ଟଙ୍କା ଷ୍ଟେଟରୁ ପାଇଗଲି ।

ହଁ, ବର୍ତ୍ତମାନ ମୋ ନୂଆ କର୍ମକ୍ଷେତ୍ର ବିଷୟରେ କହେଁ । ମୁଁ ଆସିଲାବେଳକୁ ଟେଷ୍ଟ ପରୀକ୍ଷା ସମୟ ନିକଟ ହୋଇ ଯାଇଥାଏ । ଠିକ୍ ମନେ ନାହିଁ, ବୋଧହୁଏ ୧୮ ଜଣ ପିଲା ନିର୍ବାଚନ ପରୀକ୍ଷା ଦେଇଥିଲେ । ବହୁଦିନ ପଢ଼ାପଢ଼ିରେ ବ୍ୟାଘାତ ଘଟିଥିବା ହେତୁ ସେମାନେ ପରୀକ୍ଷାରେ ଭଲ କରି ପାରି ନ ଥିଲେ । ତାହା ଜାଣି ସମସ୍ତଙ୍କୁ ଉଠାଇ ଦେଲି ଏବଂ ବସାକୁ ଡାକି ନେଇ ଇଂରାଜୀରେ ଦୁର୍ବଳ ପିଲାମାନଙ୍କୁ ଘଣ୍ଟାଏ ଘଣ୍ଟାଏ ପଢ଼ାଇଲି । ସୁଖର କଥା, ସେମାନଙ୍କ ମଧ୍ୟରୁ ଶେଷ ପରୀକ୍ଷାରେ ୧୬ ଜଣ ଏବଂ ସପ୍ଲିମେଣ୍ଟାରୀ ପରୀକ୍ଷାରେ ଅନ୍ୟ ୨ ଜଣ ପାସ କରିଗଲେ ।

ଜାନୁଆରୀ ମାସରେ ସ୍କୁଲବର୍ଷ ଆରମ୍ଭହେଲେ ଦେଖିଲି, ସେକ୍ରେଟାରୀ ମୋତେ ନ ପଚାରି କେତେକ ପିଲାଙ୍କୁ ଫ୍ରି-ଷ୍ଟୁଡ଼େଣ୍ଟସିପ୍ ଦେବାର ପ୍ରତିଶ୍ରୁତି ଦେଇ ପକାଉଛନ୍ତି । ପ୍ରତ୍ୟେକ ବର୍ଷ ସେ ଏହିପରି କରନ୍ତି ବୋଲି ଶୁଣିଲି । ମୁଁ ତାଙ୍କୁ କହିଲି, "ମାର୍ଚ୍ଚ ମାସରେ ମ୍ୟାନେଜିଂ କମିଟି ବସି ସେ ବିଷୟ ବିଚାର କରିବେ । ପିଲା ସାହାଯ୍ୟ ପାଇବାର ଉପଯୁକ୍ତ କି ନା ତା ନ ବୁଝି ପୂର୍ବରୁ କାହିଁକି ଆପଣ ପ୍ରତିଶ୍ରୁତି ଦେଇ ଦେଉଛନ୍ତି ?"

ସେ କହିଲେ, "ସାହାଯ୍ୟ ନ ପାଇଲେ କୌଣସି ପିଲା ଏଠାରେ ନାମ ଲେଖାଇବାକୁ ଆସିବେ ନାହିଁ । ଫଳରେ ଆମର ଛାତ୍ରସଂଖ୍ୟା କମିଯିବ ।"

ମୁଁ କହିଲି, "ସାହାଯ୍ୟର ପ୍ରତିଶ୍ରୁତି ଦେଇ ପିଲା ସଂଗ୍ରହ କରିବା ଦ୍ୱାରା ସ୍କୁଲର ଦୁର୍ବଳତା ପ୍ରକାଶ ପାଉଛି । ଆପଣ ଏ ବିଷୟ ମୋ ଉପରେ ସମ୍ପୂର୍ଣ୍ଣରୂପେ ଛାଡ଼ିଦିଅନ୍ତୁ । ମୋର ବିଶ୍ୱାସ, ଆମେ ଆଶାନୁରୂପ ଛାତ୍ର ପାଇପାରିବା ।"

ମୋର ନିର୍ଭରଯୋଗ୍ୟ କଥାରେ ତାଙ୍କର ହୃଦ୍‌ବୋଧ ହେଲା । ସେହିଦିନଠାରୁ କୌଣସି ଅଭିଭାବକ ତାଙ୍କ ପାଖକୁ ଗଲେ 'ହେଡ୍‌ମାଷ୍ଟରଙ୍କ ପାଖକୁ ଯାଅ'—ଏଇ ପଦକ କଥା କହି ସେ ତାଙ୍କୁ ବିଦା କରି ଦେଉଥିଲେ ।

ଆତ୍ମପ୍ରତ୍ୟୟ ସବୁ କ୍ଷେତ୍ରରେ ଅଗ୍ରଗତିରେ ସାହାଯ୍ୟ କରେ । ଏହା ନ୍ୟୂନ ମନୋଭାବର ବିପରୀତ ଲକ୍ଷଣ । ଛାତ୍ରଜୀବନରେ ବାଧାବିଘ୍ନ ମଧ୍ୟରେ ଗତିକରି ଏବଂ ଅସହଯୋଗ ଆନ୍ଦୋଳନରେ ଯୋଗ ଦେଇ ମୁଁ ଯେଉଁ ଦୃଢ଼ ମନୋବଳ ଅର୍ଜନ କରିଥିଲି, ତାହା ମୋତେ ପରବର୍ତ୍ତୀ ଜୀବନରେ ଯଥେଷ୍ଟ ସାହାଯ୍ୟ କରିଛି । ଅଭାବ ଅସୁବିଧା ମୋତେ କେବେ ଭୟଶଙ୍କିତ କରିନାହିଁ କି କାଞ୍ଚନର ମୋହ କେବେ ନୀତିଭ୍ରଷ୍ଟ କରିନାହିଁ । ମୁଁ ନିର୍ଭୟରେ କର୍ତ୍ତବ୍ୟ ସମ୍ପାଦନ କରି ସବୁଠାରେ ସୁଫଳ ପାଇଛି ।

ଆମ୍ଭମାନଙ୍କ ମିଳିତ ଉଦ୍ୟମରେ ସ୍କୁଲର ବାତାବରଣ ବଦଳିଗଲା । ପରୀକ୍ଷାର ଫଳାଫଳରେ ଯଥେଷ୍ଟ ଉନ୍ନତି ଦେଖାଗଲା । ଏଣିକି ପ୍ରତ୍ୟେକ ବର୍ଷ ପ୍ରଥମ ଶ୍ରେଣୀରେ ପିଲା ପାସ୍ କଲେ । ତେଣୁ ସ୍କୁଲର ଛାତ୍ରସଂଖ୍ୟା କ୍ରମେ ବଢ଼ିବାରେ ଲାଗିଲା । ଜଗତ୍‌ସିଂହପୁର, କାକଟପୁର ପ୍ରଭୃତି ଦୂର ସ୍ଥାନମାନଙ୍କରୁ ଛାତ୍ରମାନେ ପଢ଼ିବାକୁ ଆସିଲେ । ହଷ୍ଟେଲର ସମସ୍ତ ସ୍ଥାନ ପୂର୍ଣ୍ଣ ହୋଇଗଲା । ଦୂରାଗତ ଛାତ୍ରମାନଙ୍କୁ ବାସସ୍ଥାନ ଯୋଗାଇବା ହେଲା ଆମର ପ୍ରଧାନ ସମସ୍ୟା ।

ଛାତ୍ରସଂଖ୍ୟା ବଢ଼ାଇବା ପାଇଁ ମାଇନର ସ୍କୁଲକୁ ହାଇସ୍କୁଲ ସଙ୍ଗେ ମିଶାଇବା ପାଇଁ ପୂର୍ବରୁ ଯେଉଁ ବ୍ୟବସ୍ଥା କରାଯାଇଥିଲା, ମୁଁ ଆସିବା ପରେ ତାକୁ ବନ୍ଦ କରି ଦେଇଥିଲି । ତଥାପି ଅବସ୍ଥା ଅସମ୍ଭାଳ ହେବାରୁ ମୁଁ ସେକ୍ରେଟାରୀ ଗଙ୍ଗାଧରବାବୁଙ୍କୁ ଦୁଇଟି ପ୍ରସ୍ତାବ ଦେଲି । ଏଥି ପୂର୍ବରୁ ପ୍ରତି ମାସରେ ସ୍କୁଲର ନିଅଣ୍ଟ ଟଙ୍କା ଭରଣୀ କରିବା ଲାଗି ଏବଂ ଦରିଦ୍ର ଛାତ୍ରଙ୍କ ଅଧ୍ୟୟନ ଲାଗି ସେ ନିୟମିତ ଆର୍ଥିକ ସାହାଯ୍ୟ ଦେଉଥିଲେ । ଛାତ୍ରସଂଖ୍ୟା ବୃଦ୍ଧି ପାଇବାରୁ ସ୍କୁଲର ଆୟ ମଧ୍ୟ ବୃଦ୍ଧି ପାଇଲା ଏବଂ ବଳକା ଟଙ୍କା ବ୍ୟାଙ୍କରେ ଜମା ରହିଲା । ତେଣୁ ମୁଁ ତାଙ୍କୁ କହିଲି, ସେ ଯେଉଁ ଆର୍ଥିକ ସାହାଯ୍ୟ ଦେଉଥିଲେ, ତାହା ସେପରି ନ ଦେଇ ହଷ୍ଟେଲ ପାଇଁ ଆଉ କିଛି ଘର ତୋଳାଇ ଦିଅନ୍ତୁ ଏବଂ ଶ୍ରେଣୀ ପାଇଁ ଯୋଗ୍ୟତା ବୃତ୍ତି (Merit scholarship) ଖଞ୍ଜି ଦିଅନ୍ତୁ । ଦୁଃସ୍ଥ ପିଲାମାନଙ୍କୁ ଗରିବଛାତ୍ର ପାଣ୍ଠିରୁ ଆବଶ୍ୟକ ସାହାଯ୍ୟ ଦିଆଯିବ ।

ମୋ କଥାରେ ରାଜି ହୋଇ ସେ ଆଉ ଗୋଟିଏ ଦାଣ୍ଡି ନୂଆ ହଷ୍ଟେଲ ତୋଳାଇ ଦେଲେ ଏବଂ ତାଙ୍କ ପତ୍ନୀଙ୍କ ନାମାନୁସାରେ ମେଧାବୀ ଛାତ୍ରମାନଙ୍କ ପାଇଁ ବୃତ୍ତି ଖଞ୍ଜିଦେଲେ ।

ଧନାଢ୍ୟ ଚୌଧୁରୀ ବଂଶର ଆଭିଜାତ୍ୟ ଏବଂ ତଜ୍ଜନିତ କ୍ଷମତାଲିପ୍ସା ଯୋଗୁ ଥରେ ଥରେ ମୋତେ ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼ୁଥିଲା ସତ, ମାତ୍ର କେବେ କୌଣସି ଅପ୍ରୀତିକର ପରିସ୍ଥିତି ଘଟି ନ ଥିଲା । ସେମାନଙ୍କ ମଧ୍ୟରୁ କେହି କେହି

ପିଲାଦିନେ ମୋର ସହପାଠୀ ଥିଲେ, ଆଉ କେତେକଙ୍କ ସଙ୍ଗେ ମୋର ପୂର୍ବରୁ ପରିଚୟ ଥିଲା । ମୋ ଘର ଭିଙ୍ଗାରପୁରଠାରୁ ବେଶି ଦୂରରେ ନୁହେଁ । ସେମାନେ ପ୍ରତିଷ୍ଠିତ ଜମିଦାର, ଆମ୍ଭେମାନେ ତାଙ୍କର ପ୍ରଜାସ୍ଥାନୀୟ । ତେଣୁ ଯଥାସମ୍ଭବ ସୁସମ୍ପର୍କ ରକ୍ଷା କରିବା ଥିଲା ମୋର ଇଚ୍ଛା, ମାତ୍ର କର୍ତ୍ତବ୍ୟ ପରିଚାଳନାରେ ଆଞ୍ଚ ଆସିଲେ ମୁଁ ଦୃଢ଼ ଭାବରେ ସେମାନଙ୍କର ବିରୋଧ କରିବାକୁ ଗ୍ରୁଡ଼ୁ ନ ଥିଲି ।

ସ୍କୁଲରେ ଯୋଗ ଦେବାର ଅଳ୍ପଦିନ ପରେ ଏହିପରି ଏକ ଘଟଣା ଘଟିଲା । ବାର୍ଷିକ କ୍ରୀଡ଼ା ପ୍ରତିଯୋଗିତା ହେଉଥାଏ । ଅପରାହ୍ଣ ୪ଟା ବେଳକୁ ଆରମ୍ଭ ହେବ ବୋଲି ନିମନ୍ତ୍ରଣ ପତ୍ରରେ ସମୟ ଦିଆଯାଇଥାଏ । ବାଲିଅନ୍ତା ଓ ନିକଟବର୍ତ୍ତୀ ଗ୍ରାମମାନଙ୍କରୁ କେତେକ ଭଦ୍ରବ୍ୟକ୍ତି ଆସିଗଲେ, କିନ୍ତୁ ପରିଚାଳନା ସମିତିର ସଭାପତି ଓ ସମ୍ପାଦକ ଆସି ନ ଥାନ୍ତି । ନିରୂପିତ ସମୟ ହୋଇସିବାରୁ ସ୍ପୋର୍ଟସ୍ ଆରମ୍ଭ କରିବାକୁ ମୁଁ ନିର୍ଦ୍ଦେଶ ଦେଇଦେଲି । ପ୍ରାୟ ଅଧ ଘଣ୍ଟାକ ପରେ ସେ ଦୁଇଜଣ ଆସି ପହଞ୍ଚିଲେ । ସେତେବେଳକୁ କେତେଗୁଡ଼ିଏ ଖେଳ ସରିଗଲାଣି । ସଭାପତି ଓ ସମ୍ପାଦକ ନ ଆସୁଣୁ କାର୍ଯ୍ୟକ୍ରମ ଆରମ୍ଭ ହେବା ସ୍କୁଲ ଇତିହାସରେ ବୋଧହୁଏ ପ୍ରଥମ କଥା । ମନରେ ତାଙ୍କର କ୍ଷୋଭ ଆସିଥିବ । କାର୍ଯ୍ୟ ଶେଷରେ ଭାଷଣ ଦେଲାବେଳେ ସମ୍ପାଦକ କଡ଼ା ମନ୍ତବ୍ୟ ପ୍ରକାଶ କଲେ ।

ମୋତେ ବଡ଼ ବାଧିଲା । ସେକ୍ରେଟେରୀ ସଂଗଠନର ଅଙ୍ଗ, ଆମ ଭିତରୁ ଜଣେ । ସର୍ବସାଧାରଣ ସଭାରେ ସ୍କୁଲର କାର୍ଯ୍ୟକଳାପକୁ ସମାଲୋଚନା ନ କରି ଆମକୁ ଅଲଗା କହିଥିଲେ ଭଲ ହୋଇଥାନ୍ତା । ମୁଁ ସେଇ ସଭାରେ ତାଙ୍କର କେତେକ ମନ୍ତବ୍ୟର ଉତ୍ତର ଦେଲି । ନିର୍ଦ୍ଦିଷ୍ଟ ସମୟରେ ନ ଆସି, ପୂର୍ବରୁ ହୋଇ ଯାଇଥିବା କେତେକ ଖେଳ କାହିଁକି ହୋଇନାହିଁ ବୋଲି ସେକ୍ରେଟେରୀ ମନ୍ତବ୍ୟ ଦେବା ଠିକ୍ ହେଲା ନାହିଁ ବୋଲି କହିଲି । ଫୁଟବଲ, ଭଲି ଆଦି ପ୍ରତିଯୋଗିତା ବିଷୟରେ ମଧ୍ୟ ସେ କହିଥିଲେ । ଦୁଇ ଘଣ୍ଟାର ସ୍ପୋର୍ଟସ୍ କାର୍ଯ୍ୟକ୍ରମ ଭିତରେ ଉକ୍ତ ଖେଳ ଦେଖାଇବା ସମ୍ଭବ ନୁହେଁ ବୋଲି ଦର୍ଶାଇ ମୁଁ କହିଲି ଯେ ସେଗୁଡ଼ିକ ପୂର୍ବରୁ କରାଯାଇଥାଏ, ପ୍ରାଇଜ୍ ଦିନ କେବଳ ଫଳ ଘୋଷଣା କରାଯାଏ ।

ମୋ ଉତ୍ତର ଶୁଣି କିଏ ତାକୁ ଧୃଷ୍ଟତା ମନେ କଲା, କିଏ ବା ସ୍ପଷ୍ଟବାଦିତା ମନେ କଲା, ସେ ଖବର ମୁଁ ରଖିନାହିଁ ।

ଆଉ ଦିନକର କଥା । ଚୌଧୁରୀ ନୀଳକଣ୍ଠ ଦାଶ ସ୍କୁଲକୁ ଆସି ମୋତେ ନ ଜଣାଇ ଗୋଟିଏ କ୍ଲାସରେ ଶିକ୍ଷକଙ୍କର ଶିକ୍ଷାଦାନ ପ୍ରଣାଳୀ କିଛି ସମୟ ଦେଖିସାରି ମୋ ଅଫିସକୁ ଆସିଲେ । ସେ ଯେଉଁ କ୍ଲାସ ଦେଖିଲେ, ସେ କ୍ଲାସରେ ତାଙ୍କ ପୁଅ ପଢୁଥାଏ । ମୋତେ ଦେଖିବାମାତ୍ରେ ସେ କହିଲେ, "ହେଡ୍‌ମାଷ୍ଟ୍ରେ, ମୁଁ ଭାବୁଛି ମୋ ପୁଅର ଏଠାରୁ ଟ୍ରାନ୍‌ସଫର ନେଇଯିବି ।" ନୀଳକଣ୍ଠବାବୁ ସ୍କୁଲର ପ୍ରେସିଡେଣ୍ଟ ଏବଂ

ଉଚ୍ଚଶିକ୍ଷିତ । ତାଙ୍କ ପ୍ରତି ମୋର ଯଥେଷ୍ଟ ସମ୍ମାନ ଥିଲା । ମୁଁ କିଛି ଅନୁମାନ କରି ନ ପାରି ପଚାରିଲି, "କାହିଁକି ? କଣ ହେଲା କି ?" ସ୍କୁଲରେ ଭଲ ପଢ଼ାପଢ଼ି ହେଉନାହିଁ ବୋଲି ଅଭିଯୋଗ କରି ସେ ପ୍ରମାଣ ସ୍ୱରୂପ କହିଲେ, "ଏଇ ବର୍ତ୍ତମାନ ମୁଁ ଗୋଟିଏ କ୍ଲାସରେ ପଢ଼ା ଦେଖିଥିଲି । ଶିକ୍ଷକ ଯାହା ଅଙ୍କ ଯଚାଉଛନ୍ତି, ପିଲା ସେଥିରୁ କଣ ବୁଝିବେ ?" ଚୌଧୁରୀ ମହାଶୟଙ୍କ ପୁଅ ସେଇ କ୍ଲାସର ଛାତ୍ର ଥିବାରୁ ତାଙ୍କ ବିରକ୍ତି ଆହୁରି ତୀବ୍ରତର ହୋଇ ଉଠିଥିଲା ।

ମ୍ୟାନେଜିଂ କମିଟିର ପ୍ରେସିଡେଣ୍ଟ ଯଦି ସ୍କୁଲରେ ଭଲ ପଢ଼ା ହେଉନାହିଁ ବୋଲି କହି ତାଙ୍କ ପୁଅର ନାଁ କଟାଇ ନିଅନ୍ତି, ଲୋକେ କଣ ଭାବିବେ ? ସେ ମୋଠାରୁ କି ପ୍ରକାର ଉତ୍ତର ଆଶା କରିଥିଲେ ଜାଣେନା; ମୁଁ ଧୀର ସ୍ୱରରେ କହିଲି, "ସ୍କୁଲରେ କିପରି ଭଲ ପଢ଼ାପଢ଼ି ହେବ, ସେଥିଲାଗି ତ ମୁଁ ଓ ମୋର ସହକର୍ମୀମାନେ ଯଥାସାଧ୍ୟ ଚେଷ୍ଟା କରୁଛୁ । ଆଉ ବିଶ୍ୱବିଦ୍ୟାଳୟର ପରୀକ୍ଷାଫଳକୁ ଯଦି ପାଠପଢ଼ାର ମାପକାଠି ବୋଲି ଧରାଯାଏ, ତେବେ ଆମ ସ୍କୁଲ ସେ ଦିଗରେ ଖୁବ୍ ଭଲ କରୁଛି । ଏହା ସତ୍ତ୍ୱେ ଯଦି ଆପଣ ସନ୍ତୁଷ୍ଟ ନ ହୋଇ ପିଲାକୁ ଉଠାଇ ନେବାକୁ ଚାହାନ୍ତି, ଦୁଃଖର ସହିତ ତାକୁ ବିଦାୟ ଦେବା ଛଡ଼ା ଆମେ ଆଉ କଣ କରିପାରୁ ?"

ମୋଠାରୁ ବୋଧହୁଏ ଏ ପ୍ରକାର ଉତ୍ତର ସେ ଆଶା କରି ନ ଥିଲେ । ସଙ୍ଗେ ସଙ୍ଗେ ସ୍ୱର ବଦଳାଇ କହିଲେ, "କଣ କହୁଛ କି ରାମକୃଷ୍ଣବାବୁ, ଆମ ଛିଲୋଚନ ସବୁବେଳେ ଗାଁ ଟୋକାଙ୍କ ସଙ୍ଗେ ବୁଲୁଛି । ଆମେ ପିଲାଦିନେ ଦେଖିଛୁ, ହେଡ଼ମାଷ୍ଟର ଓ ଶିକ୍ଷକମାନେ ଘଡ଼ମଡ଼ ପିଲାମାନଙ୍କ ଘରକୁ ଯାଇ କିଏ କଣ କରୁଛି ଦେଖନ୍ତି । ଏଠି ତ ସେ ସବୁ କିଛି ହେଉନାହିଁ ।"

ଏଥର ତାଙ୍କ କଥାଟା ଯୁକ୍ତିଯୁକ୍ତ ବୋଧହେଲା । ମୁଁ କହିଲି, "ଆପଣ ଜଣେ ଶିକ୍ଷିତ ଅଭିଭାବକ । ପିଲା ଯେତେବେଳେ ଶିକ୍ଷିତ ବାପମାଆଙ୍କ ପାଖରେ ରହୁଛି ବୋଲି ଜାଣୁଛୁ, ଆମେ ସେ କ୍ଷେତ୍ରରେ ଟିକିଏ ଶିଥିଳ ହୋଇଯାଉଛୁ । ନହିଁ ପାରି ହୋଇ ସେପାରିକୁ ଯିବା ସବୁବେଳେ ସମ୍ଭବ ହୁଏ ନାହିଁ । ତା ଛଡ଼ା ପିଲା ଆମ ପାଖରେ ସାଢ଼େ ୧୦ଟାରୁ ୪ଟା ଯାଏ ଅଛି, ଅବଶିଷ୍ଟ ସମୟ ତ ଆପଣଙ୍କ ପାଖରେ । ଆପଣ ତାକୁ ଶାସନ କରୁନାହାନ୍ତି କାହିଁକି ?"

"ମୁଁ କଣ ସବୁବେଳେ ଘରେ ରହୁଛି ଯେ ଦେଖିବି ?"

"ତେବେ ଆପଣ ତାକୁ ହଷ୍ଟେଲରେ ଛାଡ଼ି ଦିଅନ୍ତୁ, ୨୪ ଘଣ୍ଟା ଆମ ତତ୍ତ୍ୱାବଧାନରେ ରହିବ ।"

"ମୋର ଆପତ୍ତି ନାହିଁ; କହିବେ ଯଦି କାଲିଠାରୁ ଛାଡ଼ିଦେବି ।"

"ହଷ୍ଟେଲର ଖଡ଼ା, କଖାରୁ ସିଝା ଓ ବଗଡ଼ା ଭାତ ସେ ଖାଇ ପାରିବ ତ ?"

"ନିଶ୍ଚୟ ପାରିବ ।"

ନୀଳକଣ୍ଠବାବୁ ଖୁବ୍ ଚାଣୁଆ ଲୋକ । ସେ ଜଣେ ଶିକ୍ଷାବିତ୍ ମଧ୍ୟ । କିଛିଦିନ ଭୁବନେଶ୍ୱର ହାଇସ୍କୁଲର ହେଡ୍‌ମାଷ୍ଟର ଥିଲେ । ଆଉ ଅଧିକ ଆଲୋଚନା ଆବଶ୍ୟକ ହେଲା ନାହିଁ । ତା ପରଦିନ ତାଙ୍କ ପୁଅ ହଷ୍ଟେଲରେ ଆସି ରହିଲା ।

ଏହିପରି ଆଉ ଗୋଟିଏ ଘଟଣା ଘଟିଥିଲା ପରିଚାଳନା ସମିତିର ଏକ ବୈଠକରେ । ସେକ୍ରେଟରୀ ଗଙ୍ଗାଧରବାବୁ ମଧ୍ୟ ସେଦିନ ଉପସ୍ଥିତ ଥାଆନ୍ତି । ମୁଁ ସ୍କୁଲରେ ଯୋଗ ଦେବା ପୂର୍ବରୁ ଛାତ୍ରାବାସରେ ସ୍ଥାନ ଖାଲି ପଡ଼ିଥିଲା, ମାତ୍ର ମୋ ଗିବାପରେ ଅବସ୍ଥା ବଦଳିଗଲା । ଦୂରାଗତ ଛାତ୍ରମାନଙ୍କ ବାସସ୍ଥାନ ଏକ ପ୍ରଧାନ ସମସ୍ୟା ରୂପେ ଦେଖାଦେଲା । ମଫସଲ ଗାଁରେ ଏତେ ଭଡ଼ାଘର ବା କାହୁଁ ମିଳିବ ? ତେଣୁ ନୀତିଦୃଷ୍ଟିରୁ ମୁଁ ଦୂରରୁ ଆସିଥିବା ଛାତ୍ରମାନଙ୍କୁ ହଷ୍ଟେଲରେ ରହିବାପାଇଁ ପ୍ରଥମେ ସୁବିଧା ଦେଉଥିଲି । ଯେ କୌଣସି ହେଡ୍‌ମାଷ୍ଟର ମଧ୍ୟ ଏଇଆ କରିଥାନ୍ତେ । କିନ୍ତୁ ସ୍ଥାନୀୟ ଚୌଧୁରୀବଂଶର ଜଣେ ଭଦ୍ରଲୋକ ଥରେ ତାଙ୍କ ପୁଅକୁ ହଷ୍ଟେଲରେ ରଖାଇବାପାଇଁ ମୋ ସଙ୍ଗେ ଜିଦ୍ ଧରିଲେ । ମୁଁ ମୋର ଅକ୍ଷମତା ଜଣାଇବାରୁ ସେ ଉକ୍ତ ବିଷୟଟି ପରିଚାଳନା କମିଟିର ବୈଠକରେ ଉତ୍ଥାପନ କଲେ ।

ଉକ୍ତ ବୈଠକରେ ଚୌଧୁରୀ ଗଙ୍ଗାଧର ଦାଶ ଓ ଚୌଧୁରୀ ନୀଳକଣ୍ଠ ଦାଶଙ୍କ ସମେତ ଅନ୍ୟ ଦୁଇଜଣ ଚୌଧୁରୀ ବଂଶୀୟ ସଭ୍ୟ ମଧ୍ୟ ଉପସ୍ଥିତ ଥାନ୍ତି । ହ ଷ୍ଟେଲରେ ସ୍ଥାନପାଇଁ ପ୍ରାର୍ଥୀ ଥିବା ଛାତ୍ରର ଅଭିଭାବକ ଆଲୋଚନାରେ ଅଂଶଗ୍ରହଣ କରି କହିଲେ, "ଆମ ସ୍କୁଲ ହଷ୍ଟେଲରେ ଆଗ ଆମ ପିଲାମାନଙ୍କୁ ସ୍ଥାନ ଦିଆ ନ ଯାଇ ଅନ୍ୟ ପିଲାମାନଙ୍କୁ ଦିଆଯିବା କଣ ଠିକ୍ ?" ମୁଁ ତାର ଉତ୍ତରରେ କହିଲି ଯେ ଏଠାରେ ଦୂରାଗତ ଛାତ୍ରମାନଙ୍କ ରହିବାର କୌଣସି ସୁବିଧା ନ ଥିବା ଦୃଷ୍ଟିରୁ ସ୍ଥାନୀୟ ପିଲାମାନଙ୍କ ଦାବି ଅପେକ୍ଷା ସେମାନଙ୍କ ଦାବି ଆଗେ ବିଚାର୍ଯ୍ୟ । ତଥାପି ସେ ସନ୍ତୁଷ୍ଟ ହେଲେ ନାହିଁ । କହିଲେ, "ଆମେ, ଅର୍ଥାତ୍ ଚୌଧୁରୀ ବଂଶ, ଧନ ଖର୍ଚ୍ଚ କରି ସ୍କୁଲ କଲୁ, ଅଥଚ ଏଠି ଆମ ପିଲାଙ୍କପାଇଁ ହଷ୍ଟେଲରେ ସ୍ଥାନ ନାହିଁ ?"

ଏ ଯୁକ୍ତିତର୍କବେଳେ ଅନ୍ୟ ସମସ୍ତେ ନୀରବ ରହିଥାନ୍ତି । ସେକ୍ରେଟରୀ ଗଙ୍ଗାଧରବାବୁ ଅଳ୍ପ ହସି ହସି ସବୁ ଶୁଣୁଥାନ୍ତି । କୌଣସି ପକ୍ଷ ସମର୍ଥନ କରିବା ବୋଧହୁଏ ତାଙ୍କ ପକ୍ଷରେ ସୁବିଧାଜନକ ହେଉ ନ ଥାଏ । ଅଭିଯୋଗକାରୀଙ୍କ ପରି ସେ ନିଜେ ମଧ୍ୟ ଜଣେ ଚୌଧୁରୀ, ଅଥଚ ମୁଁ ଯାହା କହୁଥାଏ, ସେଥିରେ ତାଙ୍କର ସମର୍ଥନ ଥିବାର ଜଣାପଡୁଥାଏ । ମୁଁ କହିଲି, "ଆପଣମାନେ ଏଠାରେ ସ୍କୁଲଟିଏ କରି ଦେଇଛନ୍ତି ସତ, କିନ୍ତୁ ସେ କଣ କେବଳ ଆପଣଙ୍କ ପିଲାଙ୍କ ପାଇଁ ? ଯେଉଁମାନଙ୍କ ଶିକ୍ଷା ବେତନରେ ସ୍କୁଲ ବର୍ତ୍ତମାନ ଚାଲୁଛି, ସେମାନଙ୍କ ସଂଖ୍ୟା ଶତକଡ଼ା ୯୭, ଆପଣଙ୍କ ପିଲା ମାତ୍ର ଶହେକେ ତିନିଜଣ । ହେଡ୍‌ମାଷ୍ଟର ଭାବରେ ମୁଁ ସେ ପିଲାଙ୍କ ସ୍ୱାର୍ଥକୁ ଉପେକ୍ଷା କରି ନ ପାରେ । ଆପଣମାନେ ଯଦି ଚାହୁଁଛନ୍ତି ଯେ ଏ ଅନୁଷ୍ଠାନରେ ଚୌଧୁରୀ

ବଂଶର ପିଲାମାନଙ୍କୁ ଅଗ୍ରାଧିକାର ଦିଆଯିବ, ତେବେ ସେହି ମର୍ମରେ ଗୋଟିଏ ପ୍ରସ୍ତାବ ଏ ବୈଠକରେ ମଞ୍ଜୁର କରାଇ ନିଅନ୍ତୁ, ମୁଁ ତାହାକୁ ଇନ୍‌ସପେକ୍ଟରଙ୍କ ନିକଟକୁ ପଠାଇଦେବି ଏବଂ ତଦନୁଯାୟୀ କାର୍ଯ୍ୟ କରିବି ।''

ମୋ ନିଷ୍ପତ୍ତିରେ ମୁଁ ଦୃଢ଼ ରହିଥିବାର ଦେଖି ଅନ୍ୟ କୌଣସି ସଭ୍ୟ ମୋ କଥାର ପ୍ରତିବାଦ କରିବାକୁ ଇଚ୍ଛା କଲେ ନାହିଁ । ସଭାପତିଙ୍କ ନିର୍ଦ୍ଦେଶରେ ପ୍ରତିବାଦ-କାରୀ ତୁନି ରହିଲେ । ଏହା ପରେ ଅବଶ୍ୟ ମୁଁ ସୁବିଧା ଦେଖି ତାଙ୍କ ପିଲା ପାଇଁ ଛାତ୍ରାବାସରେ ସ୍ଥାନ କରି ଦେଇଥିଲି ।

ଚୌଧୁରୀ ଗଙ୍ଗାଧର ଦାଶଙ୍କର ଆଭିଜାତ୍ୟ ତାଙ୍କ ବିଚାର ବୁଦ୍ଧିକୁ ପ୍ରତିହତ କରିବାର ମୁଁ ଦେଖିନାହିଁ । ଯଦି କେବେ ଭାବାବେଗରେ ସେ କିଛି କହିପକାଉଥିଲେ ବା କରିପକାଉଥିଲେ, ପରେ ଭୁଲ ବୁଝିପାରିଲେ ସେ ତାହା ସଂଶୋଧନ କରୁଥିଲେ । ଥରେ ସ୍କୁଲରେ ଶିକ୍ଷକତା କରୁଥିବା ତାଙ୍କର ଜଣେ ଆତ୍ମୀୟଙ୍କର ଶିକ୍ଷାଦାନପ୍ରଣାଳୀ ବିଷୟରେ ମୁଁ କିଛି ମନ୍ତବ୍ୟ ପ୍ରକାଶ କରିଥିଲି । ସଂପୃକ୍ତ ଶିକ୍ଷକ ଏଥିରେ ମର୍ମାହତ ହୋଇ ଗଙ୍ଗାଧରବାବୁଙ୍କ ଆଗରେ ଜଣାଇବାରୁ ସେ ତାଙ୍କୁ ଉତ୍ତର ଦେଇଥିଲେ, "ହେଡ୍‌ମାଷ୍ଟର ଯାହା ଉଚିତ ମନେ କଲେ, ତାହା କରିଛନ୍ତି । ତାଙ୍କ କାର୍ଯ୍ୟରେ ହସ୍ତକ୍ଷେପ କରିବାକୁ ମୁଁ ଚାହେଁ ନାହିଁ ।''

ମୁଁ ତ ପୂର୍ବରୁ ପାଟନା ବିଶ୍ୱବିଦ୍ୟାଳୟର ମ୍ୟାଟ୍ରିକ୍ୟୁଲେଶନ ପରୀକ୍ଷାର ଇଂରାଜି ପରୀକ୍ଷକ ଥିଲି, ୧୯୪୩ରେ ଉତ୍କଳ ବିଶ୍ୱବିଦ୍ୟାଳୟ ଗଠିତ ହେବା ପରେ ମଧ୍ୟ କିଛିଦିନ ଇଂରାଜି ଏବଂ ଓଡ଼ିଆ ପରୀକ୍ଷକ ରୂପେ ନିଯୁକ୍ତ ହୋଇଥିଲି । ୧୯୪୪ ଠାରୁ ସ୍କୁଲ ବର୍ଷ ଜାନୁଆରୀ... ଡିସେମ୍ବର ପରିବର୍ତ୍ତେ ଜୁନ୍...ମେ ରଖାଗଲା ଏବଂ ସେହି ବର୍ଷ ୧୧ଶ ଶ୍ରେଣୀ ପିଲାଙ୍କର ଗୋଟିଏ ୭ ମାସିଆ ପାଠ୍ୟକ୍ରମ [Short session] ପ୍ରବର୍ତ୍ତିତ ହେଲା । ମୁଁ ସେ ବର୍ଷ ମାଟ୍ରିକ ପରୀକ୍ଷାରେ ଇଂରାଜି ପ୍ରଥମ ପତ୍ରର ପ୍ରଶ୍ନକର୍ତ୍ତା ନିଯୁକ୍ତ ହୋଇଥିଲି ।

ସ୍କୁଲର ପ୍ରାଇଜ୍ ଏବଂ ଅନ୍ୟାନ୍ୟ କାର୍ଯ୍ୟ ଉପଲକ୍ଷରେ ଯେଉଁ ବିଶିଷ୍ଟ ବ୍ୟକ୍ତି-ମାନେ ଭିଙ୍ଗାରପୁର ଯାଉଥିଲେ, ସେମାନେ ପ୍ରାୟ ଚୌଧୁରୀ ଗଙ୍ଗାଧର ଦାଶଙ୍କର ଆତିଥ୍ୟ ଗ୍ରହଣ କରୁଥିଲେ । ମୁଁ ଥିବା ସମୟରେ ପଣ୍ଡିତ ନୀଳକଣ୍ଠ ମିଶ୍ର, ଡକ୍ଟର ହରେକୃଷ୍ଣ ମହତାବ, ପଣ୍ଡିତ ଗୋଦାବରୀଶ ମିଶ୍ର ପ୍ରମୁଖ ନେତୃବର୍ଗ ସେଠାକୁ ଯାଇ ତାଙ୍କ ଦ୍ୱାରା ଅଭ୍ୟର୍ଥିତ ହୋଇଥିଲେ ।

ତତ୍କାଳୀନ ଡି.ପି.ଆଇ. ସ୍ୱର୍ଗତ ଶ୍ୟାମଚନ୍ଦ୍ର ତ୍ରିପାଠୀଙ୍କ ସଙ୍ଗେ ଗଙ୍ଗାଧର-ବାବୁଙ୍କର ସଦ୍ଭାବ ଥିଲା ଏବଂ ସେ ଅନେକ ସମୟରେ କଟକ ଆସିଲେ ସ୍କୁଲର ଉନ୍ନତି ବିଷୟରେ ତାଙ୍କ ସଙ୍ଗେ ପରାମର୍ଶ କରୁଥିଲେ । ଥରେ କଟକରୁ ଫେରି ସେ ମୋତେ କହିଲେ, "ରାମକୃଷ୍ଣବାବୁ, ଆପଣଙ୍କ ଲାଗି ମୁଁ ସବୁଠାରେ ପ୍ରଶଂସା ପାଉଛି ।'' ମୁଁ

ତାଙ୍କ କଥାର ତାତ୍ପର୍ଯ୍ୟ ବୁଝି ନ ପାରି 'କି ପ୍ରଶଂସା' ବୋଲି ପଚାରିବାରୁ ସେ କହିଲେ, "ମୁଁ ଡି. ପି.ଆଇ.ଙ୍କ ପାଖକୁ ଯାଇଥିଲି ଯେ ସେ କହୁଥିଲେ, "You have snatched a gem from my department. ଆମେ ରାମକୃଷ୍ଣ ନନ୍ଦଙ୍କୁ କଲେଜିଏଟ ସ୍କୁଲକୁ ଆଣିବାକୁ ଚେଷ୍ଟା କରୁଥିଲୁ, ଆଣିପାରିଲୁ ନାହିଁ, ମାତ୍ର ତୁମେ ତାଙ୍କୁ ଭଙ୍ଗାରପୁର ନେଇଗଲ ।"

ମୋର ଏ ଅଯାଚିତ ପ୍ରଶଂସା ଶୁଣି ମୁଁ ରହସ୍ୟରେ କହିଲି, "ସେ ଏହା କହିଥାନ୍ତୁ କି ନ କହିଥାନ୍ତୁ, ଏହିପରି ଟେକାଟେକି କରି ଆପଣ ମୋତେ ଭୁଲେଇ ଦେବାଲାଗି ବସିଛନ୍ତି, କିନ୍ତୁ ଏଥିରେ କଣ ପେଟ ପୂରିବ ?" ଉତ୍ତରରେ ସେ ହସି ହସି କହିଲେ, "ଆପଣଙ୍କ ହାତରେ ତ ସମସ୍ତ ସ୍କୁଲ ସମର୍ପଣ କରିଦେଇଛୁ । ମୋଠେଇଁ ଆଉ କଣ ଅଛୁ ?"

ଆଉ ଥରେ ସେହିପରି ବିଶ୍ୱବିଦ୍ୟାଳୟ ଅଫିସରୁ ସ୍କୁଲର ପରୀକ୍ଷା ଫଳାଫଳ ବୁଝିବାକୁ ଆସି ସେ ଯାହା ଦେଖିଯାଇଥିଲେ ଏବଂ ଶୁଣିଥିଲେ, ସେ କଥା ମୋ ଆଗରେ କହି ଆତ୍ମପ୍ରସାଦ ଲାଭ କରିବାର ମୁଁ ଲକ୍ଷ୍ୟ କରିଛି । ସେ କହିଲେ, "ଆମ ସ୍କୁଲ ଏକମାତ୍ର ସ୍କୁଲ ଯେଉଁଠୁ କୌଣସି ପରୀକ୍ଷାର୍ଥୀ ଇଂରାଜୀରେ ଫେଲ୍ ହୋଇନାହାନ୍ତି । ଯେଉଁ କେତେଜଣ ପରୀକ୍ଷାରେ ଫେଲ୍ ହୋଇଛନ୍ତି, ସେମାନେ ଇତିହାସ ଭୂଗୋଳରେ ବା ଅନ୍ୟ ବିଷୟରେ ଫେଲ୍ ହୋଇଛନ୍ତି, ମାତ୍ର ଇଂରାଜୀରେ ନୁହେଁ ।"

ନିଜର ପ୍ରଶଂସା ନିଜେ ବଖାଣିବା ଆଦୌ ସୁଖକର ନୁହେଁ, ମାତ୍ର ଶ୍ରୀ ବଟେଶ୍ୱର ହାଇସ୍କୁଲକୁ ଗୋଟିଏ ଉନ୍ନତ ଅନୁଷ୍ଠାନରୂପେ ଗଢ଼ିବା ପାଇଁ ପ୍ରତିଷ୍ଠାତା ଚୌଧୁରୀ ଗଙ୍ଗାଧର ଦାଶ କିପରି ବ୍ୟାକୁଳ ଥିଲେ, ଶୟନେ ସ୍ୱପନେ ଜାଗରଣେ କିପରି ସେଇ କଥା ଚିନ୍ତା କରୁଥିଲେ ଏବଂ ତାଙ୍କ ଅନୁଷ୍ଠାନର ସୁନାମ ଶୁଣିଲେ କିପରି ଗର୍ବ ଓ ଆନନ୍ଦ ଅନୁଭବ କରୁଥିଲେ, ତାହାର କିଞ୍ଚିତ୍ ଆଭାସ ଦେବା ଉଦ୍ଦେଶ୍ୟରେ ମୋତେ ଏହା ଲେଖିବାକୁ ପଡୁଛି । ମୁଁ ଓ ଅନୁଷ୍ଠାନ ସହିତ ସଂପୃକ୍ତ ଥିବା ମୋର ସହକର୍ମୀଗଣ ତାଙ୍କର ଏହି ବ୍ୟାକୁଳତା ଓ ତନ୍ମୟତାର ବହୁ ପ୍ରମାଣ ପାଇଛୁ ।

ଏଥିପୂର୍ବରୁ ମୁଁ ଯଦିବା ଅନ୍ୟାନ୍ୟ ଶିକ୍ଷକଭାବରେ ବହୁ ପରିଦର୍ଶକଙ୍କୁ ଦେଖିଥିଲି, ପ୍ରଧାନ ଶିକ୍ଷକଭାବରେ ଏହିଠାରେ ମୋତେ ପ୍ରଥମ ହୋଇ ସ୍କୁଲ ଇନ୍‌ସପେକ୍ଟରଙ୍କ ପରିଦର୍ଶନର ସମ୍ମୁଖୀନ ହେବାକୁ ହେଲା । ଗ୍ରୀଷ୍ମଛୁଟିରେ ମୁଁ ଗ୍ରାମରେ ଥିଲାବେଳେ ଦିନେ ସେକ୍ରେଟରୀ ଗଙ୍ଗାଧରବାବୁଙ୍କଠାରୁ ଖଣ୍ଡେ ପତ୍ର ପାଇଲି ଯେ ଠିକ୍ ସ୍କୁଲ ଖୋଲିବା ଦିନ ଇନସ୍‌ପେକ୍ଟର ଏସ୍. ରାୟ ସ୍କୁଲ ପରିଦର୍ଶନରେ ଆସିବେ ବୋଲି ଜଣାଇଛନ୍ତି । ତେଣୁ ପୂର୍ବରୁ ଯାଇ ପ୍ରସ୍ତୁତ ରହିବାକୁ ସେ ମୋତେ ଡକାଇଥିଲେ । ଛୁଟି ପୂରିବାକୁ ଛଅ ସାତ ଦିନ ଥିବାରୁ ମୁଁ ସଙ୍ଗେ ସଙ୍ଗେ ନ ଯାଇ ସ୍କୁଲ ଖୋଲିବାର ପୂର୍ବଦିନ ଭଙ୍ଗାରପୁରରେ ପହଞ୍ଚିଲି ।

ମୋତେ ଏତେ ଶୀଘ୍ର ଆସିବାର ଦେଖି ଗଙ୍ଗାଧରବାବୁ ମନେ ମନେ ଟିକିଏ ବିରକ୍ତ ଥିବାପରି ଜଣାଗଲା କିନ୍ତୁ ପ୍ରକାଶ୍ୟରେ ସେ ମୋତେ ଯାହା କହିଲେ ସେଥିରୁ ଅନୁମାନ କଲି, ରୋଗ ଅପେକ୍ଷା ଆଶଙ୍କା ଓ ଉତ୍କଣ୍ଠା ତାଙ୍କୁ ବେଶି ବିବ୍ରତ କରିଛି । ସେତେବେଳେ ଭୁବନେଶ୍ୱର ହାଇସ୍କୁଲ ଓ ଭିଙ୍ଗାରପୁର ହାଇସ୍କୁଲ ମଧ୍ୟରେ ପ୍ରତିଯୋଗିତା ଚାଲିଥାଏ । ଯେଉଁ ଅଞ୍ଚଳର ପିଲାମାନେ ପୂର୍ବରୁ ଭୁବନେଶ୍ୱର ହାଇସ୍କୁଲକୁ ଯାଉଥିଲେ, ସେଠାରୁ ଅନେକ ପିଲା ଭିଙ୍ଗାରପୁର ସ୍କୁଲକୁ ପଢ଼ିବାକୁ ଚାଲି ଆସୁଥାନ୍ତି । ଚୌଧୁରୀ ଗଙ୍ଗାଧର ଦାଶ ତାଙ୍କ ସ୍କୁଲ ବିଷୟରେ ସିଧା ଡି. ପି. ଆଇ.ଙ୍କ ସଙ୍ଗେ ପରାମର୍ଶ କରୁଥିବାରୁ ଇନସ୍‌ପେକ୍ଟର ଏସ୍. ରାୟ ତାଙ୍କ ଉପରେ ଅସନ୍ତୁଷ୍ଟ ଥାନ୍ତି । ଏପରିକି ସେ ଭୁବନେଶ୍ୱର ହାଇସ୍କୁଲ ପ୍ରତି ଅଧିକ ଅନୁଗ୍ରହ ଦେଖାଉଥାନ୍ତି ବୋଲି ଗଙ୍ଗାଧରବାବୁଙ୍କର ଧାରଣା ଜନ୍ମିଥାଏ ।

ମୋତେ ଦେଖିଲାମାତ୍ରେ ଗଙ୍ଗାଧରବାବୁ କହିଲେ, "ଆପଣ ଟିକିଏ ଆଗରୁ ଆସିଲେ ନାହିଁ ? ଇନସ୍‌ପେକ୍ଟର କାଲି ଆସିବେ ବୋଲି ଖବର ଦେଇଛନ୍ତି । ଦେଖନ୍ତୁ ଦୀର୍ଘ ଗ୍ରୀଷ୍ମଛୁଟିପରେ ସ୍କୁଲ ଖୋଲୁଛି, କିଏ ସେତିକିବେଳେ ଚାଉଳ, ପେଡ଼ିପେଟରା ଧରି ଘରୁ ଆସୁଥିବ, କେତେ ପିଲା ନ ଆସି ବି ପାରନ୍ତି, ମାଷ୍ଟରମାନେ କେତେବେଳକୁ ଆସିବେ ଠିକଣା ନାହିଁ, ଅଥଚ ଠିକ୍ ଏଇ ଦିନକୁ ଜାଣି ଶୁଣି ସେ ପ୍ରୋଗ୍ରାମ୍ ପକାଇଛନ୍ତି । ମୁଁ ତ୍ରିପାଠୀ ସାହେବଙ୍କ ପାଖକୁ ଯିବା ଆସିବା କରେ ବୋଲି ମୋ ଉପରେ ସେ ତ ଆଗରୁ ବିଗିଡ଼ିକରି ଅଛନ୍ତି, ସେଇ ରାଗରେ ସେ କାଲି ଆସୁଛନ୍ତି । ହଇରାଣ କରିବା ମତଲବ୍ ଛଡ଼ା ଆଉ କଣ ହୋଇପାରେ ?"

ମୁଁ କହିଲି, "ଆପଣ ବ୍ୟସ୍ତ ହୁଅନ୍ତୁ ନାହିଁ । ଅଫିସ କାଗଜପତ୍ର ତ ସବୁ ଠିକ୍ ଅଛି । ଆଉ ବାକି ସ୍କୁଲ ପାଠପଢ଼ା ପ୍ରଭୃତି ଯାହା ଦେଖିବାର ସେ ଦେଖିବେ । ଦେଡ଼ମାସ ଗ୍ରୀଷ୍ମଛୁଟିପରେ ଯେତେବେଳେ ସ୍କୁଲ ଖୋଲୁଛି, ପିଲାମାନେ ଚାଉଳ ପେଡ଼ିପେଟରା ଧରି ଆସିବେ ନିଶ୍ଚୟ । ଏଠି ବସ୍ ଅଛି ନା ଟ୍ରେନ ଅଛି ? ଇନ୍‌ସପେକ୍ଟର କଣ ଜାଣନ୍ତି ନାହିଁ ଏଇଟା ମଫସଲ ଜାଗା ବୋଲି ? ତେଣୁ ସମସ୍ତେ ଆସି ଠିକ୍ ସାଢ଼େ ଦଶଟା ପୂର୍ବରୁ ସ୍କୁଲରେ ପହଞ୍ଚିବା ସମ୍ଭବପର ନୁହେଁ । ଯେତେଦୂର ସମ୍ଭବ, ସ୍କୁଲ ସମୟ ଭିତରେ ଯେପରି କୌଣସି ବିଶୃଙ୍ଖଳା ନ ଘଟେ, ତା ମୁଁ ଦେଖିବି ।" ତାଙ୍କୁ ଏହିପରି ଦାନ୍ତ ଦେଇ ମୁଁ ବସାକୁ ଆସିଲି ।

ଇନ୍‌ସପେକ୍ଟର ଏସ୍. ରାୟ ନିର୍ଦ୍ଦିଷ୍ଟ ଦିନ ଆସି ପହଞ୍ଚିଲେ । ଭିଙ୍ଗାରପୁର ହାଇସ୍କୁଲ ପ୍ରତି ସେ ପୂର୍ବରୁ ପ୍ରତିକୂଳଭାବାପନ୍ନ ଅଛନ୍ତି ବୋଲି ଗଙ୍ଗାଧରବାବୁଙ୍କଠାରୁ ଶୁଣି ସୁଦ୍ଧା ମୁଁ ବିଚଳିତ ହୋଇ ନ ଥାଏ । ଡାକ୍ତରଖାନା ସଂଲଗ୍ନ ଜିଲ୍ଲାବୋର୍ଡ ବିଶ୍ରାମ ଗୃହରେ ସେ ଅବସ୍ଥାନ କରୁଥାନ୍ତି । ମୁଁ ବସାରେ ଥାଇ ଶୁଣିଲି ସେ ସକାଳ ୮ଟାରେ କିଶୋରବାବୁଙ୍କୁ ଡକାଇ ସ୍କୁଲର କାଗଜପତ୍ର ଦେଖାଦେଖି କରୁଛନ୍ତି । ସାଢ଼େ ଦଶଟାରେ ସ୍କୁଲ, ତେଣୁ ମୁଁ ପ୍ରାୟ ଦଶଟା ପନ୍ଦର ମିନିଟରେ ସ୍କୁଲରେ ପହଞ୍ଚିଲି ।

ଏଥିମଧ୍ୟରେ ସ୍ୱସ୍ତ ମହାଶୟ ସ୍କୁଲକୁ ଆସି ଛାତ୍ରାବାସରେ ପିଲାମାନଙ୍କର ଭୋଜନ ପ୍ରଭୃତି ଦେଖି ଟିକିଏ ବିରକ୍ତଭାବ ପ୍ରକାଶ କରିଥିବାର ଜଣେ ଶିକ୍ଷକ ମୋତେ ସୂଚନା ଦେଲେ । ସେ ଯାହା ହେଉ, ମୁଁ ଅଫିସରେ ପହଞ୍ଚିବାମାତ୍ରେ ଇନ୍‌ସପେକ୍ଟରଙ୍କ ସଙ୍ଗେ ମୋର ପ୍ରଥମ ସାକ୍ଷାତ ହେଲା ।

ଭଦ୍ରୋଚିତ ଢଙ୍ଗରେ ସେ ପ୍ରଥମେ ମୋର ପରିଚୟ ପଚାରି ବୁଝିଲା ପରେ ସ୍କୁଲ ଦେଖିବାକୁ ବାହାରିଲେ । ଶିକ୍ଷକମାନଙ୍କର ଶିକ୍ଷାଦାନ ଦେଖୁ ଦେଖୁ ସାଢ଼େ ଗୋଟାଏ ବାଜିଗଲା । ମୁଁ ବରାବର ତାଙ୍କ ପାଖରେ ରହିଥିଲି । ପରିଦର୍ଶନ ବେଳେ ତାଙ୍କ ବ୍ୟବହାର ଓ କଥାବାର୍ତ୍ତାରେ କୌଣସି ଅସ୍ୱାଭାବିକତା ବା ବିରକ୍ତଭାବ ଲକ୍ଷ୍ୟ କଲି ନାହିଁ, ବରଂ ସେ ମୋ ସଙ୍ଗେ ସ୍କୁଲର ବିଭିନ୍ନ ସମସ୍ୟା ବିଷୟରେ ଖୁବ୍ ବିଶଦ ଭାବରେ ଆଲୋଚନା କଲେ । ସ୍କୁଲ ପ୍ରତି ତାଙ୍କର ବିଦ୍ୱେଷ ବା ପ୍ରତିକୂଳ ଭାବ ଥିବାର କୌଣସି ପ୍ରମାଣ ପାଇଲି ନାହିଁ । ସାଢ଼େ ଗୋଟାଏ ବେଳେ ତାଙ୍କ ପରିଦର୍ଶନ କାର୍ଯ୍ୟ ଶେଷ କରି ସେ ବିଶ୍ରାମଭବନକୁ ଫେରିଗଲେ ।

ଅଳ୍ପ ସମୟ ପରେ ସେକ୍ରେଟେରୀ ଗଙ୍ଗାଧରବାବୁ ସ୍କୁଲରେ ଆସି ପହଞ୍ଚିଲେ । ସ୍କୁଲ ବିଷୟରେ ସେ ଏତେ ଉତ୍କଣ୍ଠିତ ଥିଲେ ଯେ ଦ୍ୱିପ୍ରହରେ ସେଦିନ ବିଶ୍ରାମ ନ କରି ସେ ଇନ୍‌ସପେକ୍ଟରଙ୍କୁ ତାଙ୍କ ବସାଠାରେ ଅପେକ୍ଷା କରି ବସିଥିଲେ ଏବଂ ତାଙ୍କ ମତାମତ ଶୁଣିବା ପରେ ଅନିବାର୍ଯ୍ୟ ଆଗ୍ରହରେ ଆମ୍ଭମାନଙ୍କୁ ତାହା ଜଣାଇବା ପାଇଁ ସ୍କୁଲ ପର୍ଯ୍ୟନ୍ତ ଚାଲି ଆସିଥିଲେ । ଏସ୍. ସ୍ୱସ୍ତଙ୍କଠାରୁ ସ୍କୁଲ ବିଷୟରେ ପଦେ ଭଲ କଥା ଶୁଣିବେ ବୋଲି ତାଙ୍କର ବିଶ୍ୱାସ ନ ଥିଲା । କିନ୍ତୁ ଇନ୍‌ସପେକ୍ଟର ବିଦ୍ୟାଳୟ ପରିଦର୍ଶନରେ ଅତ୍ୟନ୍ତ ସନ୍ତୋଷ ଲାଭ କରିଥିବା ପ୍ରକାଶ କରିବାରୁ ତାଙ୍କର ପୂର୍ବର ଆଶଙ୍କା ଦୂରୀଭୂତ ହେଲା । ମୋତେ ପ୍ରଶଂସା କରି ଏବଂ ସେଦିନ ଚାରିଟା ବେଳକୁ ତାଙ୍କ ବାସଭବନକୁ ଯିବାକୁ କହି ସେ ଆମ୍ଭମାନଙ୍କ ପାଖରୁ ବିଦାୟ ନେଲେ ।

ସନ୍ଧ୍ୟାବେଳେ ସେ ତାଙ୍କ ଘରଠାରେ ଆମ୍ଭମାନଙ୍କୁ ଏକ ଭୋଜିରେ ଆପ୍ୟାୟିତ କରିଥିଲେ । ସେଠାରେ ଆଳାପ ଆଲୋଚନା ଏବଂ ହସଖୁସିରୁ ଜଣାଗଲା ଯେ ସେ ଦୁହିଁଙ୍କ ମଧ୍ୟରେ ପୂର୍ବରୁ ରହିଥିବା ଭୁଲ ବୁଝାମଣା ସମ୍ପୂର୍ଣ୍ଣ ଦୂର ହୋଇଯାଇଛି । ସେଠାରେ ଉପସ୍ଥିତ ରହି ଏ ମିଳାମିଶାରେ ନିମିତ୍ତ ହୋଇଥିବାରୁ ମୁଁ ଅତ୍ୟନ୍ତ ଆନନ୍ଦିତ ହେଲି ।

ଯଥା ସମୟରେ ଇନ୍‌ସପେକ୍ଟରଙ୍କ ପରିଦର୍ଶନ ମନ୍ତବ୍ୟ ଆମର ହସ୍ତଗତ ହେଲା । ଅନ୍ୟାନ୍ୟ ବିଷୟ ମଧ୍ୟରେ ସେ ବିଦ୍ୟାଳୟର ପୂର୍ବ ଦୁରବସ୍ଥା ଏବଂ ମୋ ଆସିବା ପରେ ବିଭିନ୍ନ ବିଭାଗରେ ସ୍କୁଲର ଯଥେଷ୍ଟ ଉନ୍ନତି ହୋଇଥିବା ବିଷୟ ଉଲ୍ଲେଖ କରି ମୋର କାର୍ଯ୍ୟକଳାପକୁ ଖୁବ୍ ପ୍ରଶଂସା କରିଥିଲେ ।

ଭିଙ୍ଗାରପୁରକୁ ଯାତାୟାତରେ ସେପରି କୌଣସି ସୁବିଧା ନ ଥିବା ଯୋଗୁଁ ସେଠାକୁ ସାଧାରଣତଃ ଉଚ୍ଚପଦସ୍ଥ କର୍ମଚାରୀମାନେ ବେଶି ଯାଆନ୍ତି ନାହିଁ । ଯଦିବା

ସକାଳୁଆ ସ୍କୁଲ ହେଉଥିବାବେଳେ ପୁରୀ ଜିଲ୍ଲା କଲେକ୍ଟର ଶ୍ରୀ ବିଶ୍ୱେଶ୍ୱର ପଟ୍ଟନାୟକ ହଠାତ୍ ବାଲିପାଟଣାରୁ ଆସି ପହଞ୍ଚିଗଲେ ଏବଂ ବଗିଚାରେ ଟିକିଏ ବୁଲାବୁଲି କରି-ସାରି କ୍ଲାସ ଦେଖିବାକୁ ଇଚ୍ଛା ପ୍ରକାଶ କଲେ । ମୁଁ ତାଙ୍କୁ ବିଭିନ୍ନ ଶ୍ରେଣୀ ଦେଖାଇ ନେଉଥିବାବେଳେ ଏକ ଅଡୁଆ ପରିସ୍ଥିତିର ସମ୍ମୁଖୀନ ହୋଇଥିଲି । ଅଷ୍ଟମ ଶ୍ରେଣୀର ଡ୍ରଇଁ ଶିକ୍ଷକ ସେଦିନ ଅନୁପସ୍ଥିତ ଥିବାରୁ ଅନ୍ୟ ଜଣେ ଶିକ୍ଷକଙ୍କୁ ଉକ୍ତ କ୍ଲାସ ଦିଆ-ଯାଇଥିଲା । ସେ ପିଲାମାନଙ୍କୁ ଗୋଟିଏ କୁକୁଡ଼ାର ଚିତ୍ର ଆଙ୍କିବାକୁ ଦେଇଥିଲେ । ବିଶ୍ୱେଶ୍ୱରବାବୁ ପିଲାମାନଙ୍କ ଡ୍ରଇଁ ଦେଖିବାକୁ ଚାହିଁବାରୁ ମୁଁ ଖାତା ସଂଗ୍ରହ କରିବାକୁ ଯାଇ ଦେଖେ ତ କେତେକ ପିଲା କିଛି କରି ନାହାନ୍ତି, ଆଉ କେତେକ କିମ୍ଭୂତ-କିମାକାର ଚିତ୍ରଗୁଡ଼ିଏ କରିଛନ୍ତି । କେବଳ ଗୋଟିଏ ଦୁଇଟି ଚିତ୍ରରେ କୁକୁଡ଼ାର ସାଦୃଶ୍ୟ ଟିକିଏ ମିଳିଲା । ଚାରି ଛଅଟି ଖାତାରୁ ପିଲାଙ୍କର ଶିଳ୍ପଚାତୁର୍ଯ୍ୟର ନମୁନା ଦେଖି କଲେକ୍ଟର ହସି ଉଠିଲେ ।

ହସିବାର କଥା । ଅବସ୍ଥାକୁ ଧଉଳେଇବାକୁ ଇଚ୍ଛା କରି ମୁଁ ଡ୍ରଇଁ ଶିକ୍ଷକଙ୍କ ଅନୁପସ୍ଥିତ କଥା କହିଲି ଏବଂ ସଙ୍ଗେ ସଙ୍ଗେ ପକେଟରୁ ଚକ୍ ଖଣ୍ଡେ ବାହାର କରି ଅଧ ମିନିଟକ ଭିତରେ ବ୍ଲାକ୍‌ବୋର୍ଡରେ ଗୋଟିଏ ମୟୂରର ଚିତ୍ର ଅଙ୍କିଦେଲି । ପିଲାମାନେ ସାଧାରଣତଃ ଯେଉଁ ବସ୍ତୁ ବା ଜୀବଜନ୍ତୁଙ୍କୁ ବେଶୀ ଦେଖିବାକୁ ପାଆନ୍ତି ନାହିଁ, ସେଗୁଡ଼ିକର ଚିତ୍ର ଆଙ୍କିବାକୁ ଦେଲାବେଳେ ତାଙ୍କ ଆଗରେ ତାହାର ଆଦର୍ଶ ଦେଖାଇବା ଉଚିତ । ସଂପୃକ୍ତ ଶିକ୍ଷକଙ୍କୁ ଏ କଥା କହିବା ସଙ୍ଗେ ସଙ୍ଗେ ମୁଁ ଚିତ୍ରଟି ଆଙ୍କି ଦେବାର ଦେଖି ବିଶ୍ୱେଶ୍ୱରବାବୁ ମୋ ଅଙ୍କନଦକ୍ଷତାରେ ଖୁସି ହୋଇ ମୋତେ ପଚାରିଲେ, "ଆପଣ କେଉଁଠୁ ଏ ବିଦ୍ୟା ଶିଖିଥିଲେ ?" ମୁଁ ମାଇନର ସ୍କୁଲର ଛାତ୍ର ଥିଲା ବେଳେ ଶିଖିଥିଲି ବୋଲି ଉତ୍ତର ଦେଲି । ତା ପରେ ସେ ମୋତେ କହିଲେ, "ଆପଣ ତ ଭଲ ଡ୍ରଇଁ କରି ପାରୁଛନ୍ତି; ଆପଣ ଡ୍ରଇଁ ନେଉନାହାନ୍ତି କାହିଁକି ?"

ମୁଁ ଯେଉଁ ଭେଲକି ଦେଖାଇ କଲେକ୍ଟରଙ୍କୁ ସେଦିନ ଭୁଲାଇ ଦେଲି ସେ ତାହା ବୁଝି ପାରି ନ ଥିବେ । ପ୍ରତ୍ୟୁତ୍ପନ୍ନମତି ବଳରେ ତାଙ୍କ ଧାରଣାକୁ ବଦଳାଇବା ଥିଲା ମୋର ଲକ୍ଷ୍ୟ । ମୁଁ ତାହା କରିପାରିଲି, କିନ୍ତୁ କୌଣସି ଶିକ୍ଷାବିତ୍ ପରିଦର୍ଶକଙ୍କ ଆଖିରେ ମୁଁ ଧୂଳି ଦେଇ ପାରି ନ ଥାନ୍ତି । ଅସଲ କଥା, ମୋତେ ମୟୂର ଚିତ୍ର ଯେତେ ଭଲ କରି ଆସେ, କୁକୁଡ଼ା ଚିତ୍ର ସେପରି ଆସେ ନାହିଁ । ମୋର ସେଦିନ ମୟୂର ଚିତ୍ର ଦେଖାଇବାର ଆବଶ୍ୟକତା ନ ଥିଲା । କୁକୁଡ଼ାଟାଏ ଅଙ୍କିଥିଲେ ପ୍ରାସଙ୍ଗିକ ହୋଇଥାନ୍ତା, କିନ୍ତୁ ମୁଁ ଚାହୁଁଥିଲି ଯେ କୌଣସି ଉପାୟରେ କଲେକ୍ଟରଙ୍କ ଖରାପ ଧାରଣାକୁ ବଦଳାଇବି । ସୌଭାଗ୍ୟକୁ ଜିତିଗଲି ।

ଭଙ୍ଗାରପୁର ହାଇସ୍କୁଲରେ ମୁଁ ସହକର୍ମୀ ଶିକ୍ଷକମାନଙ୍କର ପୂର୍ଣ୍ଣ ସହଯୋଗ ପାଇପାରିଥିଲି ବୋଲି ସ୍କୁଲର ଦ୍ରୁତ ଉନ୍ନତି ବିଧାନରେ ସମର୍ଥ ହୋଇଥିଲି । ଆମ୍ଭମାନଙ୍କର ପାରସ୍ପରିକ ସମ୍ପର୍କ ସୌହାର୍ଦ୍ଦ୍ୟପୂର୍ଣ୍ଣ ଥିଲା । କର୍ତ୍ତବ୍ୟର ତାଡ଼ନାରେ

ମୁଁ ତାହାକୁ କେତେବେଳେ ଶାସନ କରୁଥିଲେ ସୁଦ୍ଧା ମୋ ଆଚରଣରେ କେହି କେବେ କ୍ଷୁବ୍ଧ ହେବାର ମୁଁ ଲକ୍ଷ୍ୟ କରିନାହିଁ । ଇଂରାଜୀରେ ସେହି ସୁପରିଚିତ ଉକ୍ତି 'Example is better than precept' ଅର୍ଥାତ୍ 'ଉପଦେଶ ଅପେକ୍ଷା ଉଦାହରଣ ଭଲ' ଏ କ୍ଷେତ୍ରରେ ମୋତେ ବିଶେଷ ସାହାଯ୍ୟ କରିଥିଲା । ମୁଁ ଯେତେଦୂର ସମ୍ଭବ ନିୟମାନୁବର୍ତ୍ତୀ ହୋଇ କର୍ତ୍ତବ୍ୟ ପାଳନ କରୁଥିଲି; ତେଣୁ ଶିକ୍ଷକମାନେ ମଧ୍ୟ ସ୍ୱ ସ୍ୱ କର୍ତ୍ତବ୍ୟ ସମ୍ପାଦନରେ ସଚେତନ ଥିଲେ । ଅନୁଷ୍ଠାନର କାର୍ଯ୍ୟ ଶୃଙ୍ଖଳାର ସହ ପରିଚାଳିତ ହେଉଥିବାରୁ ଏବଂ ବିଶ୍ୱବିଦ୍ୟାଳୟ ପରୀକ୍ଷା ଫଳରେ ଯଥେଷ୍ଟ ଉନ୍ନତି ଲକ୍ଷିତ ହେବାରୁ ସ୍କୁଲର ଅଭ୍ୟନ୍ତରୀଣ ବ୍ୟାପାରରେ ସେକ୍ରେଟାରୀ ବା ଅନ୍ୟ କୌଣସି କର୍ତ୍ତାଙ୍କର ହସ୍ତକ୍ଷେପ କରିବା ଆବଶ୍ୟକ ପଡ଼ୁ ନ ଥିଲା ।

ଭଞ୍ଜନଗରର ଶ୍ରୀବତ୍ସେଶ୍ୱର ହାଇସ୍କୁଲର ଅବସ୍ଥିତି ଯେପରି, ସେଠାକୁ ପୂର୍ବରୁ ନ ଜଣାଇ କୌଣସି ପରିଦର୍ଶକ ସହଜରେ ଯାଇ ପାରୁ ନ ଥିଲେ । ମୁକ୍ତ ପାନ୍ତର ମଧ୍ୟରେ ଅବସ୍ଥିତ ଥିବାରୁ ଅଧମାଇଲେ ଦୂରରୁ ଆଗନ୍ତୁକମାନଙ୍କୁ ସ୍କୁଲରୁ ଦେଖି ହେଉଥିଲା । ସେଠାରେ ହେଡମାଷ୍ଟର ନିର୍ଜନ ଦ୍ୱୀପରେ ନିର୍ବାସିତଙ୍କ ପରି ରହି

'ଦେଖନ୍ତି ନେତ୍ର ଯାହା ଚଉଦିଗର
ସେ ସବୁର ଅଟଇ ମୁଁ ଅଧୀଶ୍ୱର ।'

ଏପରି ଭାବିବାରେ ମଧ୍ୟ କ୍ଷତି ନ ଥିଲା । କୈଫିୟତ୍ ମାଗିବାର ଭୟ ନ ଥିଲେ ସୁଦ୍ଧା ମୁଁ ସାଢ଼େ ଦଶଟା ପୂର୍ବରୁ ସ୍କୁଲରେ ଉପସ୍ଥିତ ହେଉଥିଲି । ଦିନକର କଥା ମନେ ପଡ଼ୁଛି, ଘରେ ରୋଷେଇ ସରି ନ ଥିବାରୁ ନ ଖାଇ ସେଦିନ ସ୍କୁଲକୁ ଯିବାକୁ ପଡ଼ିଥିଲା । ଗଲାବେଳେ ଘରେ ସ୍ତ୍ରୀଙ୍କୁ କହିଯାଇଥିଲି, 'ଦ୍ୱିତୀୟ ପିରିଅଡ଼ ପରେ ଆସି ଖାଇଯିବି ।' କିନ୍ତୁ ସ୍କୁଲ କାର୍ଯ୍ୟରେ ଏପରି ବ୍ୟସ୍ତ ରହିଲି ଯେ ଖାଇବା କଥା ସମ୍ପୂର୍ଣ୍ଣ ଭୁଲିଗଲି । ଚାରିଟାପରେ ଘରକୁ ଆସିବାମାତ୍ରେ ମୋ ସ୍ତ୍ରୀ ଯେତେବେଳେ ନ ଆସିବାର କାରଣ ପଚାରିଲେ, ସେତେବେଳେ ମୋର ଖାଇ ନ ଥିବା କଥା ମନେ ପଡ଼ିଲା । ତାଙ୍କୁ କହିଲି, "ଚାକରକୁ ପଠାଇ ମୋତେ ଡକାଇ ଆଣିଲ ନାହିଁ କାହିଁକି ? ମୁଁ ଖାଇବା କଥା ଭୁଲି ଯାଇଛି ।" କାଳେ ମୁଁ ବିରକ୍ତ ହେବି ଏହି ଭୟରେ ଚାକର ସ୍କୁଲକୁ ଯିବାକୁ ରାଜି ହେଲା ନାହିଁ ବୋଲି ସେ କହିଲେ ।

ମୁଁ ନିୟମ ଓ ଶୃଙ୍ଖଳା ମାନି ଚାଲୁଥିବାରୁ ସହକର୍ମୀ ଶିକ୍ଷକମାନେ ମଧ୍ୟ ବାଟରେ ଚାଲିବାକୁ ଚେଷ୍ଟା କରୁଥିଲେ । ସେମାନଙ୍କୁ ବିଶେଷ କିଛି ତାଗିଦା କରିବାକୁ ମୋତେ ପଡ଼ୁ ନ ଥିଲା । ଏହିଭଳି ପରିବେଶରେ ଛାତ୍ରମାନେ ପଢ଼ୁଥିବାରୁ ସେମାନଙ୍କ ଆଚରଣରେ ଗୁରୁତର ତ୍ରୁଟି କ୍ୱଚିତ୍ ଦେଖିବାକୁ ମିଳୁଥିଲା । ସାଧାରଣତଃ ମୋ କାନରେ କୌଣସି କଥା ପଡ଼ିବା ପୂର୍ବରୁ ତାହା ସୁରୁଖୁରୁରେ ତୁଟି ଯାଉଥିଲା । ଛାତ୍ରର ଅପରାଧ ମୋ ଦୃଷ୍ଟିକୁ ଆସିଛି ଜାଣିଲେ, ଅପରାଧୀ ଛାତ୍ର ସ୍କୁଲ ଛୁଟିପରେ

ଶଙ୍କିତ ଚିତ୍ତରେ ମୋତେ ଦେଖା କରୁଥିଲେ । ମୁଁ ସେମାନଙ୍କୁ ଅଭୟ ଦେଇ ଯାହା ଦୁଇ ଚାରି ପଦ କହୁଥିଲି, ତାହାହିଁ ତାଙ୍କୁ ସୁଧାରିବା ଦିଗରେ ଯଥେଷ୍ଟ ହେଉଥିଲା ।

ଆଜିକାଲିର ଧର୍ମଘଟ, ଅନଶନ ଓ ଘେରାଉ ପ୍ରଭୃତି ଦେଖିଲେ ଆଶ୍ଚର୍ଯ୍ୟ ଲାଗେ ସେ କାଳରେ ସ୍ୱଳ୍ପବେତନଭୋଗୀ ଶିକ୍ଷକମାନେ କୌଣସି ପ୍ରକାର ପ୍ରତିବାଦ ନ କରି ନୀରବରେ ସ୍ୱ ସ୍ୱ କର୍ତ୍ତବ୍ୟ ସମ୍ପାଦନ କରୁଥିଲେ । ସେମାନେ ଯେ ନିଜ ଅବସ୍ଥାରେ ସନ୍ତୁଷ୍ଟ ଥିଲେ ତା ନୁହେଁ, ମାତ୍ର ବେତନ ବୃଦ୍ଧି ପାଇଁ ମିଳିତ ଭାବରେ ଆନ୍ଦୋଳନ କରିବା ବା ଛୁଟି ନେବା ସେମାନଙ୍କ କଳ୍ପନାର ବାହାରେ ଥିଲା । ତାଲିମପ୍ରାପ୍ତ ମାଟ୍ରିକ ଶିକ୍ଷକମାନେ ମାସିକ ତିରିଶ ଟଙ୍କା ଏବଂ ତାଲିମପ୍ରାପ୍ତ ଗ୍ରାଜୁଏଟମାନେ ଷାଠିଏ ଟଙ୍କା ଦରମାରେ ବର୍ଷ ବର୍ଷ କାମ କରି ବୁଢ଼ା ଦିନେ ହେଲେ ଆପତ୍ତି କରି ନ ଥିଲେ । ମୋ ପରେ ଶ୍ରୀବତ୍ସେଶ୍ୱର ହାଇସ୍କୁଲର ପ୍ରଧାନ ଶିକ୍ଷକ ଥିବା ଶ୍ରୀ ଚନ୍ଦ୍ରାମଣି ଜେନାଙ୍କୁ ମୁଁ ଥରେ କହିଲି, "ଆପଣମାନେ ବେତନବୃଦ୍ଧି ପାଇଁ ଦରଖାସ୍ତ ଦେଉ-ନାହାନ୍ତି କାହିଁକି ?" ଉତ୍ତରରେ ସେ କହିଲେ, "ଆପଣଙ୍କ ପରି ଜଣେ ଅଭିଜ୍ଞ ବ୍ୟକ୍ତି ପ୍ରଧାନ ଶିକ୍ଷକ ପଦରେ ରହି ମାସକୁ ଶହେ ଟଙ୍କା ନେଉଥିବା ସ୍ଥଳେ ଆମ୍ଭମାନଙ୍କ ବେତନ ତା ତୁଳନାରେ କିଛି ତ କମ୍ ହୋଇନାହିଁ ।" ମୁଁ କହିଲି "ଆପଣମାନେ ଭୁଲ ବୁଝିଛନ୍ତି । ପ୍ରଥମ କଥା, ମୁଁ ଏଠାରେ ବେଶି ଦିନ ରହିବି ନାହିଁ । ଦ୍ୱିତୀୟରେ, ଆଉ ଦଶ ପନ୍ଦର ଟଙ୍କା ଅଧିକ ପାଇଲେ ମୁଁ ବିଶେଷ ଉପକୃତ ହେବି ନାହିଁ । ଗରିବ ପିଲାଙ୍କ ପାଇଁ ମୁଁ ସେତକ ଖର୍ଚ୍ଚ କରି ଦେଉଛି । ମୁଁ ସ୍କୁଲ ପାଇଁ ଯାହା କାମ କରୁଛି, ମ୍ୟାନେଜିଂ କମିଟି ତାର ଉଚିତ ମୂଲ୍ୟ ମୋତେ ଦେଇପାରିବେ ନାହିଁ, ମୁଁ ଜାଣେ । ତେଣୁ ଦଶ ପନ୍ଦରଟା ଟଙ୍କା ପାଇଁ ନାଁ ମାରିବି କାହିଁକି ? ମୁଁ ବି ଏଠାକୁ ସେ ଉଦ୍ଦେଶ୍ୟରେ ଆସିନାହିଁ । କିନ୍ତୁ ଅନ୍ୟ ଶିକ୍ଷକମାନଙ୍କ କଥା ତ ତା ନୁହେଁ । ଆପଣମାନେ ଦରଖାସ୍ତ କରନ୍ତୁ ।"

ମୋଠାରୁ ଏତକ ଶୁଣିବାପରେ ଚନ୍ଦ୍ରାମଣିବାବୁ ଓ ଅନ୍ୟ ଶିକ୍ଷକମାନେ ବେତନବୃଦ୍ଧି ପାଇଁ ଆବେଦନ କଲେ । ପରିଚାଳନା ସମିତିରେ ଯେତେବେଳେ ଏ ପ୍ରସଙ୍ଗର ବିଚାର ହେଲା, ମୁଁ କହିଲି, "ଶିକ୍ଷକମାନଙ୍କର ଆନ୍ତରିକ ଉଦ୍ୟମ ଫଳରେ ସ୍କୁଲର ଛାତ୍ରସଂଖ୍ୟା ବୃଦ୍ଧି ପାଇବା ସଙ୍ଗେ ସଙ୍ଗେ ଆର୍ଥିକ ଅବସ୍ଥାର ଉନ୍ନତି ଘଟିଛି । ସଞ୍ଚିତ ଅର୍ଥରୁ କିଛି ରିଜର୍ଭ ପାଣ୍ଠିରେ ଜମା ରଖି ଅବଶିଷ୍ଟ ଶିକ୍ଷକମାନଙ୍କୁ ଦିଆଯାଉ ।" ଏହା ଶୁଣି ସଭାପତି ନୀଳକଣ୍ଠବାବୁ କହିଲେ, "ଆପଣଙ୍କ ଯୋଗୁ ହିଁ ସ୍କୁଲର ଉନ୍ନତି ଘଟିଛି । ଯଦି ଦରମା ବଢ଼ିବ, ଆପଣଙ୍କର କେବଳ ବଢ଼ୁ ।" ମୁଁ ପ୍ରତିବାଦ କରି କହିଲି ଯେ "ଶିକ୍ଷକମାନଙ୍କର ସହଯୋଗ ବିନା ମୁଁ କିଛି କରିପାରି ନ ଥାନ୍ତି । ତେଣୁ ସେମାନଙ୍କ ଦାବି ଉପେକ୍ଷା କରାଯାଇ ନ ପାରେ ।"

ଶେଷରେ ତାହାହିଁ ହେଲା, ମାତ୍ର ସଭାପତି କହିଲେ ଆଗ ମୋର କେତେ ଦରମା ବଢ଼ିବ, ତାହା ସ୍ଥିର ହୋଇ ସାରିଲେ ଅନ୍ୟ ଶିକ୍ଷକମାନଙ୍କ ବିଷୟ ବିଚାର

କରିପାରିବ । ମୁଁ ଏହାର ମଧ୍ୟ ପ୍ରତିବାଦ କଲି । କହିଲି, "ପ୍ରଥମେ ସହକାରୀ ଶିକ୍ଷକମାନଙ୍କ ବେତନବୃଦ୍ଧିର ପରିମାଣ ସ୍ଥିର ହୋଇ ସାରିଲା ପରେ ଯାହା ବଳିବ, ମୁଁ ତାହା ନେବ ।" ଶେଷରେ ସଭ୍ୟମାନେ ସେ ଭାର ମୋ ଉପରେ ପକାଇଦେଲେ । ମୋ ପ୍ରସ୍ତାବ ଅନୁଯାୟୀ ସମସ୍ତଙ୍କ ବେତନ ସ୍ଥିର କରାଗଲାପରେ ମୋ ଭାଗକୁ ରହିଲା ଅଠର ଟଙ୍କା । ଅଠର ଟଙ୍କାରୁ ଅଧିକ ଦିନ ଭୋଗ କରିବା ମଧ୍ୟ ମୋ ଭାଗ୍ୟରେ ନ ଥିଲା ।

## ପାରିବାରିକ ଓ ଅନ୍ୟାନ୍ୟ

୧୯୪୩ ମସିହା ଅକ୍ଟୋବର ୨୧ ତାରିଖ ମୋର ଏବଂ ମୋ ସ୍ତ୍ରୀଙ୍କ ଜୀବନର ଏକ ସ୍ମରଣୀୟ ଦିବସ । ସେହିଦିନ ଆମ ଘରକୁ ଆନନ୍ଦମୁଖର କରି ଜାତ ହେଲା ଗୋଟିଏ ପୁତ୍ର ସନ୍ତାନ । ତାହାର ରକ୍ତିମ ଆଭା ଯେତେବେଳେ ପୂର୍ବାକାଶରେ ଧୀରେ ଧୀରେ ମିଳେଇଯାଉଥିଲା ଏବଂ ପ୍ରକୃତିବିହଙ୍ଗମଗଣ ବାଳରବିଙ୍କର ସ୍ୱାଗତଗୀତ ଗାଇ ଚତୁଃସୀମାକୁ ଶବ୍ଦାୟିତ କରୁଥିଲେ, ଠିକ୍ ସେତିକିବେଳେ ସେହି ଶିଶୁର କୁଆଁ କୁଆଁ ଡାକ ଆମ ଉଭୟଙ୍କ ପ୍ରାଣରେ ଭରିଦେଇଥିଲା ଅପାର ଆନନ୍ଦ । ପ୍ରଭାତକାଳରେ ଜାତ ବୋଲି ତାର ନାମ ରଖିଲି ପ୍ରଭାତ । ସୁଦୀର୍ଘ ବାର ବର୍ଷ ପରେ ପିତାମାତା ହୋଇଥିବାରୁ ଆମର ଯେଉଁ ଆତ୍ମୀୟମାନେ ଆମପ୍ରତି ସମବେଦନା ଜ୍ଞାପନ କରୁଥିଲେ, ଆମ ଅପେକ୍ଷା ସେମାନେ ଅଧିକ ପରିତୃପ୍ତି ଲାଭ କଲେ । ଏକୋଇଶା ଦିନର ଆନନ୍ଦ ଉତ୍ସବରେ ସ୍କୁଲ ପଡ଼ିଆରେ ଥିବା ମୋର ସେ କରୁଗେଟିଆ ବସାଘରଟି ବନ୍ଧୁ ଓ ସ୍ୱଜନମାନଙ୍କ କୋଳାହଳରେ ମୁଖରିତ ହୋଇ ଉଠିଲା ।

ଏହି ପୁତ୍ରଟିର ଜନ୍ମପରେ ଆମେ ଆଉ ସାତୋଟି କନ୍ୟା ସନ୍ତାନ ଲାଭ କରିଛୁ । ସରକାରଙ୍କ ପରିବାର ନିୟନ୍ତ୍ରଣ ଯୋଜନାର ଆଶୀର୍ବାଦ ସେତେବେଳେ ଆମକୁ ମିଳି ନ ଥିଲା । କିନ୍ତୁ ଏତେଗୁଡ଼ିଏ କନ୍ୟାଙ୍କର ପିତାମାତା ହୋଇଛୁ ବୋଲି ଆମେ କେବେ ମ୍ରିୟମାଣ ହୋଇନାହୁଁ । କନ୍ୟାଟିଏ ଜନ୍ମ ହେଲେ ଆମ ସମାଜର ଜଣେ ଜଣେ ପିତାମାତା ଯେତେଦୂର ବିବ୍ରତ ଓ ବିଚଳିତ ହୋଇପଡ଼ନ୍ତି, ସେପରି ହୋଇଥିଲେ ଆମର ଜୀବନ ଦୁର୍ବହ ହୋଇପଡ଼ିଥାଆନ୍ତା । କିନ୍ତୁ ତା ହୋଇନାହିଁ । ବୋଧହୁଏ ମଙ୍ଗଳମୟଙ୍କର ଅପାର ଅନୁଗ୍ରହ ଆମ ମନକୁ ପୁତ୍ର-କନ୍ୟା-ଭେଦର ସାମାଜିକ ଦୁର୍ଭାବନାରୁ ମୁକ୍ତ ରଖି ଆମକୁ ଦେଇଛି ଗୋଟିଏ ଅମୋଘ ଔଷଧ—ସମଦର୍ଶିତା ।

ମୋର ପରବର୍ତ୍ତୀ ଜୀବନର ଗୋଟିଏ ଘଟଣା ଏଠାରେ ଉଲ୍ଲେଖ ନ କରି ରହିପାରୁନାହିଁ । ମୁଁ କଟକରେ ଥିଲାବେଳେ ଥରେ ମୋର ଜଣେ ପଞ୍ଜାବୀ ବନ୍ଧୁ କଲିକତାର ଜଣେ ମାରୁଆଡ଼ି ଭଦ୍ରଲୋକଙ୍କୁ ସଙ୍ଗରେ ଘେନି ମୋ ନିକଟକୁ କାର୍ଯ୍ୟଉପଲକ୍ଷରେ ଆସିଥିଲେ । ଉଭୟେ ମୋ ପାଖରେ ବସି

କିଛି ସମୟ ଆଲୋଚନା କଲାପରେ ଯେତେବେଳେ ଉଠି ବିଦାୟ ନେଇ ଚାଲିଗଲେ ସେତିକିବେଳେ ଉକ୍ତ ମାରୁଆଡ଼ି ଭଦ୍ରବ୍ୟକ୍ତି ମୋର ପଞ୍ଜାବୀ ବନ୍ଧୁଙ୍କ ପାଖକ ନିକଟରେ କହିଲେ, "ତୁମର ଏ ଓଡ଼ିଆବାବୁଟି ଆଠଟି କନ୍ୟାର ପିତା ହୋଇ ଯେ ହସି ହସି କଥାବାର୍ତ୍ତା କରିପାରୁଛି, ତାହା ଦେଖି ମତେ ଆଶ୍ଚର୍ଯ୍ୟ ଲାଗିଲା ।"

କନ୍ୟାଜନ୍ମ ପ୍ରକୃତରେ କଣ ଏକ ଅଭିଶାପ ! ବୋଧହୁଏ ହଁ । ଅନ୍ତତଃ ଆମ ସମାଜରେ । ନାରୀର ନିର୍ଭରଶୀଳତା ତାକୁ ପରିବାରରେ ଯେପରି ହେୟ ଓ ଲାଞ୍ଛିତ କରି ରଖିଛି, ସେଥିରେ କେବଳ ବେଶ-ପରିପାଟୀ ଓ ରୂପସଜ୍ଜାରେ ସାମୟିକ ଆତ୍ମସନ୍ତୋଷ ଲାଭ କରିବା ଛଡ଼ା ତା ଜୀବନରେ ବେଶି କିଛି ଆନନ୍ଦ ଥିଲାପରି ମନେ ହୁଏ ନାହିଁ । ମୁଁ ଯେତିକି ମୋ ଅନୁଭୂତି ଉପରେ ଆଖି ବୁଲାଇ ଆସୁଛି, ଏ ଧାରଣା ମୋର ସେତିକି ବଦ୍ଧମୂଳ ହେଉଛି ।

ମୋର ଜୀବନ ପ୍ରାୟ ଅନ୍ତିମାନ୍ତ ହୋଇ ଆସିଲାଣି । ମୁଁ 'କଳସଠା ଷାଠିଏ' ସୀମାରେଖା ପାର ହେଇଗଲଣି । ଆଧୁନିକ ଶିକ୍ଷା, ସଭ୍ୟତା ଏବଂ ଆମ ସମ୍ବିଧାନର ଯାବତୀୟ ଅନୁଚ୍ଛେଦ ଓ ଆଇନ ଏ ସମାଜର ନାରୀ-ନିର୍ଯାତନ ବେଦନା ଉପଶମ କରିପାରିନାହିଁ । ଗଣତନ୍ତ୍ର ସରକାର ଅନ୍ଧାରରେ ଖାଲି ବାଡ଼ି ବୁଲେଇବାରେ ଲାଗିଛି । କେବେ ଆମର ନାରୀ ଏ ଦୁର୍ଦ୍ଦଶାରୁ ମୁକ୍ତିଲାଭ କରିବ, ଭଗବାନ ଜାଣନ୍ତି ।

ଏକାନ୍ନବର୍ତ୍ତୀ ପରିବାର ଓ ତାର ଆନୁଷଙ୍ଗିକ ସୁବିଧା ଅସୁବିଧା ଆମ ପାରିବାରିକ ଜୀବନର ଗୋଟିଏ ବଡ଼ ସମସ୍ୟା । ଏହି ସମସ୍ୟାର ସମାଧାନ ପାଇଁ ମୋତେ ବହୁତ ଚିନ୍ତା କରିବାକୁ ପଡ଼ୁଥିଲା । ଆମ ଘର ଭାଇଙ୍କ ଭିତରେ ମୁଁ ଅଧିକ ଶିକ୍ଷିତ ଏବଂ ଉପାର୍ଜନକ୍ଷମ ଥିବାରୁ ମୋର ଦାୟିତ୍ୱ ବଢ଼ିଯାଇଥିଲା । ୧୯୩୫ ରେ ବାପାଙ୍କ ମୃତ୍ୟୁ ପରଠାରୁ ପ୍ରତ୍ୟେକ ଛୁଟିରେ ମୁଁ ଗ୍ରାମକୁ ଯାଇ ଭାଇମାନଙ୍କ ସଙ୍ଗେ ପରାମର୍ଶ କରି ପରିବାରର ବିଭିନ୍ନ ସମସ୍ୟା ସମାଧାନ କରୁଥିଲି । ଭାଇନା ଏବଂ ମୋର ସାନ ଭାଇ ଦୁହେଁ ମୋତେ ଘରର ମୁରବିପରି ଜ୍ଞାନ କରି ପ୍ରତ୍ୟେକ ବିଷୟରେ ମୋର ପରାମର୍ଶ ଲୋଡ଼ୁଥିଲେ । ଆମ୍ଭମାନଙ୍କ ମଧ୍ୟରେ ସ୍ନେହସୌହାର୍ଦ୍ଦ୍ୟ ଅତୁଟ ରହିଥିଲା ।

ଦଶବର୍ଷ ପର୍ଯ୍ୟନ୍ତ ଏହିପରି ଚାଲିଲାପରେ ପରିବାର ଭିତରେ କେତେକ ଘଟଣାରେ ଭୁଲ ବୁଝାମଣା ଓ ମନୋମାଳିନ୍ୟ ଲକ୍ଷ୍ୟ କଲି । ମୁଁ ଘରେ ଉପସ୍ଥିତ ରହୁ ନ ଥିବାରୁ ସେଗୁଡ଼ିକୁ ସଙ୍ଗେ ସଙ୍ଗେ ସମାଧାନ କରିବା ମୋ ପକ୍ଷରେ ସମ୍ଭବ ହେଉ ନ ଥିଲା । ଘରେ ଲୋକସଂଖ୍ୟା ବଢ଼ିବା ହେତୁ ଖାଇବାପିଇବାରେ ମଧ୍ୟ ବିଶୃଙ୍ଖଳା ଘଟିଲା । ଜମିବାଡ଼ିର ଉପଯୁକ୍ତ ତତ୍ତ୍ୱ ନେଇହେଲା ନାହିଁ । ବୋହୂମାନଙ୍କୁ ଶାସନ କରି ନ ପାରିବାରୁ ବୋଉର ଅଶାନ୍ତି

ବଢ଼ିଲା । ଏ ସବୁ ଦେଖି ଆମେ ଦୁଇ ଭାଇ ମନଖୋଲି ଆଲୋଚନା କରି ପୃଥକ୍ ହୋଇଯିବାକୁ ସ୍ଥିର କଲୁ । ବୋଉକୁ ଏ କଥା କହିବାରୁ ସେ ପ୍ରଥମେ ଆମ ସଙ୍ଗେ ଏକମତ ହେଲାନାହିଁ । ସେ ମନେକଲା, ତା ଜୀବଦ୍ଦଶାରେ ପୁଅମାନେ ପୃଥକ୍ ହେବା ଯେପରି କି ଏକ ଘୋର ଅପରାଧ !

ତାକୁ ବୁଝାଇବାକୁ ଚେଷ୍ଟା କଲୁ । କହିଲୁ, "ବୋହୂମାନଙ୍କୁ ଶାସନ କରିବାକୁ ତୁ ଅସମର୍ଥ । କୌଣସି ଅପ୍ରୀତିକର ଘଟଣା ଘଟିଲେ ତୁ ନିଜେ କାନ୍ଦି କାନ୍ଦି ରହିବୁ ପଛକେ, କାହାକୁ କିଛି କହିପାରିବୁ ନାହିଁ । ତେଣୁ ଏ ବୃଦ୍ଧାବସ୍ଥାରେ ତୋର ଅଶାନ୍ତି ବଢ଼ୁଛି । ହାଣ୍ଡିଶାଳ ହୋଟେଲରେ ପରିଣତ ହେଲାଣି । ଆମ୍ଭେମାନେ କଳିତକରାଳ କରି ଭିନ୍ନେ ହେଉନାହୁଁ, ଘରକୁ ଶୃଙ୍ଖଳିତ କରିବା ଉଦ୍ଦେଶ୍ୟରେ ପରୀକ୍ଷା ସ୍ୱରୂପ ଏ ପନ୍ଥା ଗ୍ରହଣ କରୁଛୁ । ତୁ ଦୁଇମାସ ଦେଖ୍ । ଆମ ଭାଇମାନଙ୍କ ଭିତରେ ଏପର୍ଯ୍ୟନ୍ତ ଯେପରି ସଦ୍ଭାବ ରହି ଆସିଛି, ଭିନ୍ନେ ହେଲାପରେ ମଧ୍ୟ ତାହା ଠିକ୍ ସେହିପରି ରହିବ ବୋଲି ଆମର ବିଶ୍ୱାସ । ଯଦି ତା ନ ଦେଖୁ, ତେବେ ଦୁଇମାସପରେ ଆମ୍ଭେମାନେ ପୁଣି ପୂର୍ବ ଅବସ୍ଥାକୁ ଫେରିଯିବୁ ।"

ଆମର ସଦିଚ୍ଛା ଓ ବିଚାରବୁଦ୍ଧି ଉପରେ ବୋଉର ପୂର୍ଣ୍ଣ ବିଶ୍ୱାସ ଥିଲା, ତେଣୁ ସେ ବୁଝିଗଲା ଏବଂ ଆଉ ବାଧା ଦେଲାନାହିଁ । ଆମ୍ଭେମାନେ ଏପରି ସୁରୁଖୁରୁରେ ପୃଥକ୍ ହେଲୁ ଯେ ପ୍ରାୟ ଦଶବର୍ଷ ପର୍ଯ୍ୟନ୍ତ ଆମର ଗ୍ରାମବାସୀ ଆମେ ଭିନ୍ନେ ହୋଇଛୁ ବୋଲି ଜାଣିପାରିଲେ ନାହିଁ । ଏତେ ଦିନ ବିତି ଯାଇଥିଲେ ସୁଦ୍ଧା ଆମ ଭିତରେ ସେ ସଦ୍ଭାବ ସେହିପରି ଅକ୍ଷୁଣ୍ଣ ରହିଛି ।

ଦିନେ ତାରଯୋଗେ ମୋର ଶ୍ୱଶୁର ବଳରାମ ମିଶ୍ରଙ୍କର ଆକସ୍ମିକ ମୃତ୍ୟୁସମ୍ବାଦ ଦଶପଲ୍ଲାରୁ ପାଇଲି । ସେହିଠାରେ ଗୋଟିଏ ଦିନର ସାମାନ୍ୟ ଅସୁଖ ଭୋଗ କରି ସେ ପ୍ରାଣତ୍ୟାଗ କଲେ । ଦଶପଲ୍ଲାରେ ସେ 'ସେକେଣ୍ଡ ମାଷ୍ଟର' ନାମରେ ପରିଚିତ ଥିଲେ ଏବଂ ନିଜର ସରଳ ଅମାୟିକ ଗୁଣଦ୍ୱାରା ସେଠା ଲୋକଙ୍କର ସମ୍ମାନଭାଜନ ହୋଇଥିଲେ । ଦଶପଲ୍ଲାର ଐତିହାସିକ କନ୍ଧମେଳିର ସେ ଜଣେ ପ୍ରତ୍ୟକ୍ଷଦର୍ଶୀ । ତାଙ୍କଠାରୁ ମୁଁ କେତେଥର ସେ ମେଳିର ରୋମାଞ୍ଚକର ବିବରଣୀ ଶୁଣିଛି । ତାଙ୍କର ବହୁ ଛାତ୍ର ଏବେ ମଧ୍ୟ ଦଶପଲ୍ଲାର ପୁରପଲ୍ଲୀରେ ଥାଇ ତାଙ୍କୁ ସ୍ମରଣ କରନ୍ତି । ଯେଉଁ ମାଟିର ପାଣିପବନରେ ସେ ଦୀର୍ଘ ଜୀବନ କଟାଇ ଦେଇଥିଲେ, ତାହାର କୋଳରେ ତାଙ୍କ କର୍ମମୟ ଜୀବନର ଅବସାନ ଘଟିଲା । ମୋ ସ୍ତ୍ରୀ ସେତେବେଳେ ଗ୍ରାମରେ ରହୁଥିବାରୁ ମୋତେ ହିଁ ଏ ଦାରୁଣ ଦୁଃସମ୍ବାଦର ବାହକ ହେବାକୁ ପଡ଼ିଥିଲା ।

ମୁଁ ଭଞ୍ଜନଗରରେ ଥିବାବେଳେ ଦ୍ୱିତୀୟ ବିଶ୍ୱଯୁଦ୍ଧର ଅବସାନ ଘଟିବାରୁ ପୃଥିବୀବାସୀ ଆଶ୍ୱସ୍ତିର ନିଃଶ୍ୱାସ ମାରିଲେ । କିନ୍ତୁ ଭାରତର ଅର୍ଥନୀତି, ରାଜନୀତି ଓ ବାଣିଜ୍ୟବ୍ୟବସାୟ କ୍ଷେତ୍ରରେ ତାର ଯେଉଁ ଦୁରବସ୍ଥା ଦେଖାଦେଲା, ଦେଶ ଏପର୍ଯ୍ୟନ୍ତ

ତାର ପ୍ରଭାବରୁ ମୁକ୍ତିଲାଭ କରିନାହିଁ । ଲୁଗା, ଚିନି, ମିଶ୍ରି, କିରୋସିନି ପ୍ରଭୃତି କେତେକ ଅତ୍ୟାବଶ୍ୟକ ଦ୍ରବ୍ୟଉପରେ ସରକାର ତାଙ୍କ ନିୟନ୍ତ୍ରଣ ନୀତି ବା 'କଣ୍ଟ୍ରୋଲ' ପ୍ରଥମଥର ପାଇଁ ପ୍ରୟୋଗ କଲେ । ଏଥିପୂର୍ବରୁ ଆମ୍ଭେମାନେ କେବେହେଲେ ଆମ ଜୀବନରେ କଣ୍ଟ୍ରୋଲର କଣ୍ଟାବାଡ଼ରେ ଆବଦ୍ଧ ହୋଇ ନ ଥିଲୁ । ବଜାର ସମ୍ପୂର୍ଣ୍ଣ ଖୋଲା ଥିଲା । କିନ୍ତୁ ଏଇ ପ୍ରଥମଥର ପାଇଁ ଯୁଦ୍ଧୋତ୍ତର ବ୍ୟବସ୍ଥା ସ୍ୱରୂପ ଯେଉଁ ନିୟନ୍ତ୍ରଣ ଆଇନ ଜାରି ହେଲା, ତା ଫଳରେ ଆମ ଭାଷାରେ 'କଳାବଜାର', 'ଚୋରାବଜାର' 'କଳାପୋତେଇ' 'କୋଟା', ଆଦି କେତେଗୋଟି ନୂଆ ଶବ୍ଦ ବି ପ୍ରବେଶ କଲା, ସମାଜରେ ମୂଳରୁ ଚୂଳ ପର୍ଯ୍ୟନ୍ତ ଯେଉଁ ଦୁର୍ନୀତି ବ୍ୟାପିଗଲା, ତାହାକୁ ଦୂର କରିବା ଏପର୍ଯ୍ୟନ୍ତ ସମ୍ଭବ ହୋଇନାହିଁ ।

ସ୍କୁଲ କାର୍ଯ୍ୟରେ ଅଧିକାଂଶ ସମୟ ବ୍ୟାପୃତ ରହୁଥିବାରୁ ମୁଁ ବେଶି ଅବସର ପାଉ ନ ଥିଲି । ଯାହା କିଛି ସମୟ ମିଳୁଥିଲା, ଘରର ଶ୍ରେଷ୍ଠ ଅଗଣା ଭିତରେ ଏବଂ ବାହାରେ ବଗିଚା ତିଆରି କରି, କଖାରୁ ପା'ପୋଛ ପ୍ରଭୃତି ବୁଣି ଏବଂ ମାଟିର ପାତ୍ରମାନ ଗଢ଼ି ମନରେ ପରିତୃପ୍ତିର ଆଣୁଥିଲି । ଏଠାରେ ଥିଲାବେଳେ ମୋର 'ସଂଗ୍ରାମ ଓ ସାଧନା' ଦ୍ୱିତୀୟ ଭାଗର ପାଣ୍ଡୁଲିପି ପ୍ରସ୍ତୁତ କରିଥିଲି । 'ପାଠସୋପାନ' ଏବଂ 'ସାହିତ୍ୟସୋପାନ' ତୃତୀୟ ଓ ଚତୁର୍ଥ ଭାଗ ବହିଗୁଡ଼ିକ ମଧ୍ୟ ଏହିଠାରେ ଲେଖି ପ୍ରକାଶକଙ୍କୁ ଛାପିବାକୁ ଦେଇଥିଲି ।

## ଯାହାକୁ ରଖିବେ ଅନନ୍ତ !

ଦିନକର ଘଟଣା ଭାବିଲେ ଏବେ ସୁଦ୍ଧା ରୋମ ଟାଙ୍କୁରି ଉଠେ । ଦିନେ ଭିଙ୍ଗାରପୁରରୁ କୌଣସି କାର୍ଯ୍ୟ ଉପଲକ୍ଷରେ ଗ୍ରାମକୁ ଆସିଥାଏ । ମୋ ପିଲାମାନେ ସେତେବେଳେ ପଡ଼ା ଗାଁ ଇଚ୍ଛାପୁରଠାରେ ରହୁଥାନ୍ତି । ଖିଆପିଆ ସାରି ଶୋଇବାକୁ ଗଲି । ରାତି ପ୍ରାୟ ୯ଟା ହେବ । ବାଟ ଚାଲି ଚାଲି ଆସିଥିବାରୁ କ୍ଳାନ୍ତ ଲାଗୁଥାଏ । ଗୋଟିଏ ଖଟ ଉପରେ ଏକା ଏକା ଶୋଇଗଲି । ମଶାରି ଟଣା ହୋଇ ନ ଥାଏ । ଛାଇନିଦ ଲାଗିଛି କି ନାହିଁ, ଚାଳରୁ ଗୁଣ୍ଡ ଝଡ଼ିଲାପରି ଲାଗିଲା । ମୋ ଉପରେ ମାଟିଗୁଣ୍ଡ ପଡ଼ିବାରୁ ମଶାରି ଟାଙ୍ଗିଦେବାକୁ ପିଲାମାନଙ୍କୁ କହିଲି । ମଶାରି ଟଣା ହେଲାପରେ ନିଘୋଡ଼ ନିଦରେ ଶୋଇପଡ଼ିଲି ।

ଭୋରକୁ ଯେତେବେଳେ ନିଦ ଭାଙ୍ଗିଲା, ଉପରକୁ ଚାହିଁଦେଇ ଚମକିପଡ଼ିଲି । ଦେଖିଲି, ମଶାରି ଉପର କନାଟି ତଳକୁ ଝୁଲିପଡ଼ିଛି ଏବଂ ତା ଉପରେ ଗୋଟିଏ ସାପ ଲହ ଲହ ହେଉଛି ! ଭାଗ୍ୟକୁ ମଶାରିଟି ଦୃଢ଼ଭାବରେ ବନ୍ଧା ହୋଇଥିଲା, ନଚେତ୍ ସାପର ଓଜନକୁ ସମ୍ଭାଳି ପାରି ନ ଥାନ୍ତା । ସାପଟି ଗତ ରାତିରେ ମୂଷା ଧରିବାକୁ ବୋଧହୁଏ ଚାଳରେ ପଶିଥିଲା ଏବଂ ତାହାରି ଫଳରେ ମୋ ଉପରେ ଉଇମାଟି ପ୍ରଭୃତି ଝଡ଼ୁଥିଲା । ମଶାରି ଉପରେ କେତେବେଳେ ସେ ଖସିପଡ଼ିଛି ମୁଁ

ଜାଣି ନାହିଁ । ମଶାରି କନାଟି ତଳକୁ ଝୁଲିପଡ଼ିଥିବାରୁ ସେ ତାରି ଭିତରେ ଅଟକି ରହିଯାଇଛି, ବହୁ ଚେଷ୍ଟା କରି ମଧ୍ୟ ଉଠିପାରୁନାହିଁ । ଉଠିବାକୁ ଚେଷ୍ଟା କଲାମାତ୍ରେ ପୁଣି ଖସି ପଡ଼ୁଛି । ପାଟିତୁଣ୍ଡ ନ କରି ଗୋଟିଏ ପା.ଖ ମଶାରି କନାକୁ ଆସ୍ତେ ଟେକି ଦେଇ ଖଟରୁ ଓହ୍ଲାଇ ଆସିଲି ଏବଂ ଏକା କୁଦାକେ ଅଗଣାରେ ହାଜର ହେଲି । ଲୋକମାନେ ଜମାହୋଇ ସାପକୁ ମାରି ପକାଇଲେ । ଚହ୍ନିବା ଲୋକେ କହିଲେ ସେଇଟା ବୋଡ଼ାସାପ ।

## ଶିକ୍ଷକର ଜୀବନର ଶେଷ ଅଧ୍ୟାୟ

ଭିଙ୍ଗାରପୁର ହାଇସ୍କୁଲରେ ମୋ ରହିବାର ତିନି ବର୍ଷ ପୂରିଗଲା । ୧୯୪୨ ମସିହା ନଭେମ୍ବର ୨୩ ତାରିଖରେ ସେଠାରେ ଯୋଗ ଦେଇଥିଲି । ବର୍ତ୍ତମାନ ୧୯୪୫ ପୂରି ୧୯୪୬ ଚାଲିଲା । ଏହି ତିନି ବର୍ଷ ଭିତରେ ଯଥାସାଧ୍ୟ ଚେଷ୍ଟା କରି ସ୍କୁଲର ଛାତ୍ରସଂଖ୍ୟା, ଆୟ ଏବଂ ସୁନାମ ବୃଦ୍ଧି କରାଇ ତାହାକୁ ଏକ ବର୍ଦ୍ଧିଷ୍ଣୁ ଅନୁଷ୍ଠାନରେ ପରିଣତ କଲି ଏବଂ ତାର ବିନିମୟରେ ଛାତ୍ର, ଅଭିଭାବକ ଓ ସ୍ଥାନୀୟ ଚୌଧୁରୀ ପରିବାରଠାରୁ ଶ୍ରଦ୍ଧା ଆଦର ଲାଭ କରି ନିଜକୁ ଧନ୍ୟ ମନେକଲି । ମୋ ଘର ସେଠାରୁ ଅଳ୍ପ ଦୂର ଥିବାରୁ ଆତ୍ମୀୟ ସ୍ୱଜନ ଓ ଗ୍ରାମବାସୀଙ୍କ ସଙ୍ଗେ ସହଜରେ ଏବଂ ଅଳ୍ପ ସମୟ ମଧ୍ୟରେ ସମ୍ପର୍କ ରଖି ପାରୁଥିଲି । ତେଣୁ କେବଳ ଆର୍ଥିକ ଆୟକୁ ଛାଡ଼ି ଦେଲେ ଅନ୍ୟାନ୍ୟ ସମସ୍ତ ଦିଗରେ ମୋର ସେଠାରେ ସୁବିଧା ହେଉଥିଲା ଏବଂ ମୁଁ ବେଶ ଶାନ୍ତିରେ ଥିଲି । ପ୍ରଥମରୁ ଅବଶ୍ୟ ସେଠାରେ ବେଶିଦିନ ରହିବି ନାହିଁ ବୋଲି ସ୍ଥିର କରିଥିଲି, କିନ୍ତୁ କିଛିଦିନ ରହିଲା ପରେ ସେ ଭାବ ମନରୁ ଉଭେଇ ଯାଇଥିଲା ।

୧୯୪୬ ମସିହାର ପ୍ରାରମ୍ଭରେ ମୋର ପ୍ରକାଶକ ଶ୍ରୀ ଉମାଚରଣ ମହାନ୍ତିଙ୍କ-ଠାରୁ ନିମ୍ନ ମର୍ମରେ ଖଣ୍ଡେ ଚିଠି ପାଇଲି—"ମୁଁ କଟକରେ ଗୋଟିଏ ପ୍ରେସ ଆରମ୍ଭ କରୁଛି । ତୁମର ଶିକ୍ଷକତା କରିବା ମନୋବୃତ୍ତି ନାହିଁ ବୋଲି କହୁଥିଲ । ଯଦି ଆସିବ, ତେବେ ସାଙ୍ଗ ହୋଇ ପ୍ରେସ ବ୍ୟବସାୟ କରିବା । ମୋ କଥାରେ ଶିକ୍ଷକତା ଛାଡ଼ି ଆସିବା ପାଇଁ ମୁଁ ଅବଶ୍ୟ କହୁନାହିଁ । ଭଲ ଭାବରେ ଭାବିଚିନ୍ତି ତୁମେ ଯାହା ଠିକ୍ କରିବ ।"

ଏ ଚିଠି ଖଣ୍ଡିକ ମୋ ଚିତ୍ତରଙ୍ଗ ମନରେ ପୁଣି ସୃଷ୍ଟି କଲା ଆଲୋଡ଼ନ । ଚାଳିଶ ବର୍ଷ ବୟସ । ଆଖି ଆଗରେ ଗୁଡ଼ାଏ ଝିଅ, ଗୋଟିଏ ପୁଅ । ଶିକ୍ଷକତାରେ ଯଥେଷ୍ଟ ସୁନାମ ଅର୍ଜନ କରିଛି । ନିରଙ୍କୁଶ ଜୀବନ ସୁରୁଖୁରୁରେ କଟିଯାଉଛି । ସ୍ଥାନୀୟ ଲୋକଙ୍କର ଅଭିଯୋଗ ନାହିଁ କି ଉପରିସ୍ଥ କର୍ତ୍ତୃପକ୍ଷଙ୍କର ତାଡ଼ନା ନାହିଁ । ଏଇ ଅବସ୍ଥାରେ ପୁଣି ଏକ ନୂତନ କ୍ଷେତ୍ରକୁ ଯିବି । ଯେଉଁ ବିଷୟରେ କୌଣସି ଅଭିଜ୍ଞତା ନାହିଁ ତାକୁ ଧରି ଭାଗ୍ୟ ପରୀକ୍ଷା କରିବି । ପୁଣି ଭାବୁଥାଏ, ଥରେ ଛାଡ଼ିଦେଲେ ଆଉ ହୁଏତ

ଏ ସୁଯୋଗ ମିଳି ନ ପାରେ । ଆମେରିକାର ଯୋଡ଼ପତି ହେନ୍‌ରି ଫୋର୍ଡଙ୍କର ସେ ଉକ୍ତିଟି ମନେ ପଡ଼ିଲା—'Opportunity is wealth' ସୁଯୋଗ ହିଁ ସମ୍ପଦ ।

କୌଣସି ବନ୍ଧୁଙ୍କ ସଙ୍ଗେ ଏ ବିଷୟରେ ପରାମର୍ଶ କରିବା ଆବଶ୍ୟକ ମନେ କଲି ନାହିଁ । ଏ ଏକ ଗୁରୁତ୍ୱପୂର୍ଣ୍ଣ ନିଷ୍ପତ୍ତି । ମୋ ଜୀବନର ଭବିଷ୍ୟତ ଏହାରି ଉପରେ ନିର୍ଭର କରୁଛି । ମୋତେ ହିଁ ମୋର କର୍ମପନ୍ଥା ସ୍ଥିର କରିବାକୁ ହେବ । ଧ୍ରୁବକୁ ପରିତ୍ୟାଗ କରି ଅଧ୍ରୁବକୁ ଅନୁସରଣ କଲେ ମନୁଷ୍ୟ ଦୁଇ ପାତ୍ତିରୁ ଯାଏ ବୋଲି ନୀତିବଚନ କହୁଛି, କିନ୍ତୁ ବ୍ୟବସାୟ କ୍ଷେତ୍ରକୁ ଯାଉଥିବା ବ୍ୟକ୍ତି ପକ୍ଷରେ ଏ ନୀତି ବୋଧହୁଏ ଗ୍ରହଣୀୟ ନୁହେଁ । ତା ଛଡ଼ା ମୋର ପିଲାମାନଙ୍କୁ ମଣିଷ କରିବା ପାଇଁ ଅର୍ଥ ଦରକାର । ପ୍ରାଇଭେଟ ସ୍କୁଲରେ ଶିକ୍ଷକତା କରି ମୁଁ ତାହା କେବେ ହେଲେ ପାଇ ପାରିବି ନାହିଁ । ଅନ୍ୟତଃ ମୋର ପରିଶ୍ରମର ମୂଲ୍ୟଟା ମିଳନ୍ତା କି ? ତା ବି ତ ମିଳିବାର ଆଶା ନାହିଁ ।

ସୁତରାଂ ପୁଣି ସଂଗ୍ରାମ କରିବାକୁ ହେବ, ଜୀବନ-ସଂଗ୍ରାମ, କଠୋର ଜୀବନ-ସଂଗ୍ରାମ । ଗ୍ଳେଟ ହେଉ, ବଡ଼ ହେଉ, ଜୀବନଟା ତ ସଂଗ୍ରାମର ସମଷ୍ଟି । ପାରସ୍ୟର ବାଦଶାହଙ୍କୁ ତାଙ୍କର ବିଜ୍ଞ ଐତିହାସିକ ଏଇକଥା ହିଁ କହିଥିଲେ ।

ବାଦଶାହ ମାନବଜାତିର ଇତିହାସ ଜାଣିବାକୁ ଚାହିଁବାରୁ ତାଙ୍କର ମନ୍ତ୍ରୀ ରାଜ୍ୟରେ ଏ କଥା ଘୋଷଣା କରିଦେଲେ । ବହୁ ଲେଖକ ଓ ଐତିହାସିକ ପୃଥିବୀର ଗ୍ରନ୍ଥ-ସମୁଦ୍ର ମନ୍ଥନ କରି ଇତିହାସ ପ୍ରଣୟନ କରିବାରେ ଲାଗିପଡ଼ିଲେ । ବାଦଶାହଙ୍କ ପାଖକୁ ଅନେକ ଇତିହାସ ଆସିଲା, ମାତ୍ର ସେ ସନ୍ତୁଷ୍ଟ ହେଲେ ନାହିଁ । ଦିନପରେ ଦିନ ଅତୀତ ହେଲା । ପରିଶେଷରେ ଦିନେ ବାର୍ତ୍ତାବହ ଆଣି ଏକ ସୁଖର ସମ୍ବାଦ ଦେଲା ଯେ ରାଜ୍ୟର ଶ୍ରେଷ୍ଠ ଐତିହାସିକ ତାଙ୍କର ପୂର୍ଣ୍ଣାଙ୍ଗ ଗ୍ରନ୍ଥ ସହ ରାଜଦ୍ୱାରରେ ଉପସ୍ଥିତ ହୋଇଅଛନ୍ତି । ତାଙ୍କ ପ୍ରଣୀତ ପ୍ରକାଣ୍ଡ ଇତିହାସର ପାଣ୍ଡୁଲିପି ଅନେକଗୁଡ଼ିଏ ଗାଡ଼ିରେ ଲଦାହୋଇ ଆସିଛି । କିନ୍ତୁ ହାୟ ! ରାଜା ଯେ ମରଣର ଦ୍ୱାରଦେଶରେ ! ଏ ବିରାଟ ଗ୍ରନ୍ଥକୁ ପଢ଼ିବେ କେତେବେଳେ ? ହତାଶାର ଦୀର୍ଘଶ୍ୱାସ ଛାଡ଼ି ବାଦଶାହ କହିଲେ, "କେହି କଣ ମୋତେ ମାନବଜାତିର ଇତିହାସ ଶୁଣାଇ ପାରିବେ ନାହିଁ ?" ଜଣେ ପଳିତକେଶ ବୃଦ୍ଧ ଆଗେଇ ଆସିଲେ ରାଜାଙ୍କର ଶେଷ ଇଚ୍ଛା ପୂରଣ କରିବାକୁ । ମନ୍ତ୍ରୀ ଅନୁରୋଧ କଲେ, " ଶୀଘ୍ର କହନ୍ତୁ, ରାଜାଙ୍କର ମୃତ୍ୟୁ ଆସନ୍ନ ।" ବୃଦ୍ଧ କହିଲେ, " ମନୁଷ୍ୟମାନେ ଜନ୍ମ ହୋଇଛନ୍ତି, ସଂଗ୍ରାମ କରିଛନ୍ତି ଏବଂ ମରିଛନ୍ତି । ଏହାହିଁ ମାନବଜାତିର ଯୁଗ ଯୁଗର ଇତିହାସ । "

ସେହି ସଂଗ୍ରାମ ହେଉଛି ମୋର ଜୀବନର ସାଥୀ । ଏହି ଜୀବନଯୁଦ୍ଧରେ ଜୟ ପରାଜୟ ମଧ୍ୟ ଲାଗିରହିଛି କିନ୍ତୁ ବିଫଳତାର ଆଶଙ୍କା ମୋ ଆତ୍ମପ୍ରତ୍ୟୟକୁ କେବେ ପଙ୍ଗୁ କରିପାରିନାହିଁ । ଉମାଚରଣବାବୁଙ୍କ ଚିଠିଟି ପାଇ ନୂତନ ସଂଗ୍ରାମ

ପାଇଁ ପ୍ରସ୍ତୁତ ହୋଇଗଲି ଏବଂ ଖଣ୍ଡିଏ ଇସ୍ତଫାପତ୍ର ଲେଖି ସେକ୍ରେଟେରୀଙ୍କ ନିକଟକୁ ପଠାଇଦେଲି ।

ମୁଁ ଜାଣିଥିଲି, ମୋ ଇସ୍ତଫାପତ୍ରଟି ପାଇଲାପରେ ସେକ୍ରେଟେରୀ ଗଙ୍ଗାଧରବାବୁ ବିଶେଷ ବିଚଳିତ ହୋଇପଡ଼ିବେ । ସତକୁ ସତ, ସେହିଦିନ ୪ଟା ବେଳେ ସେ ସ୍କୁଲକୁ ଆସି ମୋତେ ହସି ହସି କହିଲେ, "ଆପଣ ଅଜି କଣ ଗୋଟାଏ ଦରଖାସ୍ତ ପଠାଇଦେଇଛନ୍ତି ! ଆପଣଙ୍କୁ ଏଇଲାଗେ କିଏ ଛାଡ଼ୁଛି ?" ମୁଁ କହିଲି "ମୁଁ ଏ ଚାକିରି ଗ୍ରହଣ କଲାବେଳେ ଆପଣଙ୍କୁ ପ୍ରଥମେ ଯାହା କହିଥିଲି କଣ ଭୁଲିଗଲେଣି ? ମୁଁ ପରା କହିଥିଲି, ମୁଁ ବେଶିଦିନ ରହିପାରିବି ନାହିଁ ବୋଲି ।"

ସେ ମୋ ସଙ୍ଗରେ ହସି ହସି କଥା କହୁଥିଲେ ସୁଦ୍ଧା ସେ ଶୁଷ୍କ ବିବର୍ଣ୍ଣ ହସରୁ କେବଳ ତାଙ୍କ ଅନ୍ତରର ବ୍ୟଥା ପ୍ରସ୍ଫୁଟିତ ହୋଇ ଉଠୁଥିଲା । ମୋ ଉତ୍ତର ଶୁଣି ସେ କହିଲେ, "ହଁ, ମନେ ଅଛି ଯେ, ବର୍ତ୍ତମାନ ସେ କଥା ହେବ ନାହିଁ, ଆଉ କିଛି ଦିନ ଯାଉ ।"

ଅତି ନିଷ୍ଠୁର ଭାବରେ ତାଙ୍କ ଅନୁରୋଧକୁ ପ୍ରତ୍ୟାଖ୍ୟାନ କରି କହିଲି "ସ୍କୁଲକୁ ଯଥାସମ୍ଭବ ସଜାଡ଼ି ଦେଇଛି । ଏଣିକି ତା ବାଟ ଧରି ସେ ଚାଲିବ । ସହକାରୀ ପ୍ରଧାନ ଶିକ୍ଷକ ଚନ୍ଦ୍ରାମଣିବାବୁ ମୋ ପରେ ସ୍କୁଲର ଦାୟିତ୍ୱ ନେବାକୁ ଉପଯୁକ୍ତ ଅଛନ୍ତି । ମୁଁ ଚାଲିଗଲେ ସୁଦ୍ଧା ଆବଶ୍ୟକ ପଡ଼ିଲେ ପରାମର୍ଶ ଦେଉଥିବି । କିନ୍ତୁ ଯାହା ନିଷ୍ପତ୍ତି କରିଛି, ତାହା ବଦଳାଇ ପାରିବି ନାହିଁ ।"

ମୋ ସିଦ୍ଧାନ୍ତରେ ମୁଁ ଅଟଳ ରହିଥିବାର ଦେଖି ଗଙ୍ଗାଧରବାବୁ ନିରସ୍ତ ହେଲେ । ତାଙ୍କ ମୁଖର ବିମର୍ଷତା ମୋ ଅନ୍ତରରେ ଉତ୍ତୁଙ୍ଗ ଝଞ୍ଜାବାତ ସୃଷ୍ଟି କରୁଥିଲା ।

ଶିକ୍ଷାବିତ୍‌ମାନେ କହନ୍ତି, ପ୍ରତ୍ୟେକ ଶିକ୍ଷାନୁଷ୍ଠାନ ଗୋଟିଏ ଗୋଟିଏ ପରିବାର । ବିଦାୟ ମୁହୂର୍ତ୍ତରେ ଏହାର ସତ୍ୟତା ଅଧିକ ଉପଲବ୍ଧି କରିଥିଲି । ପୁଣି ଥରେ ମୋତେ ସମସ୍ତ ମାୟାମମତା ଛିନ୍ନ କରି ପ୍ରିୟ ଛାତ୍ର ଓ ସହକର୍ମୀମାନଙ୍କ ପାଖରୁ ବିଦାୟ ନେବାକୁ ହେଲା । ୧୯୪୭ ଅପ୍ରେଲ ୧୦ ତାରିଖରେ ସହକାରୀ ଶିକ୍ଷକଙ୍କ ଉପରେ ସ୍କୁଲର ଭାର ଅର୍ପଣ କରି ଭିଙ୍ଗାରପୁର ପରିତ୍ୟାଗ କଲି ।

* * *

## ପଥ-ପରିବର୍ତ୍ତନ—

ସ୍ୱାଧୀନ ବୃତ୍ତି :
ପାରିଜାତ ପ୍ରେସ
'ଝଙ୍କାର'

ଏମନ୍ତେ ବହୁ ଦେଶେ  ବୁଲି ଛୁ ଅବଶେଷେ
ମାର୍ଗରେ ଭେଟିଲୁ ଜୁଆର,
ବିପୁଳ ପୁଲକରେ  ପ୍ରିୟପାଇ ଅନ୍ତରେ
ଦେଖିଲୁ ଆତ୍ମା କି ଉଦାର !
ଜୁଆର କ୍ରମେ ବାହୁଡ଼ିଲା
ତୋ ତନୁ କୃଶତା ଭଜିଲା
ପୁଣି ଜୁଆର ଉଠା  ଭାଗ୍ୟର ହଠହଣା
ଜୀବନେ ତୋହର ଘଟିଲା ।

[ 'ନଦୀପ୍ରତି'—ଗୀତ ]

ସ୍କୁଲମାନଙ୍କ ଗ୍ରାମରେ ଗୁଡ଼ କଟକ ଆସିଲି । ଉମାଚରଣବାବୁ ତାଙ୍କ ତେଲେଙ୍ଗାବଜାର ବାସଭବନର ଗୋଟିଏ ଅଂଶରେ ପୁରୁଣା ହ୍ୟାଣ୍ଡ୍ ପ୍ରେସଟିଏ କିଣି ତାକୁ ଚାଲୁ କରୁଥାନ୍ତି । ମୋର ବାଲ୍ୟବନ୍ଧୁ ଶ୍ରୀ ଚନ୍ଦ୍ରମଣି ମହାପାତ୍ର ଓ ଶ୍ରୀ ନଟବର ମହାପାତ୍ରଙ୍କ ସଙ୍ଗେ ନିକଟବର୍ତ୍ତୀ ଗୋଟିଏ ମେସ୍‌ରେ ରହି ମୁଁ ଉମାଚରଣବାବୁଙ୍କ ପ୍ରେସରେ ଯୋଗ ଦେଲି ।

ପ୍ରତିଦିନ ତାଙ୍କ ପ୍ରେସକୁ ଯାଏ ଏବଂ ବିଭିନ୍ନ ବିଭାଗର କାର୍ଯ୍ୟ ଦେଖେ । ଜଣେ ବୃଦ୍ଧ ଅଭିଜ୍ଞ ମ୍ୟାନେଜର ସେ ପ୍ରେସ ପରିଚାଳନା କରୁଥାନ୍ତି । ମୋତେ ସବୁ ନୂଆ ନୂଆ ଲାଗୁଥାଏ । ପୁରୁଣାକାଳିଆ ହ୍ୟାଣ୍ଡପ୍ରେସ, ପୁଣି ନୂଆ ଆରମ୍ଭ କରାଯାଇଥିବାରୁ କାର୍ଯ୍ୟ ଶୃଙ୍ଖଳିତ ହୋଇ ନ ଥାଏ । ଏପରି ଅବସ୍ଥାରେ ପ୍ରେସ ବିଷୟରେ ଅନଭିଜ୍ଞ ମୋ ପରି ଜଣେ ଲୋକ ସେଠାରେ କି କାର୍ଯ୍ୟ କରିବ ? ମୋତେ ଅଡୁଆ ଅଡୁଆ ଲାଗିଲା । କେତେ ଦିନରେ ଏ ବିଦ୍ୟା ଶିଖିବି ? ଶିଖାଇବ କିଏ ? ଶିଖି ସାରିଲା ପରେ ମୋର ସ୍ଥାନ ଏଠାରେ କଣ ହେବ ? ଇତ୍ୟାଦି ପ୍ରଶ୍ନ ମୋ ମନକୁ ଆନ୍ଦୋଳିତ କଲା । ଉମାଚରଣବାବୁଙ୍କ ସଙ୍ଗେ ଆଲୋଚନା କରି ମଧ୍ୟ ସନ୍ତୁଷ୍ଟ ହୋଇପାରିଲି ନାହିଁ । ମନେ ହେଲା, ମୁଁ ଯେପରି କୁହୁଡ଼ି ପହଁରୁଛି ।

## ମହୁରଗରୁ ଆସି କାନ୍ତାରରେ !

ଏହିପରି ଅନିଷ୍ଟସ୍ଥତା ମଧ୍ୟରେ ଦଶ ପନ୍ଦର ଦିନ କଟାଇଲା ପରେ ଦିନେ ଉମାଚରଣବାବୁଙ୍କୁ ସ୍ପଷ୍ଟ ମନା କରିଦେଲି ଯେ ତାଙ୍କ ସଙ୍ଗେ ମିଶି ବ୍ୟବସାୟ କରିବା ମୋ ପକ୍ଷରେ ଆଦୌ ସୁବିଧାଜନକ ହେବ ନାହିଁ ।

ଉମାଚରଣବାବୁ ମୋର ଏ ଅପ୍ରତ୍ୟାଶିତ ନିଷ୍ପତ୍ତିର କାରଣ ଜାଣିବାକୁ ଚାହିଁଲେ । କହିଲି, "ମୋର ନିଜର ମୂଳଧନ ନାହିଁ କି ଅଭିଜ୍ଞତା ନାହିଁ । ଏପରି ସ୍ଥଳେ ମୁଁ ଆପଣଙ୍କ ସାଥିରେ ମିଶି କି ବ୍ୟବସାୟ କରିବି ? ଯଦି ମୋ ଟଙ୍କାରେ ବ୍ୟବସାୟ କରୁ କରୁ କ୍ଷତି ହୋଇଯାନ୍ତା, ତେବେ କର୍ମ ଆଦର ରହନ୍ତା, କିନ୍ତୁ ଆପଣଙ୍କ ଟଙ୍କାରେ କ୍ଷତି ହେଲେ ମୋତେ ଘରେ ନିଦ ହେବ ନାହିଁ ।"

"ତୁମେ ତେବେ ବ୍ୟବସାୟକୁ ଡରୁଛ ?"

"ନା, ବ୍ୟବସାୟକୁ ଡରୁନାହିଁ ଯେ, ଆପଣଙ୍କ ଧନରେ ବ୍ୟବସାୟ କରିବାକୁ ଡରୁଛି । ଏଇ ଅର୍ଥରୁ ନାନା ଅନର୍ଥ ଜାତ ହୋଇ ଶେଷରେ ଆମ ଭିତରେ ଥିବା ବନ୍ଧୁତ୍ୱନର ବନ୍ଧୁତାଟିକ ନଷ୍ଟ ହୋଇଯିବ ।"

"ସେପରି ହେବାର ସମ୍ଭାବନା ନାହିଁ"—ସେ କହିଲେ ।

ମୁଁ ତାଙ୍କ କଥାକୁ ଅସ୍ୱୀକାର କରି କେତେଗୋଟି ଦୃଷ୍ଟାନ୍ତ ଦେଖାଇଲି । କହିଲି, "ଏକା ମାଆର ପିଲାଙ୍କ ଭିତରେ ଏଇ ଅର୍ଥ ଯେତେ ମନୋମାଳିନ୍ୟ ଘଟୁଛି, ଆମ ଭିତରେ ଘଟିବା ବିଚିତ୍ର କଣ ? ଜାଣୁ ଜାଣୁ କାହୁଅରେ ପଶି ଲେଙ୍କହସା ହେବା କାହିଁକି ? ବରଂ ଏହିପରି ବନ୍ଧୁତା ସବୁଦିନେ ଥାଉ ।"

ମୋର ଦୃଢ଼ ମନୋଭାବ ଦେଖି ସେ ପଚାରିଲେ, "ତେବେ ତୁମେ ତ ଚାକିରି ଛାଡ଼ିଦେଇ ଆସିଲ, ବର୍ତ୍ତମାନ କଅଣ କରିବ ?"

"ଇଚ୍ଛା କଲେ ସଙ୍ଗେ ସଙ୍ଗେ ପୂର୍ବ ଚାକିରିକୁ ଫେରିଯାଇ ପାରିବି, ଅନ୍ୟଠାରେ ବି ରହିପାରିବି; କିନ୍ତୁ ଆଉ ଚାକିରିକୁ ଫେରିବା ଇଚ୍ଛା ନାହିଁ ।"

ଏହା କହିଲାବେଳେ ମୁଁ ଶିକ୍ଷକ ଜୀବନର ଅନୁଭୂତି ଏବଂ ଛାତ୍ରମାନଙ୍କୁ ଦେଇଥିବା ଉପଦେଶସବୁ ମନେ ପକାଉଥାଏ । ମୁଁ ଯଦି କିଛି କରି ନ ପାରି ପୁଣି ସେଇ ଚାକିରିକୁ ଶେଷରେ ଆଶ୍ରୟ କରେ, ମୋର ଛାତ୍ରମାନେ ମୋତେ କଣ କହିବେ ? ମୁଁ ସେମାନଙ୍କୁ ଏତେଦିନ ଧରି ଯାହା କହି ଆସିଛି, ଆତ୍ମନିର୍ଭରଶୀଳ ହେବା ପାଇଁ ଯେଉଁ ଉଦ୍‌ବୋଧନ ଦେଇ ଆସିଛି, ତାର ମୂଲ୍ୟ କଣ ରହିବ ?

"କଣ କରିବ ତେବେ ?" ଉମାଚରଣବାବୁ ପୁଣି ପଚାରିଲେ ।

ମୁଁ କହିଲି, "ଏଇ ପ୍ରେସ ବ୍ୟବସାୟ କରିବି, ଭାବିଛି ।"

"ପ୍ରେସ୍ କରିବାକୁ ତୁମ ପାଖରେ ଟଙ୍କା ଅଛି ତ ?"

"ଆପଣଙ୍କ ପାଖରେ ଯେତିକି ଅଛି, ସେତିକି ।"

"ସେଥିରେ କି ପ୍ରେସ୍ ହେବ ? ଗୋଟିଏ ସେକେଣ୍ଡହାଣ୍ଡ ମେସିନ୍‌ର ଦାମ୍ ତ ବର୍ତ୍ତମାନ ବାର ତେର ହଜାର ଟଙ୍କା ପଡ଼ୁଛି । ତୁମେ ତିନି ହଜାର ଟଙ୍କାରେ କି ପ୍ରେସ୍ କରିବ ?"

ମୁଁ କହିଲି, ଆପଣ ଯେପରି ବଡ଼ ଆକାରରେ ବ୍ୟବସାୟ କରିଛନ୍ତି ଏବଂ ବେଶି ଲାଭର ଆଶା ରଖିଛନ୍ତି, ମୋର ସେ ଲକ୍ଷ୍ୟ ନାହିଁ। ହାଇସ୍କୁଲର ହେଡ୍‌ମାଷ୍ଟର ଥାଇ ମାସକୁ ୧୨୦ ଟଙ୍କା ପାଉଥିଲି, ବର୍ତ୍ତମାନ ସ୍ୱାଧୀନ ବୃତ୍ତି ଅବଲମ୍ବନ କରି ସେତିକି ରୋଜଗାର କରିପାରିଲେ ସନ୍ତୁଷ୍ଟ ହେବି। ମୋର ବିଶ୍ୱାସ, ସେତିକି ଅନ୍ତତଃ କରିପାରିବି।"

ମୂଳଧନ ତିନିହଜାର ଟଙ୍କା, ଉମାଚରଣବାବୁଙ୍କ ପ୍ରେସ୍‌ରେ ପନ୍ଦର ଦିନର ତାଲିମ, କଟକରେ ଖଣ୍ଡିଏ ଘର ଏବଂ ଦୃଢ଼ ଆତ୍ମପ୍ରତ୍ୟୟ—ଏଇ ହେଲା ମୋର ନୂତନ ଜୀବନର ପାଥେୟ। ସର୍ବୋପରି ମଙ୍ଗଳମୟଙ୍କ ଆଶୀର୍ବାଦ ଉପରେ ଭରସା ଏବଂ ତାଙ୍କର ଇଙ୍ଗିତ ଉପରେ ବିଶ୍ୱାସ :

ତ୍ୱୟା ହୃଷିକେଶ ହୃଦିସ୍ଥିତେନ
ଯଥା ନିଯୁକ୍ତୋଽସ୍ମି ତଥା କରୋମି।

ଭଙ୍ଗାରପୁର ଛାଡ଼ିବାର ପ୍ରାୟ ତିନିମାସ ପରେ ପିଲାମାନଙ୍କୁ କଟକ ନେଇ ଆସି ତେଲେଙ୍ଗାବଜାରରେ ତୋଳିଥିବା ମୋର ନୂଆ ଘରେ ରଖାଇଲି। ଏଥି ପୂର୍ବରୁ କେବେ କଟକ ଆସିଲେ ଆଶ୍ରୟ ଟିକିଏ ପାଇବା ପାଇଁ ଆମେ ଯେଉଁ ହଟହଟା ହେଉଥିଲୁ, ଏତେଦିନକେ ତାର ଅବସାନ ଘଟିଲା ଜାଣି ଆଶ୍ୱସ୍ତ ହେଲୁ।

ପ୍ରାୟ ଏକ ବର୍ଷ ପର୍ଯ୍ୟନ୍ତ ମୁଁ ପ୍ରେସ୍ ଆରମ୍ଭ କରିପାରିଲି ନାହିଁ। ଗୋଟିଏ ପୁରୁଣା ପ୍ରେସ ପାଇଥିଲେ ତାକୁ ଚାଲୁ କରିବାକୁ ଏତେ ସମୟ ଲାଗି ନ ଥାନ୍ତା, ମାତ୍ର ସମ୍ପୂର୍ଣ୍ଣ ନୂଆ ଛାପାଖାନାଟିଏ କରିବାକୁ ହେଲେ ହଜାର ଜିନିଷ ସଂଗ୍ରହ କରିବା ଦରକାର। ମୁଁ ପୁଣି ଏ କ୍ଷେତ୍ରରେ ନୂଆ। କେଉଁଠି କି ଜିନିଷ ମିଳେ ଜାଣେ ନାହିଁ। ହାତରେ ଯାହା କିଛି ସମ୍ବଳ ଅଛି, ତାକୁ ଜଗି ରଖି ଖର୍ଚ୍ଚ କରିବାକୁ ହେବ। ଏଣେ ବେଶି ବିଳମ୍ବ ହେଲେ ମନରେ ଅବସାଦ ଆସୁଛି। ମୋର କେତେକ ହିତକାମୀ ବନ୍ଧୁ ଆଶ୍ଚର୍ଯ୍ୟ ହୋଇ ମୋର କାର୍ଯ୍ୟକଳାପକୁ ଲକ୍ଷ୍ୟ କରୁଥାନ୍ତି। ସେମାନଙ୍କ ମତରେ, ଏ ବୟସରେ ଏପରି ଦୁଃସାହସ କରିବା ଉଚିତ ନ ଥିଲା।

ମୋ ପଥରେ ସବୁଠାରୁ ବଡ଼ ପ୍ରତିବନ୍ଧକ ହେଲା ସରକାରଙ୍କ ତତ୍କାଳୀନ କାଗଜ ନିୟନ୍ତ୍ରଣ ଆଦେଶ। ଯୁଦ୍ଧ ପରେ କାଗଜର ଘୋର ଅଭାବ ଘଟିବାରୁ ସରକାର ଏପରି ନୀତି ଗ୍ରହଣ କରିଥାନ୍ତି। ସେତେବେଳେ ନୂଆ ପ୍ରେସଟିଏ ବସାଇବାକୁ ହେଲେ ସରକାରଙ୍କଠାରୁ ଅନୁମତି ନେବାକୁ ପଡ଼ୁଥିଲା। ତେଣୁ ସଂପୃକ୍ତ ବିଭାଗକୁ ଦରଖାସ୍ତ କଲି। ମୋ ଦରଖାସ୍ତ ସମ୍ପର୍କରେ ନିଷ୍ପତ୍ତି ଦେବା ପୂର୍ବରୁ ସରକାର କଟକର ପୁସ୍ତକ ପ୍ରକାଶକ ସଂଘ ଓ ମୁଦ୍ରାକର ସଂଘର ମତାମତ ଲୋଡ଼ିଲେ।

ଛାପାଖାନାମାନଙ୍କୁ ଯଥେଷ୍ଟ କାଗଜ ମିଳୁ ନ ଥିବା କାରଣ ଦର୍ଶାଇ ମୁଦ୍ରାକର ସଂଘ ମତ ଦେଲେ ଯେ ନନ୍ଦ ମହାଶୟଙ୍କୁ ନୂଆ ପ୍ରେସଟିଏ ଖୋଲିବାକୁ ଅନୁମତି

ହଥା ନ ଯାଉ । ମାତ୍ର ପୁସ୍ତକ ପ୍ରକାଶକ ସଂଘ ଭିନ୍ନ ମତ ଦେଲେ । ଦିନେ ସ୍ୱର୍ଗତ ପଣ୍ଡିତ ଆତ୍ତୂଳ ମିଶ୍ର ମୋତେ ବଜାରରେ ଦେଖି ତାଙ୍କ ସଂଘର ମତାମତ ସମ୍ପର୍କରେ ସୂଚନା ଦେଇ କହିଲେ, "ରାମକୃଷ୍ଣ, ତୁମ ପ୍ରେସ ଖୋଲିବା ବିଷୟରେ ଆମେ ଅନୁକୂଳ ମତ ଦେଇଛୁ । ଭଲ ପ୍ରେସ ଅଭାବରୁ ରାଧାନାଥ ଗ୍ରନ୍ଥାବଳୀ ପର ବହି ଛପା ହୋଇ ପାରୁନାହିଁ । ଯେତେ ପ୍ରେସ ହେବ, ସେତେ ଭଲ । ଆମେ ସରକାରଙ୍କୁ ଏହା ଜଣାଇ ଦେଇଛୁ ।"

ଏ ଟଣାଓଟରାର ପରିଣାମ କଣ ହେବ ଭାବୁଥାଏ । ସରକାରଙ୍କ ନିଷ୍ପତ୍ତି ଉପରେ ମୋ ଜୀବନର ଭବିଷ୍ୟତ ନିର୍ଭର କରୁଛି । ମୋ ଧନରେ ମୁଁ ବ୍ୟବସାୟ କରିବି, ଅଥଚ ସେଥିରେ ଏତେ ବାଧାବିଘ୍ନ ! ଦିନେ କଣ୍ଟ୍ରୋଲ ବିଭାଗୀୟ ଅଫିସର୍ ଶ୍ରୀ ଜଗଦ୍‌ବନ୍ଧୁ ମହାପାତ୍ରଙ୍କୁ ତାଙ୍କ ଅଫିସରେ ଦେଖା କଲି । କଲେଜ ଜୀବନରେ ତାଙ୍କ ସଙ୍ଗେ ପରିଚୟ ହୋଇଥିଲା । ସେ ମହାଶୟ ଅର୍ଥନୀତିରେ ଜଣେ ମେଧାବୀ ଛାତ୍ର ଥିଲେ । ଅଫିସରେ ତାଙ୍କର ନିରାଡ଼ମ୍ବର ବ୍ୟବହାର ଦେଖି ମୁଗ୍‌ଧ ହେଲି । ତାଙ୍କୁ କହିଲି, "ମୋ ପ୍ରେସ କରିବା ବିଷୟରେ ସରକାର ସମବ୍ୟବସାୟୀଙ୍କଠାରୁ ମତ ଲୋଡ଼ୁଛନ୍ତି କାହିଁକି ?" ସେ କହିଲେ, "ନିୟନ୍ତ୍ରଣ ନିୟମ ଅନୁଯାୟୀ ଆମେ ସେମାନଙ୍କର ମତ ପଚାରୁଛୁ । ପୁସ୍ତକ ପ୍ରକାଶକ ସଂଘକୁ ମଧ୍ୟ ପଚାରିଛୁ । ତେବେ ସେମାନଙ୍କ ମତ ଗ୍ରହଣ କରିବାକୁ ସରକାର ବାଧ୍ୟ ନୁହନ୍ତି । ଆମେ ସବୁ ଦିଗ ବିଚାର କରି ଯାହା ନିଷ୍ପତ୍ତି କରିବୁ ।"

ତାଙ୍କଠାରୁ ଏହା ଶୁଣି ମନରେ ଟିକିଏ ଆଶାର ସଞ୍ଚାର ହେଲା । ସେତେବେଳକୁ ଛପାଖାନାର ଆବଶ୍ୟକ ଉପକରଣ କିଛି କିଣି ସାରିଥାଏ । ଅସଲ ଜିନିଷଟି ହାତକୁ ଆସି ନ ଥାଏ । ଛୋଟ ହେଉ ବା ବଡ଼ ହେଉ, ଗୋଟିଏ ମୁଦ୍ରାଯନ୍ତ୍ର ନିହାତି ଦରକାର । 'ଅଳପ ଧନ, ବିକଳ ମନ ।' ତିନି ହଜାର ଟଙ୍କାରୁ ଅକ୍ଷର ପ୍ରଭୃତି ଉପକରଣ କିଣିବାରେ ପ୍ରାୟ ଏକହଜାର ଟଙ୍କା ଗଲାଣି । ଅବଶିଷ୍ଟ ଦୁଇ ହଜାର ଟଙ୍କା ଭିତରେ ଛପା କଳଟିଏ କିଣିବାକୁ ହେବ । ଶୁଣି ପାରିଲି, କଲିକତାର ଗୋଟିଏ ପ୍ରତିଷ୍ଠାନ 'ଭାରତୀ' ଟ୍ରେଡଲ ମେସିନ ତିଆରି କରି ଯୋଗାଉଛନ୍ତି । ତାର ମୂଲ୍ୟ ଦୁଇ ହଜାର ଟଙ୍କା ପଡ଼ୁଛି । ପଣ୍ଡିତ ଗୋଦାବରୀଶ ମିଶ୍ର ସେଇ ମେସିନରୁ ଗୋଟିଏ ଆଣି କଟକ ବକ୍‌ସିବଜାର ଆଡ଼େ ପ୍ରେସଟିଏ ବସାଇଛନ୍ତି । ଗୋଦାବରୀଶବାବୁ ମୋ ଅପେକ୍ଷା ଏ ବିଷୟରେ ଅଧିକ ପୋଖତ । ସେ ନିଶ୍ଚୟ ଦେଖିଶୁଣି ମେସିନ କିଣିଥିବେ । ତାଙ୍କ ପ୍ରେସରେ ଭାରତୀ ଟ୍ରେଡଲ କିପରି କାମ ଦେଉଛି ଦେଖିବାକୁ ଗଲି । ଦେଖିଲି ଦୁଇଜଣ ଲୋକ ତାକୁ ଗୋଡ଼ରେ ମାଡ଼ି ଚଳାଉଛନ୍ତି । ସେଥିରେ ଥରକେ ବହିର ଚାରିପୃଷ୍ଠା ଛପାହୋଇ ପାରୁଛି ।

ଅନ୍ୟ ବିକଳ୍ପ ବ୍ୟବସ୍ଥା କିଛି ଥିଲେ ସିନା ମନରେ ଦ୍ୱିଧା ଆସନ୍ତା । ଦୁଇହଜାର ଟଙ୍କାରେ ଅନ୍ୟ କୌଣସି ଛପାକଳ ମିଳିବା ସମ୍ଭବ ନୁହେଁ । ବ୍ରହ୍ମପୁରର ଜଣେ ବ୍ୟକ୍ତି ଗୋଟିଏ ପୁରୁଣା ମେସିନ ବିକିବେ ବୋଲି ଶୁଣି ସେଠାକୁ ଗଲି, କିନ୍ତୁ ସେ ପୁରୁଣା ଛପାଯନ୍ତ୍ରଟିକୁ ଦେଖି ମନ ମାନିଲା ନାହିଁ । ଫେରି ଆସି କଲିକତାର ସେହି କମ୍ପାନୀଙ୍କ ପାଖକୁ ଛଅଶହ ଟଙ୍କା ଅଗ୍ରିମ ସହ ଗୋଟିଏ ଟ୍ରେଡଲ ମେସିନର ଅର୍ଡର ପଠାଇଦେଲି ।

ପ୍ରେସର ଉପକରଣ ସଂଗ୍ରହ ସଙ୍ଗେ ସଙ୍ଗେ ମୋର ଶିକ୍ଷା ମଧ୍ୟ ଚାଲିଥାଏ । ହିନ୍ଦୀ, ଇଂରାଜୀ ଏବଂ ବଙ୍ଗଳାରେ ମୁଦ୍ରଣ କଳା ସମ୍ବନ୍ଧୀୟ କେତେଖଣ୍ଡି ବହି କିଣି ଆଣି ପଢ଼ିବାରେ ଲାଗିଲି ଏବଂ ଘରେ ବସି ଲବ୍ଧ ଜ୍ଞାନର ପ୍ରୟୋଗ ନିଜେ ନିଜେ ଅଭ୍ୟାସ କଲି । ମୋ ପର୍ଯ୍ୟନ୍ତ ବ୍ୟାଙ୍କ ହିସାବରେ ଛପାଖାନାଟି ଚାଲୁ ନ ହୋଇଛି, ସେ ପର୍ଯ୍ୟନ୍ତ କର୍ମଚାରୀ ରଖୁଛି ବା କିପରି ? ସୁଖର କଥା, ଅଳ୍ପଦିନ ମଧ୍ୟରେ ବହୁ ପ୍ରତୀକ୍ଷିତ ସରକାରୀ ଅନୁମତି ମିଳିଗଲା କିନ୍ତୁ ମେସିନ୍ ନ ଆସିବା ପର୍ଯ୍ୟନ୍ତ ସେ ଅନୁମତିର ମୂଲ୍ୟ କଅଣ ?

ଇଂରାଜୀ ଓ ଓଡ଼ିଆରେ ଅକ୍ଷର ଖଞ୍ଜିବାର ପଦ୍ଧତି ଶିଖିବା ପରେ ସେଗୁଡ଼ିକୁ ଛାପିବା ପାଇଁ ଇଚ୍ଛା ହେଲା । ମୁଁ ପ୍ରେସଟିଏ ଆରମ୍ଭ କରିଥିବା ଶୁଣି ମୋର କେତେକ ବନ୍ଧୁ ଛପାକାମର ବରାଦ ଦେଲେ । କି ଅସୁବିଧା ହେତୁ ମୋର ପ୍ରେସ ଚାଲୁ ହୋଇ ପାରୁନାହିଁ ସେମାନେ ଜାଣିବେ ବା କିପରି ? ଏଣେ ଚାକିରି ଛାଡ଼ି ଆସିବାର ପ୍ରାୟ ବର୍ଷେ ହୋଇଗଲାଣି । କଲିକତାର ମେସିନ କମ୍ପାନୀଙ୍କୁ ଚିଠି ଲେଖି ଲେଖି ଥକିଲିଣି । ଆଠ ମାସ ହେଲା ଅଗ୍ରିମ ଦେଇ ବସିଛି, ମେସିନ ନାହିଁ କି ଉତ୍ତର ନାହିଁ । ବନ୍ଧୁମାନଙ୍କ ଆଗରେ ମୁହଁ ଦେଖାଇବାକୁ ଲାଜ ମାଡ଼ୁଛି । ତଥାପି ହତୋତ୍ସାହ ନ ହୋଇ ମୁଁ ଭବିଷ୍ୟତ ପାଇଁ ପ୍ରସ୍ତୁତ ହେଉଥାଏ ।

ସେତେବେଳେ ଆଇନ ଅନୁସାରେ ପ୍ରେସ ମାଲିକଙ୍କୁ ଜିଲ୍ଲା ହାକିମଙ୍କ ପାଖରେ ଗୋଟିଏ ଘୋଷଣାପତ୍ରରେ ସ୍ୱାକ୍ଷର କରିବାକୁ ପଡ଼ୁଥିଲା । ଆଜିକାଲି ସେ କଟକଣା ଅଛି କି ନାହିଁ ଜାଣେନା । କିନ୍ତୁ ପାଖରେ ଗୋଟିଏ ସୁଦ୍ଧା ମୁଦ୍ରାଯନ୍ତ୍ର ନ ଥାଇ ମୁଁ କି ଘୋଷଣା କରିବି ? ଖବର ପାଇଲି ଯେ ଦାଶରଥି ପ୍ରେସର ମାଲିକଙ୍କ ନିକଟରେ ଗୋଟିଏ ଛୋଟ ହ୍ୟାଣ୍ଡପ୍ରେସ ଅଛି । ସେ ତାକୁ ବ୍ୟବହାର କରୁ ନ ଥିବାର ଜାଣି ତାଙ୍କ ପାଖକୁ ଗଲି ଏବଂ କିଛିଦିନ ପାଇଁ ତାଙ୍କୁ ସେ ପ୍ରେସଟି ମାଗିଲି । ସେ ଆନନ୍ଦରେ ମୋତେ ସେ ଛପାକଳଟି ଦେଲେ । ବ୍ୟବସାୟ ଚଳାଇବା ପାଇଁ ତାହା ଉପଯୁକ୍ତ ନ ହେଲେ ସୁଦ୍ଧା 'ବସ୍ତ୍ରାଭାବେ ସୂତ୍ରଂ ଦଦ୍ୟାତ୍' ମତରେ ମୋର ପ୍ରାଥମିକ ଆବଶ୍ୟକତା କେତେକାଂଶରେ ପୂରଣ କଲା । 'ପାରିଜାତ ପ୍ରେସ' ନାମ ଦେଇ ୨୮-୨-୧୯୪୭ ତାରିଖରେ ଜିଲ୍ଲା ହାକିମଙ୍କ ଅଫିସରେ ଆବଶ୍ୟକ ଘୋଷଣାପତ୍ରରେ ସ୍ୱାକ୍ଷର ଦେଇ ଆସିଲି ।

ଏହିକ୍ଷଣି ଜଣେ ବଙ୍ଗାଳୀ ଭଦ୍ରବ୍ୟକ୍ତିଙ୍କୁ ମୋ ଅସୁବିଧାମାନ ଜଣାଇ କଲିକତାର ମେସିନ କମ୍ପାନୀ ସମ୍ପର୍କରେ ପଚାରିବାରୁ ସେ କହିଲେ ଯେ ଶ୍ରୀ ହୃଦୟାନନ୍ଦ ନାଏକ (H. Naik & Co. ର ପ୍ରତିଷ୍ଠାତା)ଙ୍କ ସଙ୍ଗେ ଉକ୍ତ କମ୍ପାନୀ ମାଲିକଙ୍କର ଭଲ ଜଣାଶୁଣା ଅଛି । ଯଦି ନାଏକବାବୁଙ୍କୁ ଦେଖାକରି ମୁଁ ଏ ବିଷୟ କହନ୍ତି ଏବଂ ସେ ଚେଷ୍ଟା କରନ୍ତେ, ତେବେ ଅବିଳମ୍ବେ ମେସିନଟି ଆସିଯାଆନ୍ତା ।

ନିରାଶାର ଅନ୍ଧକାର ଭିତରେ କ୍ଷୀଣ ଆଲୋକରେଖାଟିଏ ଦେଖାଗଲା । ଅତୀତରେ ହୃଦୟାନନ୍ଦବାବୁ ମୋ ଘର ପାଖରୁ ଅଳ୍ପ ଦୂରରେ ଅଛନ୍ତି ସତ କିନ୍ତୁ ପାଖରେ ଥିଲେ କଣ ହେବ, ମୋର ତାଙ୍କ ସଙ୍ଗେ କେବେ ଦେଖାସାକ୍ଷାତ ହୋଇନାହିଁ । ଅପରିଚିତ ଭାବରେ ତାଙ୍କୁ ଭେଟି ମୋ ବିଷୟ କହିବାଟା କେତେଦୂର ସମୀଚୀନ ହେବ ବିଚାରିଲି । ସେ ମୋ କଥା ଉପରେ ଗୁରୁତ୍ୱ ଦେବେ କି ନାହିଁ । ଶୁଣିଥିଲି ସେ ଜଣେ ଉଦ୍ୟମ ଲୋକ; ଅଭାବ ଅସୁବିଧା ସଙ୍ଗେ ଲଢ଼େଇ କରି ନିଜ ଗୋଡ଼ରେ ଠିଆ ହୋଇଛନ୍ତି । ଏଭଳି ଲୋକଙ୍କୁ ଗୋଟାଏ ଅନୁରୋଧ କଲେ କ୍ଷତି କଣ ? ଏହିପରି ଭାବୁ ଭାବୁ ଅତୀତର ଗୋଟିଏ ଘଟନା ମନେ ପଡ଼ିଗଲା । ମୁଁ ବାରିପଦାରେ ଚାକିରି କରୁଥିବାବେଳେ ଏଇ ନାଏକବାବୁ କୌଣସିଠାରୁ ମୋର ଖବର ନେଇ ମୟୂରଭଞ୍ଜ ଷ୍ଟେଟରେ ତାଙ୍କ ବ୍ୟବସାୟ ପାଇଁ କୌଣସି ସୁବିଧା ମିଳିପାରିବ କି ନାହିଁ ବୁଝି ଜଣାଇବାକୁ ମୋତେ ଖଣ୍ଡେ ଚିଠି ଲେଖିଥିଲେ । ଭାବିଲି, ସେଇ ଚିଠିକୁ ଆଶ୍ରୟ କରି ଏ ପ୍ରସଙ୍ଗ ଉତ୍ଥାପନ କରିବି । ପୁରୁଣା କାଗଜପତ୍ର ଖୋଜାଖୋଜି କରିବାରୁ ବହୁଦିନ ତଳର ସେ ଚିଠିଟି ମିଳିଲା !

ବାସ୍ତବିକ କବିବର ଯାହା ଲେଖିଯାଇଛନ୍ତି ଠିକ୍ କଥା । 'ଭାଗ୍ୟଦେବୀ ଅନୁକୂଳ ଉଦ୍‌ଯୋଗୀର, ଅଳସ କଥାକୁ ସଦା ସେ ବଧିର ।' ଚାକିରି ଗ୍ରହଣଦିନଠାରୁ ପ୍ରେସଟିଏ କରିବି ବୋଲି ବର୍ଷାଧିକ କାଳ ମୁଁ ଏକା ଏକା ଯେତେ କଷ୍ଟ ସ୍ୱୀକାର କଲିଣି, ସେ କଣ ବ୍ୟର୍ଥ ହୁଅନ୍ତା । ସେ ଚିଠିଟି ମୋତେ କୋଟିନିଧି ପାଇଲା ପରି ଲାଗିଲା । ସେକ୍ଷଣି ଧରି ନାଏକବାବୁଙ୍କ ଘରକୁ ଗଲି ଏବଂ ତାଙ୍କୁ ଦେଖା କଲି ।

ଆମ ଦୁହିଁଙ୍କ ଭିତରେ ଛଅ ସାତ ବର୍ଷ ତଳେ ସେଇ ଥରେ ଯାହା ଚିଠିପତ୍ର ଆଦାନପ୍ରଦାନ ହୋଇଥିଲା, ସେତିକି । କେବେ ଦେଖା ସାକ୍ଷାତ ହୋଇନାହିଁ । ତେଣୁ ମୋତେ ଦେଖି ସେ ଚିହ୍ନିବେ ବା କିପରି ? ସଙ୍ଗେ ସଙ୍ଗେ ତାଙ୍କ ହାତକୁ ଚିଠିଟି ବଢ଼ାଇ ଦେଇ ନୀରବରେ ଅପେକ୍ଷା କରି ରହିଲି । ହୃଦୟାନନ୍ଦବାବୁ ଚିଠି ଉପରେ ଆଖି ବୁଲାଇ ନେଲା ମାତ୍ରେ ହସି ହସି କହି ଉଠିଲେ, "ଏଇ ଯେ ରାମକୃଷ୍ଣବାବୁ ! ଆପଣ ଏ ଚିଠିଟି ଆଜଯାଏ ରଖିଛନ୍ତି !" ତା ପରେ କୁଶଳ ପ୍ରଶ୍ନ ଓ ନାନା ଦୁଃଖ ସୁଖ କଥା ପଡ଼ିଲା । ଶେଷରେ ମୋ ଆସିବାର କାରଣ ଜଣାଇଲି । ସେ ସଙ୍ଗେ ସଙ୍ଗେ ମୋ ବନ୍ଧୁନା ଓ ବନ୍ଦରର ବିବରଣୀ ଟିପି

ରଖିଲେ ଏବଂ ସେହିଦିନ କମ୍ପାନୀକୁ ଚିଠି ଦେବେ ବୋଲି କହିଲେ । ତାଙ୍କଠାରୁ ଆଶ୍ୱାସନା ପାଇ ଘରକୁ ଫେରିଲି ।

ପନ୍ଦର ଦିନ ନ ଯାଉଣୁ ମୋ ଛାପାକଳଟି କଲିକତାରୁ ଆସିଗଲା । ଭାରତୀୟ କାରିଗରଙ୍କ ଦ୍ୱାରା ତିଆରି 'ଭାରତୀ ଟ୍ରେଡ଼ଲ୍' । ବିଦେଶୀ ମୁଦ୍ରାଯନ୍ତ୍ରର ପରିପାଟୀ ବା ଚାକଚକ୍ୟ ସେଥିରେ ନାହିଁ, ମାଞ୍ଚେଷ୍ଟରର ଧୋତି ପାଖରେ ଖଦଡ଼ ଲୁଗା ପରି । କଳର ଅଂଶଗୁଡ଼ିକ ଖୋଲି ହୋଇ ଆସିଥାଏ । ସେଇ କେତେଖଣ୍ଡ ଲୁହାକୁ ଖଣ୍ଡାଖଣ୍ଡି କରି ବସାଇ ଦେଲେ ମୋ ପାରିଜାତ ପ୍ରେସ ଜୀବନ୍ୟାସ ପାଇବ । ଏହି ଯନ୍ତ୍ରଟି ହେବ ମୋ ନୂତନ ଜୀବନ-ସଂଗ୍ରାମର ପ୍ରଥମ ଆୟୁଧ ।

## ପାରିଜାତ ପ୍ରେସର ଜନ୍ମ (୧୯୪୭)

କଟକରେ ଯେଉଁ ଶ୍ରେଣୀର ଶ୍ରମିକ ପ୍ରେସରେ କାମ କରନ୍ତି, ସେମାନଙ୍କ ମଧ୍ୟରୁ ଅଧିକାଂଶ ଅଧାପାଠୁଆ, ଅର୍ଥାତ୍ ଅପର ପ୍ରାଇମେରୀ ବା ମାଇନର ଶ୍ରେଣୀଯାଏ ପାଠ ପଢ଼ି ପ୍ରେସ କାମରେ ପଶି ଯାଇଛନ୍ତି । ଖୁବ୍ ଅଳ୍ପ ଲୋକ ହାଇସ୍କୁଲରୁ ପାଠ ଛାଡ଼ି ଆସିଛନ୍ତି । ମୁଁ ଯେଉଁବେଳେ ପ୍ରେସ ଆରମ୍ଭ କଲି, ସେତେବେଳେ ଛାପାଖାନା ସମ୍ପର୍କୀୟ କାମ ଶିଖାଇବା ପାଇଁ କଟକରେ କୌଣସି ଅନୁଷ୍ଠାନ ନ ଥିଲା । ପୁରୁଣା କର୍ମଚାରୀଙ୍କୁ ଅନୁସରଣ କରି ତାଙ୍କରି ସାହାଯ୍ୟରେ ନୂଆ ଶିଖାଳିମାନେ ପ୍ରେସରେ ପଶୁଥିଲେ ଏବଂ କାମ ଶିଖୁଥିଲେ । ଦୁଇ ଚାରୋଟି ଭଲ ପ୍ରେସକୁ ଛାଡ଼ିଦେଲେ ଅନ୍ୟାନ୍ୟ ପ୍ରେସର ମ୍ୟାନେଜରମାନେ ମଧ୍ୟ ଛାପାଖାନାର ବିଭିନ୍ନ ବିଭାଗର କାମ ସମ୍ବନ୍ଧରେ ପୂର୍ଣ୍ଣ ରୂପେ ଅବହିତ ନ ଥିଲେ । ମୁଁ ନୂଆ ପ୍ରେସଟିଏ କରୁଛି ଜାଣି ବେକାର ରହିଥିବା କେତେକ ପୁରୁଣା କର୍ମଚାରୀ ମୋ ପାଖରେ କାମ କରିବାପାଇଁ ଆସି ପହଞ୍ଚିଲେ । ସେମାନେ ସମସ୍ତେ କଟକ ସହରର ବାସିନ୍ଦା । ଦେଖିଲି, ଭଲ କାମ ଜାଣିଥିଲେ ସୁଦ୍ଧା ସେମାନଙ୍କର କୌଣସି ଗୋଟିଏ ପ୍ରେସରେ ସ୍ଥାୟୀ ଭାବରେ ରହିବାର ମନୋବୃତ୍ତି ନାହିଁ । ତେଣୁ ସ୍ଥିର କଲି, ମଫସଲରୁ ଗରିବ ପିଲାମାନଙ୍କୁ ଆଣି ପ୍ରେସ କାମ ଶିଖାଇ ମୋ ପ୍ରେସରେ ରଖିବି ।

କିନ୍ତୁ ମୋର ଏ ପନ୍ଥା ଠିକ୍ ନୁହେଁ ବୋଲି ପରେ ବୁଝି ପାରିଲି । ଶିଖାଳି-ମାନଙ୍କୁ ନେଇ ବ୍ୟବସାୟ ଚାଲି ନ ପାରେ । କାମ ତ ଭଲ ହେଲା ନାହିଁ, ତା ଛଡ଼ା ପ୍ରେସର ଅକ୍ଷର ଓ ଉପକରଣଗୁଡ଼ିକ ଖରାପ ହୋଇଗଲା । ସେମାନଙ୍କ ପିଛରେ ମୋତେ ମଧ୍ୟ ନିକମା ହେବାକୁ ପଡ଼ିଲା । ଲାଭ ନାହିଁ କି ଶାନ୍ତି ନାହିଁ, କେବଳ ଗୋଟିଏ ନିଶାରେ ମୁଁ ଲାଗିଥାଏ । ଷ୍ଟ୍ରେଟକାଟରେ ହେଲେ ସୁଦ୍ଧା, ଯଦି ପ୍ରେସଟିକୁ ଚଳାଇ ନ ପାରି ବନ୍ଦ କରିଦେଉଛି, କ୍ଷତି ତ ଯାହା ହେବ ହେବ, ଲୋକହସା ହେବାହିଁ ସାର ହେବ । ଅନେକ ଭାବିଚିନ୍ତି ପ୍ରେସ ପରିଚାଳନାରେ ଅଭିଜ୍ଞତା ଅର୍ଜନ କରିଥିବା ମୋର ଜଣେ ପୂର୍ବତନ ଛାତ୍ରଙ୍କୁ ମ୍ୟାନେଜର ରୂପେ ନିଯୁକ୍ତ କଲି ।

ପ୍ରେସ କାର୍ଯ୍ୟରେ ଜଡ଼ିତ ରହି ଗୋଟିଏ ପୂର୍ଣ୍ଣ ବ୍ୟବସାୟୀ ପାଲଟିବାକୁ ମୋର ଇଚ୍ଛା ନ ଥିଲା । ମୁଁ ଭାବିଥିଲି, ପରିଚାଳକ ଓ ସହକାରୀମାନଙ୍କ ସାହାଯ୍ୟରେ ପ୍ରେସ ଚଲାଇ ସେଥିରୁ ଆଶାନୁରୂପ ଲାଭ ପାଇବି ଏବଂ ଅବସରବେଳେ ଲେଖାପଢ଼ାରେ ବ୍ୟାପୃତ ରହିବା ସଙ୍ଗେ ସଙ୍ଗେ ପିଲାମାନଙ୍କର ଉପଯୁକ୍ତ ତତ୍ତ୍ୱ ନେଇପାରିବି । କିନ୍ତୁ ମୋର ସେ ଧାରଣା ଭ୍ରାନ୍ତ ପ୍ରମାଣିତ ହେଲା । ଯେଉଁମାନେ ମୋ ପ୍ରେସରେ ଛପା-କାର୍ଯ୍ୟର ବରାଦ ଦେଉଥିଲେ, ସେମାନଙ୍କୁ ସନ୍ତୁଷ୍ଟ କରିବାକୁ ହେଲେ ଉନ୍ନତତର ପରିଚାଳନା ଆବଶ୍ୟକ । ସେମାନଙ୍କର ଆପତ୍ତି ଅଭିଯୋଗକୁ ଏଡ଼ାଇଦେବା ମୋ ପକ୍ଷରେ ସମ୍ଭବ ନ ଥିଲା । ତେଣୁ ପ୍ରଥମ ତିନିଚାରି ବର୍ଷ ବ୍ୟବସାୟ ଲାଭଜନକ ହେଲା ନାହିଁ କି ମୁଁ ଶାନ୍ତି ପାଇପାରିଲି ନାହିଁ ।

ସ୍କୁଲ ଚାକିରି ଓ ପ୍ରେସ ବ୍ୟବସାୟ ମଧ୍ୟରେ ଏତେ ବ୍ୟବଧାନ ଅଛି ବୋଲି ପୂର୍ବରୁ ମୋର ଧାରଣା ନ ଥିଲା । ପ୍ରଥମଟିରେ ଶିକ୍ଷିତ ଲୋକଙ୍କ ସଙ୍ଗେ ମିଶି କାମ କରିବାକୁ ହୁଏ, ରୁଟିନବନ୍ଧା ଜୀବନ, ନିର୍ଦ୍ଦିଷ୍ଟ ସମୟରେ ଅବସର ମିଳେ ଏବଂ ଲେଖାପଢ଼ାର ଆବେଷ୍ଟନୀଭିତରେ ସମସ୍ତ କଟିଯାଏ । ବ୍ୟବସାୟୀ-ଜୀବନ କିନ୍ତୁ ସେପରି ନୁହେଁ । ପୁଣି ମୋର ଶ୍ରେଷ୍ଠ ପ୍ରେସ୍‌ଟି ଏପର୍ଯ୍ୟନ୍ତ ଅଣ୍ଟା ଡେରି ଠିଆ ହେବାକୁ ସମର୍ଥ ହୋଇନାହିଁ, ଭୂମିରେ ଘୁରୁଛି ମାତ୍ର । ମୁଦ୍ରଣରେ ମାନ ମଧ୍ୟ ମୋର ଆଶାନୁରୂପ ହୋଇପାରୁନାହିଁ, ଅଥଚ ସବୁ ସମୟରେ ମୋତେ କାର୍ଯ୍ୟବ୍ୟସ୍ତ ରହିବାକୁ ପଡ଼ୁଛି ।

'ଆଶା' ପତ୍ରିକାର ସମ୍ପାଦକ ସ୍ୱର୍ଗୀୟ ଶଶିଭୂଷଣ ରଥ କୁଆଡ଼େ ଥରେ କହିଥିଲେ, "ତୁମର ଯଦି କେହି ଶତ୍ରୁ ଥାଏ, ତାକୁ ଗୋଟିଏ ପ୍ରେସ୍‌ର ମେନେଜର କରିଦିଅ ।" ତାଙ୍କ କଥାର ତାତ୍ପର୍ଯ୍ୟ ଉତ୍ତମରୂପେ ହୃଦୟଙ୍ଗମ କଲି । ଆମ ରାଜ୍ୟରେ ପ୍ରେସଟିଏ ଚଳାଇବା ବାସ୍ତବିକ ଆଦୌ ସୁଖକର ନୁହେଁ, କିନ୍ତୁ ମୋ ପକ୍ଷରେ ଫେରିବାର ଆଉ ଉପାୟ ନାହିଁ । ଯେତେ କଷ୍ଟକର ହେଲେ ବି ଆଗେଇବାକୁ ହେବ ।

ଥରେ ନୟାସଡ଼କରେ କାର୍ଯ୍ୟଉପଲକ୍ଷରେ ଯାଉଥିବାବେଳେ ପ୍ରେସ୍ ଓ ପୁସ୍ତକ ବ୍ୟବସାୟରେ ଅଭିଜ୍ଞ ଶ୍ରୀ ଲକ୍ଷ୍ମୀଧର ଗରାବଡ଼ୁଙ୍କ ସଙ୍ଗେ ସାକ୍ଷାତ ହେଲା । ତାଙ୍କୁ କହିଲି, "ଆପଣ ଏ କ୍ଷେତ୍ରରେ ବହୁଦିନ ରହିଲେଣି । ମୋତେ ଜଣେ ସୁଯୋଗ୍ୟ ପ୍ରେସ ମେନେଜର ଦିଅନ୍ତେ ?" ସେ ଉତ୍ତର ଦେଲେ, "ଆପଣଙ୍କଠାରୁ ଅଧିକ ଯୋଗ୍ୟ ମେନେଜର କିଏ ମିଳିବେ ?" ପ୍ରେସ କାମ ବୁଝିଲେ ମୋତେ ଚବିଶ ଘଣ୍ଟା ନିକମା ହେବାକୁ ପଡ଼ିବ ବୋଲି ଦର୍ଶାଇବାରୁ ସେ କହିଲେ, "ହଁ, ତା ସତ, କିନ୍ତୁ ଯଦି ଭଲ ପ୍ରେସଟିଏ କରିବାକୁ ଚାହାନ୍ତି, ତେବେ ନିଜେ ବୁଝନ୍ତୁ ।"

ଭଲ ପ୍ରେସ୍‌ଟିଏ ତ ନିଶ୍ଚୟ କରିବାର ଇଚ୍ଛା । ତେଣୁ ତାଙ୍କ ଉପଦେଶ ଅନୁଯାୟୀ ସେହିଦିନଠାରୁ ପ୍ରେସର ପ୍ରତ୍ୟକ୍ଷ ତତ୍ତ୍ୱାବଧାନ ଦାୟିତ୍ୱ ଗ୍ରହଣ କଲି ।

ମୋର ବନ୍ଧୁ ରଘୁନାଥଙ୍କ ଦାବଦରୁ ପୂର୍ବାପେକ୍ଷା ଅଧିକ ଟଙ୍କା ମିଳୁଥାଏ ସେଥିରୁ ଘରଟିଚ ଚଳାଇ ଉଦ୍‌ବୃତ୍ତ ଧନରେ ଅଧିକ ଗୋଟିଏ ଜାପାନୀ ମୁଦ୍ରାଯନ୍ତ୍ର କିଣିଲି । ପ୍ରାୟ ଶୃଣ ହଜାର ଟଙ୍କା ପଡ଼ିଲା ଏଥିରେ ଏକ ସମୟରେ ବହିର ଆଠଟି ପୃଷ୍ଠା ଛପା ହୋଇ ପାରିଲା, ତେଣୁ ପୂର୍ବାପେକ୍ଷା ଅଳ୍ପ ସମୟରେ ଅଧିକ କାମ ହୋଇ ପାରିଲା ।

ମୋ ଜାପାନୀ ମେସିନ୍‌ଟି କ୍ରାଉନ ଆକାରର । ଏହା ଅପେକ୍ଷା ବହୁତ ବଡ଼, ଡବଲ କ୍ରାଉନ ଏବଂ ଡବଲ ଡିମାଇ ମେସିନ ସେତେବେଳେ କଟକରେ ଅନେକ ପ୍ରେସରେ ଥାଏ । କିନ୍ତୁ ସେମାନଙ୍କ ସଙ୍ଗେ ପ୍ରତିଯୋଗିତା କରି ଗୋଟିଏ ବଡ଼ ଛାପାଖାନା ପ୍ରତିଷ୍ଠା କରିବାର ଅଭିପ୍ରାୟ ମୋର ନ ଥିଲା । ଏଇ ଗତ କେତେବର୍ଷର ଅଭିଜ୍ଞତାରୁ ମୁଁ ଭଲରୂପେ ବୁଝିପାରିଥିଲି ଯେ ପ୍ରେସ ଯେତେ ବଡ଼ ହେବ ଲାଭ ସେତେ ବଢ଼ିବ, ମାତ୍ର ତା ସଙ୍ଗେ ସଙ୍ଗେ ଜଞ୍ଜାଳ ଏବଂ ଅଶାନ୍ତିର ବୋଝ ମଧ୍ୟ ବଢ଼ିବ । ଅଧିକ ଅର୍ଥଲାଭର ବଦଳରେ ମୋର ମାନସିକ ଶାନ୍ତିକୁ ନଷ୍ଟ କରି ଦେବାକୁ ମୁଁ ଇଚ୍ଛା କରୁ ନ ଥିଲି । ତେଣୁ ଅଧିକ ଲାଭର ଆଶା ନ ରଖି ସେଇ ଶ୍ରେଷ୍ଠ ପ୍ରେସଟିକୁ ସୁପ୍ରତିଷ୍ଠିତ କରି କିପରି ତାର ସ୍ୱାତନ୍ତ୍ର୍ୟ ରକ୍ଷା କରିପାରିବି, ସେହି ଦିଗରେ ଯତ୍ନବାନ୍ ହେଲି ।

## 'ମୋ ଜୀବନ ଗଢ଼ା ଭିନ୍ନ ଉପାଦାନେ'

ମୁଁ ଏହିପରି ଏକ ନୂତନ ଜୀବନ-ସଂଗ୍ରାମରେ ବ୍ୟାପୃତ ରହିଥିବାବେଳେ ଜାତୀୟ ମୁକ୍ତି-ସଂଗ୍ରାମର ଅବସାନ ପରେ ଭାରତ ଲାଭ କରିଥାଏ ବହୁ-ଆକାଂକ୍ଷିତ ସ୍ୱାଧୀନତା । ୧୯୫୧ ର ପ୍ରଥମ ସାଧାରଣ ନିର୍ବାଚନ ପରେ ଦ୍ୱିତୀୟ ନିର୍ବାଚନର ଆସ୍ୱାଦ ଲାଭ କରିବାପାଇଁ ଜନତା ପ୍ରସ୍ତୁତ ହେଉଥାନ୍ତି । ସେତେବେଳେ ଆମ ଗୋବିନ୍ଦପୁର ଅଞ୍ଚଳର କେତେକ ବ୍ୟକ୍ତି ନିର୍ବାଚନରେ ପ୍ରାର୍ଥୀ ହେବାପାଇଁ ମୋତେ ପ୍ରବର୍ତ୍ତାଇବାକୁ ଚେଷ୍ଟା କରିଥିଲେ । ପ୍ରାୟ ଦୁଇ ସପ୍ତାହ ପର୍ଯ୍ୟନ୍ତ ପ୍ରତିଦିନ ମୋ ଘରକୁ ସେହି ବନ୍ଧୁମାନେ ଆସି ଆଲୋଚନା କରନ୍ତି ଏବଂ ମୋର ମତାମତ ବୁଝନ୍ତି । ରାଜନୀତିର ଆବର୍ତ୍ତ ମଧ୍ୟରେ ପଶି ଭଉଁରୀ ଖେଳିବାକୁ ମୁଁ ଇଚ୍ଛା କରୁ ନ ଥିଲି । ଜୀବନର ପ୍ରଥମ ପାଦରେ ଯେଉଁ ବୃଣବର୍ଷ ଅସହଯୋଗୀର ଦୀକ୍ଷା ନେଇଥିଲି ସେତିକି । ତା ପରେ ମୋ ଜୀବନ ଭିନ୍ନ ମାର୍ଗରେ ଗତି କରିଥାଏ । ବନ୍ଧୁମାନଙ୍କୁ ବହୁତ ବୁଝାଇସୁଝାଇ କହିଲି, "ଆମ ଗୋବିନ୍ଦପୁର ଅଞ୍ଚଳରେ ବିଧାନସଭାକୁ ପ୍ରାର୍ଥୀ ହେବାପାଇଁ ମୋ ଅପେକ୍ଷା ଅଧିକ ଯୋଗ୍ୟତର ବ୍ୟକ୍ତି ଜଣେ ଅଛନ୍ତି—ଅବସରପ୍ରାପ୍ତ ଅଧ୍ୟାପକ ଶ୍ରୀଯୁକ୍ତ ରତ୍ନାକର ପତି । ତାଙ୍କୁ ଆମ୍ଭେ ପ୍ରବର୍ତ୍ତାଇବା ।" ମୋ କଥା ସମସ୍ତଙ୍କ ମନକୁ ପାଇଲା ଏବଂ ଆମେ ପ୍ରାୟ ପନ୍ଦର କୋଡ଼ିଏ ଜଣ ଏକାଠି ହୋଇ ଦିନେ ସନ୍ଧ୍ୟା ପରେ ରତ୍ନାକରବାବୁଙ୍କ ଘରକୁ ଗଲୁ ଏବଂ ତାଙ୍କୁ ଆମର ଅଭିପ୍ରାୟ ଜଣାଇଲୁ । ସେ ଯେ ଏ ଗୋଳମାଳିଆ

ରାଜନୀତି କ୍ଷେତ୍ରରେ ପଶିବାକୁ ରାଜି ହେବେ ନାହିଁ, ଏ କଥା ମୁଁ ପୂର୍ବରୁ ଅନୁମାନ କରିଥିଲି । କେବଳ ନିଜେ ନିଷ୍କୃତି ପାଇବା ପାଇଁ ଗୋଟିଏ ବିକଳ୍ପ ପ୍ରସ୍ତାବ ଦେଇଥିଲି ମାତ୍ର । ତାହାହିଁ ହେଲା । ଶୁଣୁ ଶୁଣୁ ରତ୍ନାକରବାବୁ ସ୍ପଷ୍ଟ ଭାବରେ ତାଙ୍କର ଅନିଚ୍ଛା ପ୍ରକାଶ କଲେ । ତେଣୁ ସମସ୍ତେ ବିଫଳମନୋରଥ ହୋଇ ଫେରି ଆସିଲୁ ।

ନିର୍ଦ୍ଦିଷ୍ଟ କେଉଁଦିନ ଠିକ୍ ମନେ ନାହିଁ, ଆଉ ଥରେ ଏହିପରି ଓଡ଼ିଶାର ଦୁଇଜଣ ବିଶିଷ୍ଟ ନେତୃସ୍ଥାନୀୟ ବ୍ୟକ୍ତି ଏଇ ଉଦ୍ଦେଶ୍ୟରେ ମୋ ପାଖକୁ ଆସିଥିଲେ । ସିଂହଭୂମ, ସରାଇକେଲା ମିଶ୍ରଣ ସମ୍ପର୍କୀୟ ସେଉଁ ସୀମା ଆନ୍ଦୋଳନ କିଛିଦିନ ତେଜି ଉଠିଥିଲା, ତାର ପରବର୍ତ୍ତୀ ସମୟର ଘଟଣା । ସ୍ୱର୍ଗୀୟ ପଣ୍ଡିତ ଗୋଦାବରୀଶ ଓ ଯଦୁମଣି ମଙ୍ଗରାଜ ଦୁଇଜଣ ଯାକ ସେତେବେଳେ ... ସମୟରେ ମୋର କଟକ ବାସଭବନକୁ ଆସି ମୋତେ ତାଙ୍କ ନୂତନ ଦଳ ପକ୍ଷରୁ ଗୋବିନ୍ଦପୁରରୁ ରାଜ୍ୟ ବିଧାନସଭାକୁ ପାର୍ଥୀ ହେବାପାଇଁ ପ୍ରବର୍ତ୍ତାଇଥିଲେ । ମୁଁ ରାଜନୀତି କ୍ଷେତ୍ରରୁ ଅଲଗା ରହିବାକୁ ପସନ୍ଦ କରିଥିବା କଥା ବିନୀତ ଭାବରେ ଉକ୍ତ ନେତାଦ୍ୱୟଙ୍କୁ ଜଣାଇବାରୁ ସେମାନେ ଫେରିଗଲେ ।

## 'ସଂସାର'ର ପ୍ରଥମ ପ୍ରକାଶ (ଅଗଷ୍ଟ, ୧୯୫୧)

ପାରିଜାତ ପ୍ରେସର ଏଇ ଚାରିବର୍ଷ ଜୀବନକାଳ ମଧ୍ୟରେ ଯେଉଁ କେତେଖଣ୍ଡି ବହି ଲେଖି ଛପାଇଥିଲି, ସେଥିମଧ୍ୟରେ ଛାତ୍ରମାନଙ୍କ ବ୍ୟବହାର ପାଇଁ 'ସରଳ ସାଧାରଣ ଜ୍ଞାନ' ଅନ୍ୟତମ । ଏହି ବହି ତିନୋଟି ଭାଗରେ ପ୍ରକାଶ ପାଇଥିଲା । ପ୍ରଥମ ଓ ଦ୍ୱିତୀୟ ଭାଗର ସଙ୍କଳନ ବେଳେ ଓଡ଼ିଆରେ ସହାୟକ ପୁସ୍ତକର ଅଭାବ ବିଶେଷ ଭାବରେ ଅନୁଭବ କଲି । ଚଳନ୍ତି ଘଟଣାବଳୀର ସଂକ୍ଷିପ୍ତ ତଥ୍ୟ ଓ ହେତୁଗୁଡ଼ିକର ସମସ୍ତ ନିରୂପଣ କରିବା ପାଇଁ ପିଛିଲା ସମ୍ବାଦପତ୍ର ସଂଗ୍ରହ କଷ୍ଟକର ହୋଇଥିଲା । ସେତିକବେଳେ ମୋର ମନେ ହେଲା, ଯଦି ଓଡ଼ିଆରେ ଜ୍ଞାନବିଜ୍ଞାନ ତଥ୍ୟସମ୍ବଳିତ ଖଣ୍ଡିଏ ମାସିକ ପତ୍ରିକା ଥାଆନ୍ତା, ମୁଁ ସେଥିରୁ ଆବଶ୍ୟକ ବିଷୟମାନ ସହଜରେ ପାଇପାରିଥାନ୍ତି, ଏତେ ଧନ୍ଦ ହେବାକୁ ପଡ଼ି ନ ଥାନ୍ତା । ତେଣୁ ଏଇ ପରିକଳ୍ପନାକୁ କାର୍ଯ୍ୟରେ ପରିଣତ କରିବାକୁ ମୋର ଖୁବ୍ ଇଚ୍ଛା ହେଲା ।

ପୁଣି ଭାବିଲି, ସାହିତ୍ୟ ପତ୍ରିକାଟିଏ ବାହାର କରି ସେଥିରେ ଜ୍ଞାନବିଜ୍ଞାନ ପାଇଁ ଗୋଟିଏ ସ୍ୱତନ୍ତ୍ର ବିଭାଗ ରଖିଲେ କିପରି ହୁଅନ୍ତା । ଓଡ଼ିଆ ସାହିତ୍ୟ ପତ୍ରିକାଗୁଡ଼ିକର ଅବସ୍ଥା ଅନୁଧ୍ୟାନ କଲି । ସମାଜ ସଂସ୍ଥା ପକ୍ଷରୁ ପ୍ରକାଶିତ 'ସତ୍ୟବାଦୀ'ର ଅକାଳମରଣ ସମ୍ପର୍କରେ ବନ୍ଧୁ ଶ୍ରୀ ଉଦୟନାଥ ଷଡ଼ଙ୍ଗୀଙ୍କୁ ପଚାରି ବୁଝିଲି ଯେ ଆର୍ଥିକ ଅସୁବିଧା ଯୋଗୁ ତାହା ବନ୍ଦ ହୋଇଗଲା ।

'ଝଙ୍କାର'ର ସହ-ସମ୍ପାଦକ ଭାବରେ କାର୍ଯ୍ୟ କରୁଥିବା ମୋର ଜଣେ ପୁରାତନ ଛାତ୍ର ଉକ୍ତ ପତ୍ରିକାର ପରିଚାଳନା ସମ୍ପର୍କରେ ମୋତେ ଯେଉଁ ଚିତ୍ର ଦେଲେ, ତାହା ସେତେ ଉଜ୍ଜ୍ୱଳ ମନେହେଲା ନାହିଁ । 'ଡଗର'ର ଅବସ୍ଥା ମଧ୍ୟ ସ୍ୱଚ୍ଛଳ ନ ଥିଲା । କବି ବୀରକିଶୋରଙ୍କ ସମ୍ପାଦିତ ଶିଶୁ ପତ୍ରିକା 'ମୋ ଦେଶ' ଏ ଦେଶବାସୀଙ୍କୁ ନିର୍ବାଣ କରି ଯେପରି ଅଳ୍ପଦିନ ଭିତରେ ଶୂନ୍ୟ ଦେଶକୁ ଚାଲିଗଲା, ତା ମଧ୍ୟ ଦେଖିଲି । ସ୍ଥିର କଲି, ସାହିତ୍ୟ-ରାଜ୍ୟରେ ଆଡ଼ମ୍ବରସହ ପ୍ରବେଶ କରି ଦୁଇ ଚାରି ମାସପରେ ନିଖୋଜ ହେବା ଅପେକ୍ଷା ଦୀର୍ଘ ଜୀବନର ଲାଳସା ନେଇ ସାହିତ୍ୟର ଉପାନ୍ତ ଅଞ୍ଚଳରେ ଦୀନବେଶରେ ବୁଲି ବୁଲି ଦେଶର ମଙ୍ଗଳହିତ ସେବା କରିବା ବରଂ ଅଧିକ କାମ୍ୟ । ତେଣୁ ପ୍ରଥମେ ଷୋଳଟି ପୃଷ୍ଠାର କଳେବର ଭିତରେ 'ସଂସାର' ପତ୍ରିକାକୁ ରୂପ ଦେଲି । 'ହାତେ ମାପି ଗୁଖଣ୍ଡେ ଚାଲିବା' ନୀତିରେ ଏପର୍ଯ୍ୟନ୍ତ ତାକୁ ପରିପାଳନ କରି ଆସୁଅଛି । ବର୍ତ୍ତମାନ ତାର କଳେବର ୪୪ ପୃଷ୍ଠାକୁ ବୃଦ୍ଧି ପାଇଅଛି ।

## ପ୍ରେସର ଉନ୍ନତି

ଶ୍ରୀ ଲକ୍ଷ୍ମୀଧର ରଥବର୍ଡ଼ୁଙ୍କ ଉପଦେଶ ଅନୁଯାୟୀ ପାରିଜାତ ପ୍ରେସର ପରିଚାଳନାରେ ମୁଁ ପ୍ରତ୍ୟକ୍ଷଭାବରେ ସଂପୃକ୍ତ ରହିବାକୁ ସ୍ଥିର କଲି । ମ୍ୟାନେଜର ଓ ତାଙ୍କ ସହକାରୀମାନଙ୍କ ଉପରେ ନିର୍ଭର କରି ମୁଁ ନିଶ୍ଚିନ୍ତ ରହିପାରିଲି ନାହିଁ । ପ୍ରେସର ସୁନାମ ଆଣିବାକୁ ହେଲେ ଦୁଇଟି କଥା ନିତାନ୍ତ ଦରକାର— ଶୁଦ୍ଧ ଓ ସୁନ୍ଦର ମୁଦ୍ରଣ ଏବଂ ନିର୍ଦ୍ଦିଷ୍ଟ ସମୟରେ କାର୍ଯ୍ୟସମାପନ । ଏଥିମଧ୍ୟରୁ ପ୍ରଥମଟି ଅପେକ୍ଷାକୃତ ସହଜ ମାତ୍ର ନିର୍ଦ୍ଦିଷ୍ଟ ସମୟରେ କାର୍ଯ୍ୟଟିକୁ ଶେଷ କରି ଗ୍ରାହକଙ୍କୁ ଦେବା ସେତେ ସହଜ ନୁହେଁ । କର୍ମଚାରୀମାନଙ୍କର ପୂର୍ଣ୍ଣ ସହଯୋଗ, ସଂଯୋଗରକ୍ଷା ଓ ଦାୟିତ୍ୱଜ୍ଞାନ ଉପରେ ତାହା ନିର୍ଭର କରେ । ଅଫିସ୍‌ର ସହକାରୀମାନେ ଏ ବିଷୟରେ ବିଶେଷ ଗୁରୁତ୍ୱ ଦେବାର ଦେଖିଲି ନାହିଁ । 'କଟକରେ କୌଣସି ଛାପାଖାନା ଜବାବ ଅନୁସାରେ କାମ ଦେଇପାରନ୍ତି ନାହିଁ'—ଏହାକୁ ଏକ ସ୍ୱତଃସିଦ୍ଧ ରୂପେ ଧରି ନେଇ ସେମାନେ ଗତାନୁଗତିକ ପନ୍ଥାରେ ଅବିଚଳିତ ରହିଥାନ୍ତି ।

ମୁଁ ଦେଖିଲି ଏଇ କର୍ମଚାରୀ ଓ ସହକାରୀମାନଙ୍କୁ ନେଇ ପ୍ରେସ ଚଳାଇବାକୁ ହେବ । କୌଣସି କାରଖାନା ଜଣେ ଲୋକଦ୍ୱାରା ଚଳି ନ ପାରେ । ପ୍ରୁଫ୍ ସଂଶୋଧନରେ ସାବଧାନତା ଏବଂ ଟାଇପ୍‌ର କଳାତ୍ମକ ରୂପରେ ପ୍ରୟୋଗ ଦ୍ୱାରା ମୁଦ୍ରଣର ମାନକୁ ଉନ୍ନତ କରି ହେବ, ମାତ୍ର ନିର୍ଦ୍ଦିଷ୍ଟ ସମୟରେ କାର୍ଯ୍ୟ ସମ୍ପାଦନ କରିବା ନିମନ୍ତେ ଅନ୍ୟପ୍ରକାର ଦକ୍ଷତା ଲୋଡ଼ା । ମୁଁ କିଛିକାଳ ଶିକ୍ଷାବିଭାଗରେ କାର୍ଯ୍ୟ କରିଥିବା ଯୋଗୁ ମୋ ପାଖକୁ ବହୁ ଅନୁଷ୍ଠାନରୁ ପରୀକ୍ଷା ପ୍ରଶ୍ନ ଛପାହେବାକୁ ଆସୁଥିଲା ସେଗୁଡ଼ିକ ଅତି ଦାୟିତ୍ୱପୂର୍ଣ୍ଣ କାର୍ଯ୍ୟ ଏବଂ ନିର୍ଦ୍ଦିଷ୍ଟ

ସମୟରେ ଦେଇ ନ ପାରିଲେ ଗୁରୁତର ବିଭ୍ରାଟ ସୃଷ୍ଟି ହେବାର ସମ୍ଭାବନା । ଏ ସବୁକୁ ବିଚାର କରି ମୁଁ ପ୍ରେସର ପ୍ରତ୍ୟେକ କାର୍ଯ୍ୟର ତତ୍ତ୍ୱାବଧାନ କରିବା ସଙ୍ଗେ ସଙ୍ଗେ ନିଜର ଇଚ୍ଛା ଅନୁଯାୟୀ କେତେକ କର୍ମଚାରୀଙ୍କୁ ତାଲିମ୍ ଦେବାର ବ୍ୟବସ୍ଥା କଲି ।

ପରୀକ୍ଷା ପ୍ରଶ୍ନ ଓ ସ୍କୁଲ କଲେଜର ପାଠ୍ୟପଞ୍ଜିକା ଛାପିବା ହେଲା ମୋ ପ୍ରେସର ପ୍ରଧାନ କାମ । ସେଥିପାଇଁ ଓଡ଼ିଆ, ଇଂରାଜୀ, ହିନ୍ଦୀ, ସଂସ୍କୃତ ଓ ବଙ୍ଗଳା ଜ୍ଞାନର ପ୍ରୟୋଜନ । ଉର୍ଦ୍ଦୁ କାମ ଖୁବ୍ କମ୍ ଆସୁଥିଲା, ତେଣୁ ତାକୁ ଅନ୍ୟତ୍ର ଛପାଇ ନେଉଥିଲି । ଛାପା ଦେବନାଗରୀ ଓ ବଙ୍ଗଳା ଅକ୍ଷର ପୂର୍ବରୁ ପଢ଼ି ଜାଣିଥିଲେ ସୁଦ୍ଧା ସେହି ଭାଷାର ହସ୍ତଲିପି ପଢ଼ିବାରେ ମୁଁ ଅଭ୍ୟସ୍ତ ନ ଥିଲି, ମାତ୍ର ଅଳ୍ପଦିନ ଭିତରେ ସେ ବିଦ୍ୟା ଅଭ୍ୟାସ କରିନେଲି ।

ତା ପରେ ଉପରୋକ୍ତ ପାଞ୍ଚୋଟି ଭାଷାରେ କମ୍ପୋଜ କାମ ନିଜେ ଶିଖି କେତେକ ପିଲାଙ୍କୁ ତାଲିମ କରିନେଲି । ମୋ ଶିଖାଇବା ପ୍ରଣାଳୀ ସ୍ୱତନ୍ତ୍ର ଥିଲା । ଖୁବ୍ ଅଳ୍ପ ସମୟ ଭିତରେ ସେମାନେ ସାଧାରଣ ଭାବରେ ଅକ୍ଷର ଖଞ୍ଜି କିଛି କିଛି ରୋଜଗାର କରିପାରୁଥିଲେ । କେବଳ କମ୍ପୋଜ କାମ ଶିଖି ମୁଁ ଯେ ନିଶ୍ଚିନ୍ତ ରହିଲି, ତାହା ନୁହେଁ, ଟ୍ରେଡ଼ଲ୍ ଏବଂ ଫ୍ଲାଟ୍‌ବେଡ୍ ମେସିନ୍‌ରେ ଛାପାକାମ ମଧ୍ୟ ଶିଖିଲି । ଏହି ବିଦ୍ୟାଗୁଡ଼ିକ ଶିଖିବା ଦ୍ୱାରା ପ୍ରେସ ପରିଚାଳନାରେ ଅନେକ ପ୍ରକାର ସୁବିଧା ହେଲା । ପ୍ରଥମରେ, କର୍ମଚାରୀଙ୍କର ଅଭାବ ଘଟିଲେ ଅଳ୍ପଦିନ ଭିତରେ ମୁଁ ନୂଆ କର୍ମଚାରୀ ତାଲିମ କରିପାରୁଥିଲି । ଦ୍ୱିତୀୟରେ, ମୋତେ ମ୍ୟାନେଜର କିମ୍ବା କମ୍ପୋଜିଟର ଏଣ୍ଡ ତେଣୁ କୈଫିୟତ୍ ଦେଇ ଠକିପାରୁ ନ ଥିଲେ । ତୃତୀୟରେ, ଅତି ଜରୁରୀ କାମ ବେଳେ କୌଣସି କର୍ମଚାରୀ ଅନୁପସ୍ଥିତ ରହିଲେ ମୁଁ ସେ କାମ ନିଜେ ଚଳାଇ ନେଉଥିଲି । ଚତୁର୍ଥରେ, ମୁଁ ସେମାନଙ୍କ ସଙ୍ଗରେ ମିଶି ମଝିରେ ମଝିରେ କାମ କରୁଥିବା ଯୋଗୁ କର୍ମଚାରୀଙ୍କ ମନରୁ ନ୍ୟୂନଭାବ ଦୂର ହେଉଥିଲା ।

ଦୁଃଖର କଥା, ଆମ ଦେଶରେ 'ଶ୍ରମର ଗୌରବ' କେବଳ ଉପଦେଶ ଓ ବକ୍ତୃତାର ସାମଗ୍ରୀ ହୋଇ ରହିଛି । ପାଶ୍ଚାତ୍ୟ ଢଙ୍ଗରେ ଶିକ୍ଷାପ୍ରାପ୍ତ ଆମର ଯୁବକଗୋଷ୍ଠୀ ଦୈହିକ ଶ୍ରମ କରିବାକୁ କୁଣ୍ଠାବୋଧ କରୁଛନ୍ତି । ସେମାନେ ଭୁଲି ଯାଉଛନ୍ତି ଯେ ପ୍ରଗତିଶୀଳ ସେହି ପାଶ୍ଚାତ୍ୟ ଦେଶମାନଙ୍କରେ କୌଣସି ଶ୍ରମକୁ ହେୟ ମନେ କରାଯାଏ ନାହିଁ । ଥରେ ମୁଁ ମୁଦ୍ରଣ ଯନ୍ତ୍ରରେ ଛାପୁଥିଲାବେଳେ ପ୍ରେସର ମ୍ୟାନେଜର ମୋ ପାଖକୁ ଆସି ବଡ଼ ସନ୍ତର୍ପଣରେ ଚୁପ୍ ଚାପ୍ କହିଲେ, "ସାର୍, ଗଙ୍ଗାଧର ମେହେର କଲେଜର ପ୍ରିନ୍‌ସିପାଲ ଆପଣଙ୍କୁ ଖୋଜୁଛନ୍ତି ।" ବିଶିଷ୍ଟ ଅତିଥିଙ୍କ ଜାଣିବା ପୂର୍ବରୁ ମୁଁ କିପରି ଏ ଲଜ୍ଜାଜନକ କାର୍ଯ୍ୟରୁ ଉଠିଯାଏଁ, ଏହା ତାଙ୍କର ଅଭିପ୍ରାୟ ଥିଲା । କିନ୍ତୁ ମୁଁ ତାଙ୍କୁ ଅଧିକ ଆଶ୍ଚର୍ଯ୍ୟାନ୍ୱିତ କରି କହିଲି,

"ପ୍ରିନ୍‌ସିପାଲ ମହାଶୟଙ୍କୁ ଏଠାକୁ ଡାକିଦିଅ । ମୁଁ କପିଟି ଛୁପିଯାଉଛି, ସେ ଦେଖନ୍ତୁ ।"

କହିବା ବାହୁଲ୍ୟ, ଅଧ୍ୟକ୍ଷ ମହୋଦୟ ମୋତେ ମୁଦ୍ରଣେନ୍ତରେ ଛପୁଥିବାର ଦେଖି ଆଶ୍ଚର୍ଯ୍ୟ ହେଲେ ସତ, କିନ୍ତୁ ମୁଁ ନିମ୍ନାକର କାର୍ଯ୍ୟରେ ବ୍ୟାପୃତ ରହିଛି ବୋଲି ମନେ କଲେ ନାହିଁ । ମୁଁ ଏହିପରି ଅନେକ ଥର କର୍ମଚାରୀମାନଙ୍କ ସଙ୍ଗରେ ମିଶି ପ୍ରେସର ବିଭିନ୍ନ ବିଭାଗର କାର୍ଯ୍ୟ ଅଭ୍ୟାସ କରି ନେଇଥିଲି । କିଏ କଣ ଭାବୁଛି ବା ଭାବିବ, ଏ ଚିନ୍ତାରେ ମୁଁ କେବେ ବିଚଳିତ ହୋଇନାହିଁ ।

## ପାରିବାରିକ ଘଟଣାବଳୀ

ଭିଙ୍ଗାରପୁର ଗୃହର ଗୃହ କଟକ ଆସିବା ସମୟରେ ମୋର ଆଉ ଗୋଟିଏ କନ୍ୟା ଜାତ ହୋଇଥିଲା । ତାର ନାଁ ସୁଷମା । ୧୯୪୯ ମସିହାରେ ମୋର ଜ୍ୟେଷ୍ଠା କନ୍ୟା ପ୍ରଭାତୀର ବିବାହ ପାଇଁ ପ୍ରସ୍ତୁତ ହେବାକୁ ପଡ଼ିଲା । ମୋ ଜୀବନରେ ନିର୍ମିତିଟିଏ କରିବା ଏହା ପ୍ରଥମ । ଏହା ପୁଣି କନ୍ୟାର ବିବାହ ଏବଂ କଟକରେ ଅନୁଷ୍ଠିତ ହେବ । ଏଥି ପୂର୍ବରୁ ପରିବାରର ଯାବତୀୟ ନିର୍ମିତି କାର୍ଯ୍ୟ ମୋର ଭାଇ ଓ କୁଟୁମ୍ବଙ୍କ ସହାୟତାରେ ଗ୍ରାମରେ ହେଉଥିଲା । ମୋ ଉପରେ ବିଶେଷ ଦାୟିତ୍ୱ ପଡ଼ୁ ନ ଥିଲା । କିନ୍ତୁ ପ୍ରଭାତୀ ବିବାହର ପୂର୍ଣ୍ଣ ଦାୟିତ୍ୱ ମୋ ଉପରେ ପଡ଼ିବ । ଏହା ଭାବି ବିଚଳିତ ହୋଇପଡ଼ିଲି । ଏହି ଚିନ୍ତାରେ ବିବ୍ରତ ହେବା ଫଳରେ ବିବାହର ପନ୍ଦରଦିନ ପୂର୍ବରୁ ମୁଁ ଶ୍ୱାସରୋଗର ପ୍ରଥମ ଆଘାତ ଅନୁଭବ କଲି ।

ସୁଖର କଥା, ଦୁଇ ତିନି ଦିନ ପରେ ଆରୋଗ୍ୟ ଲାଭ କରି ନିର୍ମିତି କାର୍ଯ୍ୟରେ ଲାଗିପଡ଼ିଲି । ଭୁବନେଶ୍ୱରର ଶ୍ରୀ ବାସୁଦେବ ତ୍ରିପାଠୀଙ୍କ ସହିତ ପ୍ରଭାତୀର ବିବାହ ସମ୍ପନ୍ନ ହେଲା । ସେ ବି.ଏ. ପାସ୍ କରି ସେତେବେଳେ ଭୁବନେଶ୍ୱର ହାଇସ୍କୁଲରେ ଶିକ୍ଷକତା କରୁଥିଲେ ।

ସେହି ବର୍ଷ ଅପ୍ରେଲ ମାସରେ ଲତା ଜନ୍ମ ହେଲା । ସେ କିନ୍ତୁ ତାର ପ୍ରଥମ ଜନ୍ମ ଦିବସ ନ ଦେଖୁଣୁ ତା ଜୀବନର ଦଶମ ମାସରେ ଆମ ପରିବାରରୁ ଅନ୍ତର ହୋଇ ଏକ ନୂଆ ସଂସାରକୁ ଚାଲିଗଲା । ମୋର ଶ୍ୟାଳକ ବାଳମୁକୁନ୍ଦର ସେତେବେଳେ-ପର୍ଯ୍ୟନ୍ତ କୌଣସି ସନ୍ତାନସନ୍ତତି ହୋଇ ନ ଥିବାରୁ ତାର ପତ୍ନୀ ଲତାକୁ ପୋଷ୍ୟ କରିନେଲେ । ସେହିଦିନଠାରୁ ସେ ମାମୁଘରେ ରହି ତାର ଆଈ ଓ ମାଈଁଙ୍କଦ୍ୱାରା ଲାଳିତ ପାଳିତ ହେଲା ।

୧୯୫୧ ବର୍ଷଟି ମୋ ପାରିବାରିକ ଜୀବନରେ ବିଶେଷ ଦୁଃଖଦାୟକ । ମୋର ସ୍ନେହମୟୀ ଜନନୀ ସେହି ବର୍ଷ ଆମ୍ଭମାନଙ୍କୁ ଛାଡ଼ି ଚିରଦିନପାଇଁ ଅମର ଧାମକୁ ଚାଲିଗଲେ । ମୁଁ କଟକରେ ଥିବାରୁ ମୃତ୍ୟୁପୂର୍ବରୁ ତାଙ୍କର ଶେଷ ଦର୍ଶନ ସୁଦ୍ଧା ପାଇପାରିଲି ନାହିଁ ।

୧୯୫୨ ରେ ସୁରଭି ଏବଂ ତାର ଦୁଇବର୍ଷ ପରେ ମୋର କନିଷ୍ଠା କନ୍ୟା ମମତାର ଜନ୍ମ । ବଡ଼ ଝିଅ ‧ ପ୍ରତିଭା ବ୍ୟତୀତ ଆଉ ସମସ୍ତେ ଯଥାବିଧ ସ୍କୁଲ କଲେଜରେ ଶିକ୍ଷାଲାଭ କରିଛନ୍ତି । ଦ୍ୱିତୀୟା କନ୍ୟା ପୁଷ୍ପର ମାଟ୍ରିକ୍ୟୁଲେଶନ ପରୀକ୍ଷା ଆମ ପରିବାରର ଏକ ସ୍ମରଣୀୟ ଘଟଣା । ସେ ଦ୍ୱିତୀୟ ଶ୍ରେଣୀରେ ପାସ୍ କରିଥିଲେ ବି ଆମେ ତାର ଫେଲ ସମ୍ବାଦ ପାଇ କିପରି ଆଠଘଣ୍ଟା କାଳ ମର୍ମାହତ ହୋଇ ପଡ଼ିଥିଲୁ, ତାହା ଭାବିଲେ ନିୟତିର ଅଲଂଘ୍ୟ ବିଧାନକୁ ଅସ୍ୱୀକାର କରି ହୁଏ ନାହିଁ । ଯେଉଁଦିନ କଟକରେ ପରୀକ୍ଷା ଫଳ ପ୍ରକାଶ ପାଇଲା, ମୁଁ ସେଦିନ ଅପରାହ୍ନ ପ୍ରାୟ ୨ଟା ବେଳେ ପ୍ରେସ ଅଫିସରେ ବସିଛି, ଜଣେ କମ୍ପୋଜିଟର ତାଙ୍କ ବସାରୁ ଫେରି ମୋତେ କହିଲେ, "ମାଟ୍ରିକ ଫଳ କାଗଜରେ ବାହାରି ଗଲଣି, କିନ୍ତୁ ପୁଷ୍ପ ନାମ ତ କାହିଁ ବାହାରି ନାହିଁ ।" ସେ 'ପ୍ରଜାତନ୍ତ୍ର' ପଢ଼ି ଆସି ଥିବାର କହିଲେ । ତାଙ୍କ କଥାକୁ ଅବିଶ୍ୱାସ କରିବାର କାରଣ ନ ଥିଲା, କାରଣ ସେ ମୋର ଜଣେ ପୁରାତନ ଛାତ୍ର ଏବଂ ସମ୍ପର୍କୀୟ ବନ୍ଧୁ ।

ଅଳ୍ପ ସମୟ ପରେ 'ମାତୃଭୂମି' ପତ୍ରିକାବିକାଳି ଦାଣ୍ଡରେ 'ପରୀକ୍ଷାଫଳ' ଡାକ ଡାକ ଗଲା, କିନ୍ତୁ ଝିଅର ଫେଲ ଖବର ଶୁଣିବା ପରେ ଆଉ ସେ 'ପରୀକ୍ଷାଫଳ' ପଢ଼ିବାକୁ ମୋର ବା ମୋ ପରିବାରର କାହାରି ଆଗ୍ରହ ନ ଥିଲା । ସାଇପଡ଼ିଶାର ବନ୍ଧୁମାନେ ସମସ୍ତେ 'ମାତୃଭୂମି' ପତ୍ରିକାରୁ ପୁଷ୍ପର ପାସ୍ ଖବର ପାଇଗଲେ ମାତ୍ର ଆମ୍ଭେମାନେ ଯେ ଭୁଲ ସମ୍ବାଦ ପାଇ କେଣଯାକ ଶୋକାକୁଳ ହୋଇ ରହିଛୁ, ତାହା ସେମାନେ ଜାଣିବେ ବା କିପରି ? ସନ୍ଧ୍ୟା ହେଲା । ପୁଷ୍ପ ଭୂଇଁ ଉପରେ ଶୋଇ ନୀରବରେ ଅଶ୍ରୁମୋଚନ କରୁଥାଏ । ତାର ଭଉଣୀମାନେ ଯେ ସେହିପରି ଦୁଃଖରେ ମ୍ରିୟମାଣ ହୋଇ ବସିଥାନ୍ତି । ମୁଁ ଓ ମୋ ସ୍ତ୍ରୀ ପୁଷ୍ପକୁ ସାନ୍ତ୍ୱନା ଦେବାରେ ଲାଗିଥାଉ । ପଡ଼ିଶାର ଜଣେ ଭଦ୍ରଲୋକ 'ମାତୃଭୂମି' କାଗଜରୁ ପରୀକ୍ଷାଫଳ ଦେଖି ପୁଷ୍ପକୁ ମିଠେଇ ମାଗିବାକୁ ଆସିଥିଲେ, ମାତ୍ର ଆମ ସମସ୍ତଙ୍କ ମୁହଁରେ ବିଷାଦର ଛାୟା ଦେଖି କଣ ମନରେ ଭାବି ଫେରିଗଲେ ।

ରାତି ହେଲା । ରୋଷେଇବାସ ବା ଖିଆପିଆର ଆୟୋଜନ କରିବାକୁ କାହାରି ସ୍ପୃହା ନ ଥାଏ । ଛୋଟ ପିଲାଗୁଡ଼ିକ ଉପବାସରେ ଶୋଇଗଲେ । ରାତି ୯ଟା ବେଳକୁ ମୁଁ ଦାଣ୍ଡଘରେ ବସିଛି, 'ସମାଜ' ବିକାଳି ପତ୍ରିକା ଖଣ୍ଡେ ଝରକାବାଟେ ବଢ଼ାଇ ଦେଲା । ପ୍ରଥମ ପୃଷ୍ଠାରେ ପରୀକ୍ଷାଫଳ । ତାକୁ ଫିଟାଇ ପଢ଼ିବାକୁ ମୋର ଆଗ୍ରହ ନ ଥାଏ । ଟେବୁଲ ଉପରେ ପଡ଼ିଥିବା ସେଇ କାଗଜରେ ଅନିଚ୍ଛାକ୍ରମେ ଆଖି ବୁଲାଉ ବୁଲାଉ ରେଭେନ୍ସା ବାଳିକା ବିଦ୍ୟାଳୟର ପରୀକ୍ଷା ଫଳ ମୋ ଦୃଷ୍ଟିରେ ପଡ଼ିଗଲା ଏବଂ ୨ୟ ଶ୍ରେଣୀ ତାଲିକାରେ 'ପୁଷ୍ପରାଣୀ ନନ୍ଦ'ର ନାମ ଦେଖି ମୁଁ ଚମକି ପଡ଼ିଲି । ଆଖିକୁ ବିଶ୍ୱାସ କରି ପାରିଲି ନାହିଁ । ଆଉ ଥରେ, ପୁଣି ଥରେ ଭଲ କରି ପଢ଼ିଲି ।

ଧାଇଁ ଯାଇ ଘରେ ଖବର ଦେଲ—'ସମାଜ'ରେ ପୁଷ୍ପ ନାମ ବାହାରିଛି' । ମୃତ ପରିବାର ଜୀବନ୍ୟାସ ପାଇ ଆନନ୍ଦରେ ନାଚି ଉଠିଲ । କିନ୍ତୁ ପୁଷ୍ପ ବିଶ୍ୱାସ କରୁ ନ ଥାଏ । ସେ କହୁଥାଏ, "ମୋତେ ଭୁଲାଇବା ପାଇଁ କନା ପ୍ରେସରେ ମୋ ନାଁ ଛାପି ଆଣିଛନ୍ତି ।" ଅନେକ ସମୟ ପରେ ସେ ବୁଝିଲ । ଯାଇ ପଡ଼ିଶାର ଲୋକମାନେ ଏ କଥା ଶୁଣି ଆଶ୍ଚର୍ଯ୍ୟ ହୋଇ କହିଲେ, "ଦିନ ୨ଟା ବେଳୁ ଆମ୍ଭେମାନେ ଖବରକାଗଜରୁ ପୁଷ୍ପର ପାସ୍ ଖବର ପାଉଛୁଣି । ଅଥଚ ଯାହାଙ୍କର ଅଂଶ ପାଇବା କଥା, ସେ କାନ୍ଦି କାନ୍ଦି ଗଡ଼ୁଛନ୍ତି !" ଘଟଣାର ପ୍ରକୃତ ରହସ୍ୟ ବୁଝିବାରେ ଜଣା ପଡ଼ିଲ ଯେ 'ପ୍ରଜାତନ୍ତ୍ର' କାଗଜରେ ପୁଷ୍ପର ନାମ ଭୁଲକ୍ରମେ ବାହାରି ନ ଥିଲ ଏବଂ ତାକୁଇ ଦେଖି ଉକ୍ତ କମ୍ପୋଜିଟର ମୋତେ ଭୁଲ ସମ୍ବାଦ ଦେଇଥିଲେ ।

ବୋଉଙ୍କ ମୃତ୍ୟୁର ପରବର୍ଷ ମୋର ସାନଭାଇ ରାଧାକୃଷ୍ଣର ମୃତ୍ୟୁ ଆମ୍ଭମାନଙ୍କ ମନରେ ଦାରୁଣ ଆଘାତ ଦେଲ । ମୁଁ ଉପରବେଳା ୪ଟା ବେଳେ ତା ଅସୁସ୍ଥତାର ସମ୍ବାଦ ପାଇ କଟକରୁ ଗୋଟିଏ ମଟରଗାଡ଼ି ଭଡ଼ା କରି ଔଷଧ ପ୍ରଭୃତି ନେଇ ଗ୍ରାମରେ ପହଞ୍ଚିଲ ବେଳକୁ ତାର ଜୀବନଦୀପ ଲିଭିଯାଇଥିଲ । ମୁଁ କେବଳ ତାର ଶବକୁ ଦେଖି ଫେରିଲି ।

## 'ଅତି ସର୍ବତ୍ର, ବାବୁ, ମହା ବିଷମ'

ଦିନକୁ ଦିନ ପ୍ରଜାତନ୍ତ୍ର ପ୍ରେସ ଉନ୍ନତି ପଥରେ ଆଗେଇ ଚାଲିଥାଏ । ମୋର ସକଳ ଶକ୍ତି ଢାଳି ଦେଇ ମୁଁ କିଛିଦିନ ତାର ସୁନାମକୁ ଅକ୍ଷୁଣ୍ଣ ରଖିବା ଦିଗରେ ଯତ୍ନବାନ ହେଲି । ମୋ ଜୀବନରେ ଏତେ ପରିଶ୍ରମ ମୁଁ ଆଉ କେବେ କରିନାହିଁ । ଭୋର ୫ଟାରୁ ରାତି ୧୦ଟା ପର୍ଯ୍ୟନ୍ତ ଖଟିବାକୁ ହୁଏ । ମଝିରେ କେବଳ ନିତ୍ୟକର୍ମ, ସ୍ନାନ ଓ ଭୋଜନ ପାଇଁ ଯେତିକି ଅବ୍ୟାହତି ମିଳେ । ବେଳେ ବେଳେ ସେଇ ଅଫିସ ଘରେ ବସି ଜଳଖିଆ ଦି'ଟା କରିଦିଏ । ମଧ୍ୟାହ୍ନରେ ବି ବିଶ୍ରାମ ନିଏ ନାହିଁ । ଦିନେ ଗୋସ୍ୱାମୀ ପ୍ରେସର ଅନ୍ୟତମ ପ୍ରତିଷ୍ଠାତା ସ୍ୱର୍ଗତ ହରିଗୋପାଳ ଦାସ ମୋତେ ଖିଆବେଳେ ଅଫିସରେ କାର୍ଯ୍ୟରତ ଥିବାର ଦେଖି ଆଶ୍ଚର୍ଯ୍ୟ ହୋଇ ପଚାରିଲେ, "ଆପଣ କଣ ଖିଆବେଳେ ବି ଟିକିଏ ବିଶ୍ରାମ ନିଅନ୍ତି ନାହିଁ ?" ମୁଁ କହିଲି, "ନା, ଗଦା ଗଦା ପ୍ରୁଫ୍ ଦେଖିବାକୁ ପଡ଼ୁଛି, ବିଶ୍ରାମ ପାଇଁ ବେଳ କାହିଁ ? ଆପଣ କଣ ପ୍ରୁଫ୍ ଦେଖନ୍ତି ନାହିଁ ?" ସେ କହିଲେ, "ତା ହେଉଥିଲେ ମୋର ବୃନ୍ଦାବନଯାତ୍ରା କିପରି ସମ୍ଭବ ହୁଅନ୍ତା ? ଯେତିକି ପାରୁଛି କରୁଛି, ଅନ୍ୟ ସବୁ ସହକାରୀଙ୍କ ଉପରେ ଛାଡ଼ି ଦେଉଛି । ଆମେ ତ ଆପଣଙ୍କ ପରି ଏତେ ଦାୟିତ୍ୱପୂର୍ଣ୍ଣ କାମ ଧରିନାହୁଁ । ସରକାରୀ ଫର୍ମ ଆଦି ଛାପୁଛୁ ।" ତା ପରେ ହସି ହସି କହିଲେ, "ଆମେ ଲୁହାରୁ ପଇସା ବାହାର କରୁଛୁ, ଆପଣ ମୁଣ୍ଡରୁ ପଇସା ବାହାର କରୁଛନ୍ତି । ଏତେ ପରିଶ୍ରମ କଲେ କେତେଦିନ ବଞ୍ଚିବେ ?"

ତାଙ୍କର ଚେତାବନୀ ବାସ୍ତବକେ ମୋର ଆଖି ଖୋଲିଦେଲା । ତେବେ ସେ ଯେପରି ସହକାରୀଙ୍କ ଉପରେ ନିର୍ଭର କରି ବୃନ୍ଦାବନ ଚାଲିଯିବା କଥା କହିଲେ, ମୋ ପକ୍ଷରେ ତାହା ସମ୍ଭବ ହେବ ନାହିଁ ବୋଲି ଭାବିଲି । ମୋ ଅଫିସରେ ଚାରିଜଣ ସହକାରୀ ଥିଲେ ସୁଦ୍ଧା ଅଧ୍ୟକ୍ଷ, ଅଧ୍ୟାପକ ଓ ପ୍ରଧାନ ଶିକ୍ଷକମାନେ ପ୍ରେସକୁ ଆସିବାମାତ୍ରେ ମୋତେ ଖୋଜୁଥିଲେ । ବର୍ଷରେ ପ୍ରାୟ ଛଅମାସ ପରୀକ୍ଷା ପ୍ରଶ୍ନ ଛପା ଚାଲିଥିବାରୁ ମୋର ଉପସ୍ଥିତି ଅପରିହାର୍ଯ୍ୟ ମନେ ହେଉଥିଲା ଏବଂ ମୁଁ ଅସୁସ୍ଥ ବା ଅନୁପସ୍ଥିତ ରହିଲେ ପ୍ରେସର କାର୍ଯ୍ୟ ସ୍ଥଗିତ ରଖାଯାଉଥିଲା ।

ମୋର ଏତେଗୁଡ଼ିଏ କନ୍ୟା । କଠୋର ସାମାଜିକ ଦାୟିତ୍ୱ । ପାଠଶାଠ ପଢ଼ିବେ, ବିବାହ ହେବେ, ସେଥିପାଇଁ ଟଙ୍କା ଦରକାର । ଯେତେ କଷ୍ଟକର ହେଲେ ବି ପ୍ରେସ ବ୍ୟବସାୟଟିକୁ ଚାଲୁ ରଖିବାକୁ ହେବ । ତେଣେ ଗ୍ରାମରେ ଯାହା ଜମିବାଡ଼ି ଅଛି, ସେଠାକୁ ମଝିରେ ମଝିରେ ଯାଇ ତଦାରଖ କରିବା ଆବଶ୍ୟକ । ନିଆଳୀ ବସ୍‌କୁ ଆଶ୍ରୟ କଲେ କଟକରୁ ଦୁଇଟି ଦିନ ଅନୁପସ୍ଥିତ ରହିବାକୁ ପଡ଼ୁଛି । ବ୍ୟବସାୟ ସମ୍ପର୍କରେ ମଧ୍ୟ ବିଭିନ୍ନ ସ୍ଥାନକୁ ଯିବା ଦରକାର ହେଉଛି । ସମୟ ମୋ ପକ୍ଷରେ ଅତି ମୂଲ୍ୟବାନ୍ । ସମୟ ବଞ୍ଚାଇବାରେ ଗାଡ଼ି ମୋତେ ଖୁବ୍ ସାହାଯ୍ୟ କରିପାରିବ ଭାବି ଖଣ୍ଡିଏ ପୁରୁଣା ଜିପ୍ କିଣିବାକୁ ସ୍ଥିର କଲି । କଲିକତାରୁ ଛ ହଜାର ଟଙ୍କାରେ ଜିପ୍ ଗାଡ଼ିଟିଏ କିଣାହେଲା । ଏଥିମଧ୍ୟରେ ପ୍ରେସରେ ଟେଲିଫୋନ ବସି ସାରିଥାଏ । ଫୋନ ଓ ଜିପ୍ ଆସିଯିବାରୁ ବ୍ୟବସାୟ ପରିଚାଳନାରେ ବହୁତ ସୁବିଧା ହେଲା ।

ମାଇନର ପାସ୍ କରି କଟକରେ ପଢ଼ୁଥିଲାବେଳେ ଛୁଟିରେ ଚାଲିକରି ଗ୍ରାମକୁ ଯିବାଆସିବା କରୁଥିଲି । କଟକରୁ ଆମ ଗ୍ରାମ ୧୮ ମାଇଲ ବାଟ । ମୋତେ ସେତେବେଳେ ତେର ଚଉଦ ବର୍ଷ ବୟସ । ତା ପରେ କଲେଜରେ ପଢ଼ିଲାବେଳେ ସାଇକେଲ କଲି । ପିଲାମାନେ ସାଥିରେ ଥିଲେ ବଳଦଗାଡ଼ିର ଆଶ୍ରୟ ନେବାକୁ ପଡ଼ୁଥିଲା । ୧୯୪୭ ପରେ ନିଆଳୀ ରାସ୍ତାରେ ବସ୍ ଚାଲିବାକୁ ଆରମ୍ଭ କଲା । ଗୁଆବସ୍ତା ଲୁଣବସ୍ତା ପରି ଖୁନ୍ଦିହୋଇ ସେଥିରେ କିଛିଦିନ ଯିବାଆସିବା କରୁଥିଲୁ । ବର୍ତ୍ତମାନ ଆମେ ନିଜର ଜିପ୍‌ରେ ବସି ଯାଇପାରିଲୁ । ଆମ ଘରେ ଟେଲିଫୋନ୍ ଲାଗିଲା । କଟକରେ ତ ଖଣ୍ଡେ କୋଠାଘର ଆଗରୁ ଥିଲା । ଲୋକଦୃଷ୍ଟିରେ ଆମେ ହଠାତ୍ 'ବଡ଼ଲୋକ' ହୋଇଗଲୁ । ପ୍ରେସ କର୍ମଚାରୀମାନେ ଭାବିଲେ, 'ଲୋକଟା ପ୍ରେସରୁ ପ୍ରଚୁର ଲାଭ କରି ମଟର ଗାଡ଼ି କିଣିଛି ।' ମୁଁ ଏ ପରିବର୍ତ୍ତନକୁ ବିଶ୍ଳେଷଣ କରୁଥାଏ । ଏ 'ବଡ଼ଲୋକ' ସଙ୍ଗେ ଯେତେ ଅଶାନ୍ତି ଓ ଜଞ୍ଜାଳ ଜଡ଼ିତ ରହୁଛି ତାକୁ ନିକଟରେ ତଉଲୁଥାଏ । ମୋ ପରିବାର ଲୋକଙ୍କ ମନର ଭାବକୁ ଲକ୍ଷ୍ୟ କରୁଥାଏ । ମୋ ପ୍ରଥମ ଜୀବନ

ଖୁବ୍ ସାବଧାନତାରେ କହିଛୁ । ଏ 'ଜଳଗହଳ' ମୋ ପକ୍ଷରେ 'ଟମ' ହେବ ନାହିଁ ତ ?

## କଲମ ପୂରାପୂର ବନ୍ଦ

ଲକ୍ଷ୍ମୀ ଓ ସରସ୍ୱତୀ ଏକାଠି ରହିପାରନ୍ତି ନାହିଁ ବୋଲି ବଡ଼ ପୁରୁଷମାନେ କହିଛନ୍ତି । ମୋ ଜୀବନରେ ଏହାର ସତ୍ୟତା ଉପଲବ୍ଧି କରିଛି । ଗୃହଜୀବନର ଅସହାୟତା ଭିତରେ ଏବଂ ଶିକ୍ଷକଜୀବନର ଦୈନ୍ୟ ଭିତରେ ଯାହା କିଛି ଲେଖାଲେଖି କରିଥିଲି, ସେତିକି । ଏ ଦୀର୍ଘ ପନ୍ଦର ବର୍ଷ ମୁଁ ସରସ୍ୱତୀଙ୍କୁ ପୂରାପୂରି ଭୁଲିଗଲି । 'ସଂସାର' ପତ୍ରିକାର ଶୁଷ୍କ ତଥ୍ୟଜାଲ ଭିତରେ ରସାଳ ସାହିତ୍ୟର ଆସ୍ୱାଦନ ପାଇଁ ଅବକାଶ ନ ଥାଏ । ବର୍ଷେ ଦୁଇବର୍ଷ ନ ଯାଉଣୁ ଗୋଟିଏ ଗୋଟିଏ ଝିଅର ବିବାହ, ସେଥିପାଇଁ ଅର୍ଥସଂଗ୍ରହ ଏବଂ ଆନୁଷଙ୍ଗିକ ଆୟୋଜନ କରିବାକୁ ହୁଏ । 'ଶ୍ରେଷ୍ଠ ପରିବାର, ସୁଖୀ ପରିବାର'—କଥାଟା ବାସ୍ତବିକ କେଡ଼େ ଅର୍ଥପୂର୍ଣ୍ଣ ସତେ !

ଏଥି ମଧ୍ୟରେ ଦ୍ୱିତୀୟା କନ୍ୟା ପୁଷ୍ପର ବିବାହ ପାଇଁ ମୋର ହିତୈଷୀ ବନ୍ଧୁ ଚନ୍ଦ୍ରଶେଖର ମିଶ୍ର ଗୋଟିଏ ପାତ୍ର ଠିକ୍ କରିଦେଲେ । କଟକ ଜିଲ୍ଲା ସାଦେଇପୁରର ଡାକ୍ତର ବଞ୍ଛାନିଧି ଶତପଥୀଙ୍କର ଜ୍ୟେଷ୍ଠ ପୁତ୍ର ସତ୍ୟନାରାୟଣଙ୍କୁ ଜାମାତା ରୂପେ ବରଣ କଲି । ସେ ମଧ୍ୟ ଏମ୍.ବି.ବି.ଏସ୍ ପାଶ୍ କରି ବସ୍ତାରେ ସରକାରୀ ଚାକିରି କରୁଥାନ୍ତି ।

୧୯୫୬ ମେ ମାସ ୧୩ ତାରିଖରେ ପୁଷ୍ପର ବିବାହ ସାରିବା ପରେ ବର୍ଷ ମଧ୍ୟରେ ତୃତୀୟା କନ୍ୟା ବୀଣାର ବିବାହ ପାଇଁ ପ୍ରସ୍ତୁତ ହେବାକୁ ପଡ଼ିଲା । ସୌଭାଗ୍ୟକୁ ତା ପାଇଁ ମଧ୍ୟ ଜଣେ ଡାକ୍ତର ଜୋଇଁ ମିଳିଗଲେ । ଭଦ୍ରକମଧୁ ବିଦ୍ୟାପୀଠର ଶିକ୍ଷକ ଶିବଚନ୍ଦ୍ର ପଣ୍ଡାଙ୍କର କନିଷ୍ଠ ପୁତ୍ର ଇନ୍ଦ୍ରମଣିଙ୍କ ସହିତ ବୀଣାର ବିବାହ ଅନୁଷ୍ଠିତ ହୋଇଗଲା । ତିନୋଟି କନ୍ୟାଙ୍କର ବିବାହ ଓ ଚତୁର୍ଥପାଇଁ ଆର୍ଥିକ ପ୍ରସ୍ତୁତି ହୋଇସିବାପରେ ମୋ ମନରେ ଭାବାନ୍ତର ଉପସ୍ଥିତ ହେଲା । ମୁଁ ଭାବିଲି, 'ମୁଁ କେଉଁଆଡ଼କୁ ଗତି କରୁଛି ? ପ୍ରେସ ବ୍ୟବସାୟକୁ ବଢ଼ାଇ କେବଳ ଅର୍ଥୋପାର୍ଜନ କରିବା କଣ ମୋର ଏକମାତ୍ର କାମ୍ୟ ? ଯେଉଁ ବ୍ୟବସାୟ ମୋତେ ଓଳିକ ପାଇଁ ଅବ୍ୟାହତି ଦେଇ ପାରୁନାହିଁ, ମୋର ଶକ୍ତି ସାମର୍ଥ୍ୟ ସଙ୍କୁଚିତ ହୋଇଆସିବା ପରେ ସେ ବ୍ୟବସାୟର ଭବିଷ୍ୟତ କଣ ହେବ ?

ମ୍ୟାନେଜର ଓ ସହକାରୀମାନଙ୍କ ଉପରେ ପ୍ରେସର ଦାୟିତ୍ୱ ଛାଡ଼ିଦେଇ ମୁଁ ଲେଖାପଢ଼ାରେ ମନୋନିବେଶ କଲି । କର୍ମଚାରୀମାନଙ୍କ ସଙ୍ଗେ ପୂର୍ବପରି ପ୍ରତ୍ୟକ୍ଷ ସମ୍ପର୍କ ନ ରଖି କେବଳ ମ୍ୟାନେଜରଙ୍କୁ ସାମୟିକ ନିର୍ଦ୍ଦେଶ ଦେଉଥାଏ ଏବଂ ଶେଷ

ପ୍ରୁଫ୍‌ତକ ସଂଶୋଧନ କରିଦେଉଥାଏ । କିନ୍ତୁ ଅଳ୍ପଦିନଭିତରେ କର୍ମଗୃରୀ ଓ ମ୍ୟାନେଜରଙ୍କ ଭିତରେ ବିଭେଦ ଆରମ୍ଭ ହୋଇଗଲା । ସେ ଭିତ୍ତାଓଟଗ୍ଧି ଭିତରେ ଅନ୍ୟାନ୍ୟ ଛପାକାମ ତ ବନ୍ଦ ହେଲା, ମୋ 'ସଂସାର' ପତ୍ରିକାଖଣ୍ଡ ମଧ୍ୟ ନିର୍ଦ୍ଦିଷ୍ଟ ତାରିଖରେ ଛପା ହୋଇ ପାରିଲା ନାହିଁ । କର୍ମଗୃରୀମାନେ ମୋତେ କିଛି ନ ଜଣାଇ ସରକାରଙ୍କ ଶ୍ରମବିଭାଗ ଆଗରେ ସେମାନଙ୍କ ଆପତ୍ତି ଅଭିଯୋଗ ଉପସ୍ଥାପିତ କଲେ ।

ଏହି ସମୟରେ ଗୋଟିଏ ଅବାଂଚ୍ଛିତ ଘଟଣା ଘଟି ମୋର ମନର ତିକ୍ତତାକୁ ଆହୁରି ଦ୍ୱିଗୁଣିତ କରିଦେଲା । ଦିନେ ମୁଁ ମୋ ପ୍ରକୋଷ୍ଠରେ ବସିଛି, ଶୁଣିଲି ସରକାରଙ୍କ ଶ୍ରମବିଭାଗର ଦୁଇଜଣ ତରୁଣ କର୍ମଗୃରୀ ପ୍ରେସରେ ପ୍ରବେଶ କରି କମ୍ପୋଜିଟରମାନଙ୍କ ମାଖରୁ କଣ ସବୁ ତଥ୍ୟ ସଂଗ୍ରହ କରୁଛନ୍ତି । ଗୋଇନ୍ଦା ବିଭାଗୀୟ ପୋଲିସ ଭଳି ଅନୁସନ୍ଧାନ ଚଳାଇଲାପରି ସେମାନେ ଅଗ୍ରିମ କ ଆସି ହାଜରି ହୋଇଛନ୍ତି ମୋ ପ୍ରେସରେ, କିନ୍ତୁ ସାଧାରଣ ଶିଷ୍ଟାଚାର ରକ୍ଷା କରି ପରିଗୃଳକ ବା ସ୍ୱତ୍ୱାଧିକାରୀଙ୍କ ଅନୁମତି ନେବାକୁ ମଧ୍ୟ ଇଚ୍ଛା କରିନାହାନ୍ତି । ମୁଁ ଭାବିଲି—'ସ୍ୱାଧୀନ ବୃତ୍ତିରେ କଣ ଏଇ ମୋର ସ୍ୱାଧୀନତା ! ମୁଁ ସ୍କୁଲର ହେଡ଼ମାଷ୍ଟର ଥିଲାବେଳେ ଯେ କୌଣସି ପଦସ୍ଥ ସରକାରୀ କର୍ମଚାରୀ ଆସିଲେ ପ୍ରଥମେ ମୋ ସଙ୍ଗେ ଦେଖା କରୁଥିଲେ ଏବଂ ତାପରେ ମୋତେ ସଙ୍ଗରେ ନେଇ ସ୍କୁଲ ପରିଦର୍ଶନ କରୁଥିଲେ । ସେତେବେଳେ ମୁଁ ପରାଧୀନ ଥିଲି । ବର୍ତ୍ତମାନ ନିଜ ଘରେ ନିଜ ଉଦ୍ୟମ ଓ ମୂଳଧନ ଖଟାଇ ଏକ ସ୍ୱାଧୀନ ବ୍ୟବସାୟ କରିଛି । ଅଥଚ ମୋତେ ଚୋର ଡକାଏତଙ୍କ ପରି ମନେ କରି ମୋ ଅଜ୍ଞାତରେ ମୋ ଘରେ ପଶି ଏମାନେ ମୋ କର୍ମଗୃରୀଙ୍କ ମଙ୍ଗଳ ବିଧାନ କରିବାକୁ ତତ୍ପର ! କିଛି ସମୟ ପରେ ସେ ଦୁଇଜଣ ଯୁବକ ମୋ ପାଖକୁ ଆସି ମୋତେ କେତେକ କଥା ପଚାରିଲେ । କହିବା ବାହୁଲ୍ୟ, ସେମାନଙ୍କ ବ୍ୟବହାରରେ ଭଦ୍ରତାର ନାମଗନ୍ଧ ବି ନ ଥିଲା । ବ୍ରିଟିଶ ଯୁଗର ନୌକରୀ ମନୋବୃତ୍ତି ଯେମିତି ଏମାନେ ସାଧାରଣ ଲୋକଙ୍କୁ ଏପର୍ଯ୍ୟନ୍ତ ନାଲି ଆଖି ଦେଖାଇବା ଛାଡ଼ିନାହାନ୍ତି । ଗଣତନ୍ତ୍ର ଶାସନରେ ସରକାରୀ କର୍ମଗୃରୀଙ୍କର ଭୂମିକା କିପରି ହେବା ଉଚିତ, ତାହା ଶିଖିବାକୁ ଏମାନଙ୍କୁ ବହୁଦିନ ଲାଗିବ ।

ଯେଉଁ କର୍ମଗୃରୀଙ୍କୁ ସାଥିରେ ନେଇ ମୁଁ ପନ୍ଦର ବର୍ଷକାଳ ସୁରୁଖୁରୁରେ ପ୍ରେସ ଚଳାଇ ଆସିଥିଲି, ସେମାନଙ୍କର 'ମଙ୍ଗଳ' ବିଧାନ କରିବା ଉଦ୍ଦେଶ୍ୟରେ ସରକାରଙ୍କ ଦ୍ୱାରା ପ୍ରେରିତ ଏହି ସୁଟ୍‌ପିନ୍ଧା ବାବୁମାନଙ୍କୁ ଦେଖି କେତେକ କର୍ମଗୃରୀ ମନେକଲେ ସେମାନଙ୍କ ଆଗରେ ମହାରାଜା ଅଶୋକଙ୍କର 'ରାଜୁକ'ଗଣ ଦେହାନ୍ତର ଧାରଣ କରି ଉପସ୍ଥିତ ହୋଇଅଛନ୍ତି । ଅଚିରେ ସେମାନଙ୍କର ଭାଗ୍ୟ ବଦଳିଯିବ । ସେମାନଙ୍କ ଗତିବିଧିରୁ ଜାଣିପାରିଲି ଏ ତୃତୀୟ ପକ୍ଷର ହସ୍ତକ୍ଷେପକୁ ସେମାନେ ଖୁବ୍ ପସନ୍ଦ କରୁଛନ୍ତି । ତେଣୁ ମୁଁ ଏହାର ପରିଣତି ଦେଖିବା ଅପେକ୍ଷାରେ ପ୍ରେସର ପ୍ରତ୍ୟକ୍ଷ ପରିଗୃଳନା ଦାୟିତ୍ୱରୁ ଆଡ଼େଇହୋଇ ରହିଗଲି । ମୋର ଯେଉଁ ଧନ

ଗୃହଜଣ ସହକାରୀ ଥିଲେ, ସେମାନଙ୍କ ଉପରେ ସମସ୍ତ ଭାର ସମର୍ପିଦେଇ ମୁଁ ଦୂରରେ ରହି କେବଳ ଲକ୍ଷ୍ୟ କଲି ପ୍ରେସ କପରି ଚାଲିଛି ଏବଂ ସରକାରଙ୍କ ଶ୍ରମବିଭାଗ କର୍ମଚାରୀମାନେ ଶ୍ରମିକମାନଙ୍କର କେତେ ଉଗ୍ରୀ ମଙ୍ଗଳ ବିଧାନ କରିପାରୁଛନ୍ତି ।

## 'ବିଶ୍ୱପରିଚୟ' ସଂକଳନ (୧୯୬୦ —୬୧)

ପ୍ରେସ ଜଞ୍ଜାଳରୁ ମୁକ୍ତ ପାଇ ମୁଁ ଓଡ଼ିଆ ଭାଷାରେ ଗୋଟିଏ ସଂକ୍ଷିପ୍ତ ଅଭିଜ୍ଞାନ ଗ୍ରନ୍ଥ (ଏନ୍‌ସାଇକ୍ଲୋପିଡିଆ) ସଂକଳନ କରିବାରେ ମନ ଦେଲି । ଏଥିପାଇଁ ଆବଶ୍ୟକ ସହାୟକ ପୁସ୍ତକମାନ ସଂଗ୍ରହ କରି ମୋର ପୁତୁରା ଶ୍ରୀମାନ୍ ବ୍ରଜକିଶୋରର ସହାୟତାରେ ମୁଁ ପ୍ରଥମେ ଗୋଟିଏ ଶବ୍ଦସୂଚୀ ତିଆରି କଲି ଏବଂ ତାକୁ ଅନୁସରଣ କରି ପାଣ୍ଡୁଲିପିଟି ପ୍ରସ୍ତୁତ କଲି । କିନ୍ତୁ ଏହି ସମୟରେ ଶ୍ରୀ ବିନୋଦ କାନୁନ୍‌ଗୋ ତାଙ୍କ ସୁବୃହତ୍ ଗ୍ରନ୍ଥ 'ଜ୍ଞାନମଣ୍ଡଳ'ର ଅସୁମାରମ୍ଭ କରୁଥାନ୍ତି ଏବଂ ଉତ୍କଳବିଶ୍ୱବିଦ୍ୟାଳୟ ଡକ୍ଟର ମାୟାଧର ମାନସିଂହଙ୍କ ତତ୍ତ୍ୱାବଧାନରେ 'ଜ୍ଞାନକୋଷ'ର ସଂକଳନ ହାତକୁ ନେଇଥାନ୍ତି । ଏ ଉଭୟ ଗ୍ରନ୍ଥ ପୂର୍ଣ୍ଣାଙ୍ଗପ୍ରାପ୍ତ ହେବାକୁ ଦୀର୍ଘକାଳ ଲାଗିବ ଜାଣି ମୁଁ ମୋ ବହିଟିକୁ ଶୀଘ୍ର ସମ୍ପୂର୍ଣ୍ଣ କରିବାରେ ଲାଗିପଡ଼ିଲି ଏବଂ ୧୯୬୧ ମସିହାର ମଧ୍ୟଭାଗରେ ଏହାକୁ ମୁଦ୍ରଣୋପଯୋଗୀ କରି ପ୍ରକାଶକଙ୍କ ହାତକୁ ଦେଲି । କଟକ ପବ୍‌ଲିଶିଂ ହାଉସ୍‌ର ପ୍ରୋପ୍ରାଇଟର ଶ୍ରୀ ଉମାଚରଣ ମହାନ୍ତି ଏହାର ପ୍ରକାଶନର ଭାର ଗ୍ରହଣ କଲେ ।

କଟକ ପବ୍‌ଲିଶିଂ ହାଉସ୍ ଏଥିପୂର୍ବରୁ ଏ ଜାତୀୟ କୌଣସି ପୁସ୍ତକ ପ୍ରକାଶ କରି ନ ଥିଲେ, ତେଣୁ ଏହାର ମୁଦ୍ରଣରେ ଯାବତୀୟ ଦାୟିତ୍ୱ ମୋତେ ହିଁ ନେବାକୁ ହୋଇଥିଲା । ମୁଁ ସେତେବେଳେ ପ୍ରେସ ପରିଚାଳନାରେ କୌଣସି କର୍ତ୍ତୃତ୍ୱ ପ୍ରୟୋଗ କରୁ ନ ଥିଲେ ସୁଦ୍ଧା ସହକାରୀମାନଙ୍କୁ ଆବଶ୍ୟକ ପରାମର୍ଶ ଦେଉଥିଲି ଏବଂ ପ୍ରୁଫ୍ ସଂଶୋଧନ କରୁଥିଲି । 'ବିଶ୍ୱପରିଚୟ'ର ମୁଦ୍ରଣ ଅଧାଅଧି ଆଗେଇଯିବା ପରେ ପ୍ରେସ୍ ଏକପ୍ରକାର ଅଚଳ ଅବସ୍ଥାର ସମ୍ମୁଖୀନ ହେଲା ।

## ପାରିଜାତ ପ୍ରେସ୍‌ର ସମାଧି ଏବଂ ସଂସାର ପ୍ରେସ୍‌ର ଜନ୍ମ (୧୯୬୧-୬୨)

ବର୍ଷାଧିକ କାଳ ମୁଁ ପ୍ରେସର କର୍ମଚାରୀମାନଙ୍କ ସଙ୍ଗେ ପ୍ରତ୍ୟକ୍ଷ ସମ୍ପର୍କ ରଖି ନ ଥିଲି । ୧୯୬୧ ମସିହାର ଶେଷଆଡ଼କୁ ଦିନେ ମୁଁ ପ୍ରେସର କର୍ମଚାରୀ ଓ ଅଫିସ ସହକାରୀମାନଙ୍କୁ ଏକତ୍ର ବସାଇ ସେମାନଙ୍କ ଅସନ୍ତୋଷ ଓ ତଜ୍ଜନିତ ବିଶୃଙ୍ଖଳାର କାରଣ ପଚାରିଲି । କର୍ମଚାରୀମାନେ ମ୍ୟାନେଜର ଓ ତାଙ୍କ ସହକାରୀମାନଙ୍କ ଉପରେ ଦୋଷାରୋପ କରି କହିଲେ, "ଏମାନେ ଆପଣଙ୍କ ପରି ପ୍ରେସ ଚଳାଇ ପାରୁନାହାନ୍ତି । ଫଳରେ ଆପଣଙ୍କ ପରିଚାଳନାରେ ଥିଲାବେଳେ ଆମ୍ଭେମାନେ ଯାହା ଉପାର୍ଜନ

କରୁଥିଲୁ, ବର୍ତ୍ତମାନ ଆମର ଆୟ ତାଠାରୁ ଯଥେଷ୍ଟ କମିଯାଇଛି । ଆପଣ ପୂର୍ବପରି ନିଜେ ପ୍ରେସ୍ କାର୍ଯ୍ୟ ନ ବୁଝିଲେ ଆମ୍ଭମାନଙ୍କର କୌଣସି ସୁବିଧା ହେବନାହିଁ ।"

ମୁଁ ସେମାନଙ୍କଠାରୁ ଏତିକି ଶୁଣିବାକୁ ଚାହୁଁଥିଲି । ସେମାନଙ୍କ ଆଗରେ ମୋର ବାର୍ଷିକ ବହିବାବଦ ପ୍ରାପ୍ୟର ହିସାବ ଦେଖାଇ କହିଲି, "ମୁଁ ବର୍ତ୍ତମାନ ବର୍ଷକୁ ପ୍ରାୟ ଆଠ ହଜାର ଟଙ୍କା ବହି ରୟାଲ୍‌ଟିରୁ ପାଉଛି । ମାସିକ ଅଶୀ ଟଙ୍କା ଦରମାରେ ଶିକ୍ଷକତା କରୁଥିଲାବେଳେ ମଧ୍ୟ କଟକରେ ଏହି କୋଠାଖଣ୍ଡ ତୋଳିଥିଲି । ତେଣୁ ତୁମକୁ ଲୁଣ୍ଠନ କରି ମୁଁ ବଡ଼ଲୋକ ହୋଇଯାଇଛି, ଏ ଧାରଣା ତୁମ ମନରେ ହୋଇଥିବା ଦେଖି ମୋର ଆଉ ଏ ବ୍ୟବସାୟ ଚଳାଇବାରେ ଆଗ୍ରହ ନାହିଁ । ସରକାରଙ୍କ ଶ୍ରମବିଭାଗ କର୍ମଚାରୀ ତୁମର କେତେ ମଙ୍ଗଳ କରିପାରୁଛନ୍ତି, ତାହା ଦେଖିବାକୁ ଶୁଣିବାକୁ ମୁଁ କେବଳ ଦୀର୍ଘକାଳ ଅପେକ୍ଷା କରି ରହିଥିଲି । ଆଜି ସବୁ ଶୁଣିଲି । ନିଜେ ଯେତିକି ପରିଶ୍ରମ କରୁଛ, ସେତିକିର ମୂଲ୍ୟ ପାଇବାକୁ ଇଚ୍ଛା କର । ମ୍ୟାନେଜର ଓ ତାଙ୍କ ସହକାରୀମାନଙ୍କ ସଙ୍ଗେ ମିଳିମିଶି ଚଳ । ମୋର ବୟସ ଦୃଷ୍ଟିରୁ ଏବଂ ମନରେ ବିତୃଷ୍ଣା ଆସିଥିବା ଯୋଗୁ ମୁଁ ଆଉ ଏ ପ୍ରେସ ଦାୟିତ୍ୱ ନେବାକୁ ଇଚ୍ଛୁକ ନୁହେଁ ।"

ସେଦିନ ଏତିକି କହି ସେମାନଙ୍କଠାରୁ ବିଦାୟ ନେଲି, କିନ୍ତୁ ମୁଁ ଜାଣିଥିଲି ମୁଁ ଗୃହକୁ ଆସିବା ଦିନଠାରୁ ପାରିଜାତ ପ୍ରେସର ପାରିବାରିକ ବନ୍ଧନ ହୁଗୁଳି ଯାଇଛି । ଅବସ୍ଥା କ୍ରମେ ଖରାପଆଡ଼କୁ ଗତି କରୁଥିବାର ଦେଖି ବାଧ୍ୟ ହୋଇ ୧୯୬୧ ଡିସେମ୍ବର ୩୧ ତାରିଖରେ ପ୍ରେସଟିକୁ ସମ୍ପୂର୍ଣ୍ଣ ରୂପେ ବନ୍ଦ କରିଦେଲି ।

ଆଇନ ଅନୁଯାୟୀ ପ୍ରେସର ସମସ୍ତ କର୍ମଚାରୀଙ୍କୁ କ୍ଷତିପୂରଣ ଦେଇ ବିଦାୟ କରିଦେବା ପରେ ମୁଁ କିଛିଦିନ ମୋର ଚତୁର୍ଥୀ କନ୍ୟା ଶୈଳବାଳାର ବିବାହ ବିଷୟରେ ବ୍ୟସ୍ତ ରହିଲି । ସେହିବର୍ଷ ସେ ବି.ଏ. ପାସ୍ କରିଥାଏ । ଖ୍ରୀଷ୍ଟ କଲେଜର ଅଧ୍ୟାପକ ଶ୍ରୀ ବିଜୟଚନ୍ଦ୍ର ମହାପାତ୍ରଙ୍କ ସହିତ ତାର ବିବାହ କଟକରେ ଅନୁଷ୍ଠିତ ହେଲା । କଟକ ଗଙ୍ଗାମନ୍ଦିରରେ ତାଙ୍କର ଗୋଟିଏ ଘର ଥିଲେ ସୁଦ୍ଧା କଟକ ଜିଲ୍ଲା ଭେଡ଼ା ନିକଟସ୍ଥ ଫକୋଡ଼ା ତାଙ୍କର ଜନ୍ମସ୍ଥାନ । ସେହିଠାରେ ତାଙ୍କର ଅନେକ ଗୁଡ଼ିଏ ଜମିବାଡ଼ି ଥିଲା ଏବଂ ସେ ଜଣେ ଧନୀ ଲୋକ ଭାବରେ ପରିଚିତ ଥିଲେ । ତେଣୁ ଏ ବିବାହରେ ମୋର ପତ୍ନୀ ବିଶେଷ ସନ୍ତୋଷ ଲାଭ କରିଥିଲେ ।

ଏହାପରେ 'ସହକାର' ପତ୍ରିକାର ଭବିଷ୍ୟତ ବିଷୟ ଚିନ୍ତାକରି ସ୍ଥିର କଲି ଯେ ଯଦି କେହି ମୋର ପ୍ରେସଟିକୁ ଭଡ଼ା ସୂତ୍ରରେ ନେଇ ପୁନର୍ବାର ଚାଲୁ କରେ, ତେବେ ମୋର ସହକାର ପତ୍ରିକାଟିର ମୁଦ୍ରଣ ପାଇଁ ମୋତେ ଅନ୍ୟର ଦ୍ୱାରସ୍ଥ ହେବାକୁ ପଡ଼ିବ ନାହିଁ । ପତ୍ରିକାଟି ସ୍ୱାବଲମ୍ବୀ ହୋଇ ନ ଥିବା ଦୃଷ୍ଟିରୁ ଅନ୍ୟତ୍ର ଛପାଇବା ମଧ୍ୟ ସେତେ ସହଜ ନୁହେଁ । ତା ଛଡ଼ା 'ବିଶ୍ୱପରିଚୟ'ର ମୁଦ୍ରଣ ମଧ୍ୟ ଅଧା ରହିଛି ।

ସୂଚନାରେ କଥା, ମୋର କନିଷ୍ଠ ଶ୍ୟାଳକ ଶ୍ରୀମାନ୍ ବିଶ୍ୱରଞ୍ଜନ 'ସଂସାର ପ୍ରେସ' ନାମ ଦେଇ ଗ୍ରେଟ୍ ଆକାରରେ ପ୍ରେସଟିକୁ ଚଳାଇବାକୁ ରାଜି ହେବାରୁ ମୁଁ କିଛିକ୍ ଆଶ୍ୱସ୍ତ ହେଲି । ସେହିଦିନଠାରୁ ଉକ୍ତ ସଂସାର ପ୍ରେସରେ ମୋ ପତ୍ରିକାଟି ଏ ପର୍ଯ୍ୟନ୍ତ ମୁଦ୍ରିତ ହୋଇ ଆସୁଅଛି ।

## 'ଆପଣା ହସ୍ତେ ଜିହ୍ୱା ଛେଦ......'

କେବଳ ମୋର ଲାଭଜନକ ବ୍ୟବସାୟଟିକୁ ଯେ ମୁଁ ସ୍ୱଇଚ୍ଛାରେ ବନ୍ଦ କରିଦେଲି ସେତକ ନୁହେଁ, ଅନ୍ୟ ଏକ ଅନୁରୂପ ଘଟଣାରେ ମଧ୍ୟ ମୋର ଆର୍ଥିକ ଆୟର ଉଚ୍ଛେଦ ହେବାଭଳି କାର୍ଯ୍ୟରେ ମୋତେ କେତେକ ପରିମାଣରେ ନିମିତ୍ତ ହେବାକୁ ପଡ଼ିଲା । ଅସହଯୋଗ ଆନ୍ଦୋଳନ ବେଳର ମୋର ପରିଚିତ ଜାତୀୟ କବି ବୀରକିଶୋର ଦାସ ଦିନେ ମୋ ନିକଟରେ ପହଞ୍ଚି କହିଲେ, "ରାମ, ତୋ ବେକରେ ଛୁରୀ ଦେବାକୁ ଆସିଛି ।"

ଶ୍ରୀ ବିଜୁ ପଟ୍ଟନାୟକ ସେତେବେଳେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ପଦରେ ଆସୀନ ହୋଇଥାନ୍ତି । ପ୍ରାଥମିକ ଶ୍ରେଣୀର ପାଠ୍ୟପୁସ୍ତକଗୁଡ଼ିକର ଜାତୀୟକରଣ ଯୋଜନାକୁ କାର୍ଯ୍ୟକାରୀ କରିବା ଦିଗରେ ଆବଶ୍ୟକ ବ୍ୟବସ୍ଥା କରିବା ପାଇଁ ସେ ବୀରବାବୁଙ୍କ ଉପରେ ଭାର ଦେଇଥାନ୍ତି । ବୀରବାବୁ ମୋତେ ଯୋଜନାର ରୂପରେଖ ସମ୍ବନ୍ଧରେ ଦୁଇ ଚାରି କଥା କହି ଉକ୍ତ କାର୍ଯ୍ୟରେ ମୋର ସହଯୋଗ କାମନା କଲେ । ପ୍ରଥମ ଶ୍ରେଣୀରୁ ଆରମ୍ଭ କରି ପଞ୍ଚମ ଶ୍ରେଣୀ ପର୍ଯ୍ୟନ୍ତ ପ୍ରାୟ ପ୍ରତ୍ୟେକ ଶ୍ରେଣୀରେ ମୋର ସାହିତ୍ୟ ପୁସ୍ତକଗୁଡ଼ିକ ସେତେବେଳେ ବିଭାଗୀୟ ଅନୁମୋଦନ ପାଇ ପାଠ୍ୟପୁସ୍ତକ-ରୂପେ ଚଳୁଥିଲା ଏବଂ ମୁଁ ସେ ବାବଦରୁ ବାର୍ଷିକ ସାତ ଆଠ ହଜାର ଟଙ୍କା ଆୟ କରୁଥିଲି । ଉକ୍ତ ପୁସ୍ତକଗୁଡ଼ିକ ଉଠିଗଲେ ମୁଁ ସମସ୍ତ ଆୟ ହରାଇବି ଜାଣି ବୀରବାବୁ ଉପରୋକ୍ତ ଭାଷାରେ କଥାର ଉପକ୍ରମ କରିଥିଲେ । ମୁଁ ତାଙ୍କୁ କହିଲି, "ଓଡ଼ିଶାର ପିଲାମାନଙ୍କ ପାଇଁ ମନୋରଞ୍ଜକ ଉପାଦେୟ ପାଠ୍ୟପୁସ୍ତକମାନ ତିଆରି କରିବା ଲାଗି ସରକାର ଯେଉଁ ପରିକଳ୍ପନା କରୁଛନ୍ତି, ମୋର ସେଥିରେ ପୂର୍ଣ୍ଣ ସମର୍ଥନ ରହିଛି । ବ୍ୟକ୍ତିଗତ ସ୍ୱାର୍ଥରେ କ୍ଷତି ଘଟିଲେ ସୁଦ୍ଧା ଏଭଳି ଏକ ଜାତୀୟ କାର୍ଯ୍ୟରେ ସହଯୋଗ କରିବାକୁ ମୁଁ ପ୍ରସ୍ତୁତ ଅଛି ।"

ବୀରବାବୁ ମୋଠାରୁ ଏତିକ ଶୁଣି ଚାଲିଗଲେ । ଏ ୧୯୬୧ ର ଘଟଣା । ସେହିଦିନଠାରୁ ଆଜି ଭିତରେ ସରକାରଙ୍କ ପାଠ୍ୟପୁସ୍ତକ ଜାତୀୟକରଣ ଯୋଜନା କେତେଦୂର ଅଗ୍ରଗତି କରିଛି, ତାହା ସମସ୍ତେ ଜାଣନ୍ତି । ପ୍ରାଇମେରୀ ଶ୍ରେଣୀର ସମସ୍ତ ପାଠ୍ୟପୁସ୍ତକ ଏଥିମଧ୍ୟରେ ସରକାର ପ୍ରସ୍ତୁତ କରି ସାରିଛନ୍ତି । ମୁଁ ଆଦ୍ୟରୁ ଉକ୍ତ ସଂସ୍ଥାର ଜଣେ ବେସରକାରୀ ସଭ୍ୟରୂପେ ମନୋନୀତ ହୋଇ ରହିଥିଲି ଏବଂ ଯେତେଦୂର ପାରିଛି, ଜାତୀୟକରଣ କାର୍ଯ୍ୟରେ ସାହାଯ୍ୟ କରି ଆସିଥିଲି । କହିବା

ବାହୁଥିଲା, ତା ସଙ୍ଗେ ସଙ୍ଗେ ପଞ୍ଚମ ଶ୍ରେଣୀଯାଏ ଚଳୁଥିବା ମୋ ନିଜର ପାଠ୍ୟପୁସ୍ତକଗୁଡ଼ିକ ଅଚଳୀ ହୋଇଯାଇଥିଲା ଏବଂ ସେ ସୂତ୍ରରୁ ପାଉଥିବା ସମସ୍ତ ଆୟ ମୁଁ ହରାଇଥିଲି ।

'ଶିଶୁଦିବସ' ଉପଲକ୍ଷେ ଅଖିଳ ଭାରତୀୟ ସ୍ତରରେ ଯେଉଁ ବାର୍ଷିକ ଶିଶୁ ସାହିତ୍ୟ ପ୍ରତିଯୋଗିତା ଅନୁଷ୍ଠିତ ହୁଏ, ତାହାର ବିଚାରକମଣ୍ଡଳୀରେ ଓଡ଼ିଆ ଭାଷାର ପ୍ରତିନିଧି ରୂପେ ମୁଁ ଦୁଇବର୍ଷ ଯୋଗ ଦେବାର ସୁଯୋଗ ପାଇଥିଲି । ଦିଲ୍ଲୀଠାରେ ପ୍ରତ୍ୟେକ ଆଞ୍ଚଳିକ ଭାଷାର ପ୍ରତିନିଧିଙ୍କୁ ନେଇ ଏହି ସଭା ବସୁଥିଲା । ଓଡ଼ିଶା ସରକାରଙ୍କ ଶିକ୍ଷା ବିଭାଗର ସୁପାରିସକ୍ରମେ ମୁଁ ମନୋନୀତ ହୋଇଥିଲି । ପାର୍ଲାମେଣ୍ଟ ସଦସ୍ୟ ପ୍ରଜା ସମାଜବାଦୀ ଦଳର ନେତା ଶ୍ରୀ ସୁରେନ୍ଦ୍ରନାଥ ଦ୍ୱିବେଦୀଙ୍କ ଅତିଥି ରୂପେ ମୁଁ ଦିଲ୍ଲୀରେ ଅବସ୍ଥାନ କରୁଥିଲି । ପର୍ଯ୍ୟଟକମାନଙ୍କ ସୁବିଧା ପାଇଁ ସରକାରଙ୍କ ତରଫରୁ ସେଠାରେ ବସ୍‌ଯାହାର ଯେଉଁ ବ୍ୟବସ୍ଥା ଅଛି, ମୁଁ ତା'ର ସୁଯୋଗ ନେଇ ଦିଲ୍ଲୀର ଦର୍ଶନୀୟ ସ୍ଥାନମାନ ଦେଖି ଆସିଥିଲି । ମୋ ଜୀବନରେ ଦିଲ୍ଲୀଦର୍ଶନ ସେଇ ପ୍ରଥମ ।

### ଶେଷ କଥା

ଭୁବନେଶ୍ୱରଠାରେ ଯେଉଁ ବର୍ଷ ନିଖିଳ ଭାରତ କଂଗ୍ରେସର ଅଧିବେଶନ ବସିଥିଲା, ସେହି ବର୍ଷ ଜିପ୍‌ଟି ବିକ୍ରୀ କରିଦେଲି ଏବଂ ଗୋଟିଏ 'ଆମ୍ବାସାଡର' ଗାଡ଼ି କିଣିଲି । ଆମ ଗ୍ରାମକୁ ଯିବାକୁ ଫୁଲନଖରାଠାରୁ ଯେଉଁ କଚ୍ଚା ସଡ଼କ ଥିଲା, ଏଥିମଧ୍ୟରେ ତାହା ପକ୍‌କା ହୋଇ ଯାଇଥିଲା । ବ୍ୟବସାୟର ପରିସର ମଧ୍ୟ ସଂକୁଚିତ ହୋଇ ଯାଇଥିଲା । ତେଣୁ ଜିପ୍‌ଟିକୁ ରଖିବାର ଆଉ ଆବଶ୍ୟକତା ଦେଖିଲି ନାହିଁ ।

ମୋର ପୁଅ ପ୍ରଭାତ ଇଂଜିନିୟରିଂ ପାସ କରି ଓଡ଼ିଶା ସରକାରଙ୍କ ଜଳସେଚନ ବିଭାଗରେ ଚାକିରି ଆରମ୍ଭ କରିଥାଏ । ପଞ୍ଚମା କନ୍ୟା ସୁଷମାର ବିବାହ ଡାକ୍ତର ଅନାଦିଚରଣ ମିଶ୍ରଙ୍କ ସଙ୍ଗେ ଅନୁଷ୍ଠିତ ହେଲା । ତାଙ୍କ ଘର କଟକ ନିକଟସ୍ଥ ରାମକୁମାରପୁର ଗ୍ରାମରେ । ଏହି ବିବାହ ଶେଷ ହେବା ପରେ ମୋର ପ୍ରଥମ ପାଞ୍ଚଟି କନ୍ୟାଙ୍କ ବିବାହ ଦାୟିତ୍ୱରୁ ମୁକ୍ତି ପାଇଲି । ଏହାପରେ ଘରେ ମୁଁ, ମୋର ସ୍ତ୍ରୀ ଓ ଦୁଇଟି ଅବିବାହିତା କନ୍ୟାଙ୍କ ବ୍ୟତୀତ ଆଉ କେହି ନ ଥିଲେ ।

ଏହି ସମୟରେ ଥରେ ମୋର ବାଁ କାନ୍ଧରେ ଭୀଷଣ ବ୍ୟଥା ଅନୁଭବ କଲି । ହାତ ଚଳାଇ ପାରିଲି ନାହିଁ । ଆଶଙ୍କା ହେଲା, ଚିରଦିନ ପାଇଁ ହାତଟା ଅଚଳ ହୋଇଯିବ କି ? କିନ୍ତୁ ତା ହେଲା ନାହିଁ । କ୍ରମେ ଆରୋଗ୍ୟ ଲାଭ କଲି । ମୋର ଶରୀର ଦୁର୍ବଳ ଲାଗୁଥିଲେ ହେଁ କାମ କରିବାର ଶକ୍ତି ଅବ୍ୟାହତ ଥିଲା । ଅବସରବେଳେ ମୁଁ ଘରର ଅନେକ କାମ କରୁଥିଲି । 'ସଂସାର' ପତ୍ରିକାର ପରିଚାଳନା ଓ ସମ୍ପାଦନାରେ ମୁଖ୍ୟ ଅଂଶ ଗ୍ରହଣ କରିବା ସଙ୍ଗେ ସଙ୍ଗେ ବିଭିନ୍ନ ଅନୁଷ୍ଠାନର ସଦସ୍ୟ ଭାବରେ

ସଭାସମିତିରେ ଯୋଗ ଦେଇ ଯଥାଶକ୍ତି ମୋର କର୍ତ୍ତବ୍ୟ ସମ୍ପାଦନ କରୁଥିଲି । ମୋର ଦୃଷ୍ଟିଶକ୍ତି ଓ ଚଲ୍ତା ଶକ୍ତିରେ ବାର୍ଦ୍ଧକ୍ୟ-ଜନିତ ବୈକଲ୍ୟ କେବେ ଅନୁଭବ କରିନାହିଁ । ଏସବୁ ପରମପିତାଙ୍କର ଅନୁଗ୍ରହ ନୁହେଁ ତ ଆଉ କଣ ?

୧୯୬୮ ମସିହା ମାର୍ଚ୍ଚ ମାସରେ ମୋର କନ୍ୟା ସୁରଭି ଓଡ଼ିଶାର ଏକ କଳାକାରଦଳଙ୍କ ସାଙ୍ଗରେ ବମ୍ବେ ଯାଉଥିଲା । ଖଡ଼ଗପୁରଠାରେ ସେମାନେ ଏକ ରେଲ ଦୁର୍ଘଟଣାର ସମ୍ମୁଖୀନ ହେଲେ । ଏହି ସମ୍ବାଦର ପ୍ରାଥମିକ ବିବରଣୀ ପାଇ ପରିବାରର ସମସ୍ତେ ଦୁଃଖରେ ଅଭିଭୂତ ହୋଇପଡ଼ିଥିଲୁ, କିନ୍ତୁ ପରମେଶ୍ୱରଙ୍କ ଅପାର କରୁଣାରୁ ସେ ଓ ତାର ସଙ୍ଗୀ କଳାକାରମାନେ ସମ୍ପୂର୍ଣ୍ଣ ନିରାପଦ ଥିବାର ସମ୍ବାଦ ପାଇ ଆଶ୍ୱସ୍ତ ହେଲୁ ।

ସେହି ବର୍ଷ ପୂଜାଛୁଟିରେ ଅନ୍ୟ ଏକ ଅନୁରୂପ ଘଟନା ଆମ୍ଭମାନଙ୍କୁ କିଛିଦିନ ଶଙ୍କାକୁଳ କରି ପକାଇଲା । ପୁଅ ପ୍ରଭାତ ତାର ଦୁଇଜଣ ସଙ୍ଗୀଙ୍କ ସହ ଦାର୍ଜିଲିଙ୍ଗ୍ ଯାଇଥିଲା ପରିଭ୍ରମଣ ଉଦ୍ଦେଶ୍ୟରେ । ସେଠାରେ ପହଞ୍ଚିବା ପରେ ପରେ ପ୍ରବଳ ବର୍ଷା ଓ ବନ୍ୟାଦ୍ୱାରା ରାସ୍ତାଘାଟ ଏପରି ଭାବରେ ଧ୍ୱସ୍ତବିଧ୍ୱସ୍ତ ହୋଇଗଲା ଯେ ଦାର୍ଜିଲିଙ୍ଗ୍ ସହର ବାହାର ଜଗତଠାରୁ କିଛିଦିନ ପାଇଁ ବିଚ୍ଛିନ୍ନ ହୋଇ ରହିଗଲା । ମାଟି ଧସିପଡ଼ିବା ଫଳରେ ବହୁ ଧନଜୀବନ ନଷ୍ଟ ହେଲା । ରେଲଗାଡ଼ି ଚାଲି ପାରିଲା ନାହିଁ । ସୌଭାଗ୍ୟକୁ ପ୍ରଭାତ ଓ ତାର ସଙ୍ଗୀଦ୍ୱୟ ନିରାପଦ ଥିଲେ । କିଛିଦିନ ପରେ ଦୁର୍ଗମ ପାର୍ବତ୍ୟପଥରେ ଚାରି ମାଇଲ ଚାଲି ଚାଲି ସେମାନେ ଅନ୍ୟ ଏକ ସ୍ଥାନରୁ ମଟର ବସ୍ ଯୋଗେ କଲିକତା ଆସିଲେ ଏବଂ ଆମେ ସେମାନଙ୍କୁ ନିରାପଦରେ ଫେରିବାର ଦେଖି ଆଶ୍ୱସ୍ତ ହେଲୁ ।

୧୯୬୯ ମସିହା ମାର୍ଚ୍ଚ ମାସ ବେଳକୁ ମୋର ଏ ଆତ୍ମଜୀବନୀର ପ୍ରଥମ ତିନୋଟି ଅଧ୍ୟାୟ ପ୍ରାୟ ମୁଦ୍ରିତ ହୋଇ ସାରିଥିଲା । ବନ୍ଧେଇ କାର୍ଯ୍ୟ ବାକି ରହିଥିଲା ମାତ୍ର । ସେହି ସମୟରେ କଟକ ଗୃହଜୀଟୌକି ଡାକଘରେ ପୋଷ୍ଟମାଷ୍ଟର ଭାବରେ କାର୍ଯ୍ୟ କରୁଥିବା ମୋର ଜ୍ୟେଷ୍ଠ ଶ୍ୟାଳକ ବାଳମୁକୁନ୍ଦ ଅସୁସ୍ଥ ହୋଇ ମୋ ଘରେ ବିଶ୍ରାମ ନେଉଥିଲା । ଏ ବହିର ସମ୍ବାଦ ପାଇ ସେ ଏହାକୁ ପଢ଼ିବାକୁ ଇଚ୍ଛା ପ୍ରକାଶ କରିବାରୁ ମୁଁ ତାକୁ ଛପା ଫର୍ମଗୁଡ଼ିକ ଦେଇଥିଲି ଏବଂ ସେ ତାକୁ ଆମୂଳଚୂଳ ପଢ଼ି ଯେଉଁ ତୃପ୍ତି ଲାଭ କରିଥିଲା, ତାହା ମୋ ଆଗରେ ପ୍ରକାଶ କରିଥିଲା । ମୋ ପରିବାରର ସଙ୍ଗେ ସେ ବହୁକ୍ଷେତ୍ରରେ ଜଡ଼ିତ ଥିବାରୁ ତା ମତାମତ ଉପରେ ମୁଁ ବିଶେଷ ଗୁରୁତ୍ୱ ଦେଉଥିଲି । ସେତେବେଳେ ମୁଁ ସ୍ୱପ୍ନରେ ସୁଦ୍ଧା ଭାବି ନ ଥିଲି ଯେ ବହିଟିର ପୂର୍ଣ୍ଣାଙ୍ଗ ପ୍ରକାଶ ପର୍ଯ୍ୟନ୍ତ ସେ ଅପେକ୍ଷା କରି ପାରିବନାହିଁ । ନିୟତିର ଅଲଂଘ୍ୟ ବିଧାନକୁ ଏଡ଼ି ନ ପାରି ସେହି ମାସର ଶେଷଆଡ଼କୁ ସେ ଆମ୍ଭମାନଙ୍କୁ ଶୋକସାଗରରେ ଭସାଇ ପରଲୋକକୁ ଚାଲିଗଲା । ଆଜି ସେ ପୃଥିବୀ-ମଞ୍ଚ ଉପରୁ

ଉଦ୍ବେଳିତ ହୋଇ ଯାଇଥିଲେ ସୁଦ୍ଧା ଏହି ପୁସ୍ତକର ପ୍ରଥମ ପ୍ରତୀକରୂପେ ମୋ ହୃଦୟରେ ରହିଯାଇଛି ଏକ ଅଲିଭା ସ୍ମୃତି ।

ମଙ୍ଗଳମୟଙ୍କର ଆଶୀର୍ବାଦ ଉପରେ ଭରସା ରଖି ମୁଁ କାମ କରି ଚାଲିଛି । ଜୀବନର ବହୁ ଝଡ଼ଝଞ୍ଜା ଅତିକ୍ରମ କରି ଆସିଛି ତାଙ୍କରି କୃପାବଳରେ । ବିପଦରେ ସେ ମୋତେ ଧୈର୍ଯ୍ୟ ଓ ସାହସ ଦେଇଛନ୍ତି, ଅନ୍ଧାରରେ ପଥ ଦେଖାଇଛନ୍ତି । ପାରିବାରିକ ଦାୟିତ୍ୱ ତୁଲାଇବାକୁ ଶକ୍ତି ମଧ୍ୟ ଦେଇଛନ୍ତି । ଭଙ୍ଗାରପୁର ହାଇସ୍କୁଲର ପ୍ରଧାନ ଶିକ୍ଷକ ପଦରେ ମୁଁ ସନ୍ତୁଷ୍ଟ ଥିଲି, କିନ୍ତୁ ମୋର ଆର୍ଥିକ ସ୍ୱଚ୍ଛଳତା ନ ଥିଲା । ସେଇ ଅଭାବ ପୂରଣ ପାଇଁ ଭଗବାନ ମୋତେ ଯେପରିକି ବ୍ୟବସାୟ କ୍ଷେତ୍ରକୁ ଟାଣି ଆଣିଲେ । ମୋ ବହିଗୁଡ଼ିକରୁ ମଧ୍ୟ ଏହି ସମୟରେ ଭଲ ରୟାଲ୍‌ଟି ମିଳୁଥିଲା । ପରିବାରର କେତୋଟି ଜରୁରୀ ଆବଶ୍ୟକତା ପୂରଣ ହୋଇଗଲା ପରେ ଆୟର ସେ ମାର୍ଗ ସଙ୍କୁଚିତ ହୋଇଆସିଲା । କିନ୍ତୁ ମୁଁ ସେଥିରେ ଦୁଃଖ କରେନାହିଁ । ଲେଖି ଖାଇବାରେ ଯେଉଁ ଆନନ୍ଦ, ଶେଷପର୍ଯ୍ୟନ୍ତ ସେ ଆନନ୍ଦ ପାଇପାରିବି ବୋଲି ମୋର ଭରସା ରହିଛି । □ □

# ଶିଶୁସାହିତ୍ୟର ବେଳାଭୂମିରେ—

ପାରିବାରିକ ଘଟଣାବଳୀ
'ସଂସାର' କାର୍ଯ୍ୟାଳୟ ବନ୍ଦ ରହିଲା
ବିଭିନ୍ନ ସ୍ଥାନକୁ ଯାତ୍ରା
ରଚନାବଳୀ
'ସଂସାର'ର ପୁନଃ ପ୍ରକାଶନ
ସମ୍ମାନ ଓ ସମ୍ବର୍ଦ୍ଧନା
ପତ୍ନୀ ବିୟୋଗ

'କନ୍ତୁ ରୁ ଗଲୁ ଚଳି     ଦୁର୍ଦ୍ଦଶା ଦାଉ ଦଳି
କି ମନ୍ଦାଧୃତି ହୃଦେ ଧରି,
ବିଧାତାର କୃପାରେ     ସୁବିପୁଳ ବନ୍ୟାରେ
ପ୍ରବଳ ପରାଣ ତୋହରି,
ପଶିଲା ଏବେ ତୋ ଶ୍ରବଣେ
ସାଗର ଘୋଷ ଶୁଭକ୍ଷଣେ
ଉଲ୍ଲାସେ ଉନ୍ମାଦିନୀ     ହେଲୁ ତୁହି ତଟିନୀ
ଧାଇଁଲୁ ସାଗରସଦନେ ।'

[ 'ନଦୀପ୍ରତି'—ରାଓ ]

## ପାରିବାରିକ ଘଟନାବଳୀ

୧୯୬୧ ମସିହା ବେଳକୁ ମୋ ପୁଅ ପ୍ରଶାନ୍ତ ବୂର୍ଲା ଇଞ୍ଜିନିୟରିଂ କଲେଜରୁ ଉତ୍ତୀର୍ଣ୍ଣ ହୋଇ ଜଳସେଚନ ବିଭାଗରେ ଜୁନିଅର ଇଞ୍ଜିନିୟର ଭାବରେ ନିଯୁକ୍ତି ପାଇଥାଏ । ତାର ବିବାହ ପାଇଁ କନ୍ୟାପାତ୍ର ଖୋଜିବାରେ ଆମେ ସମସ୍ତେ ଲାଗିଥାଉ । ମୋର ଜଣେ କକେଇଙ୍କ ପ୍ରସ୍ତାବ ଅନୁସାରେ ଜଗତ୍‌ସିଂହପୁରର ଲୋକପ୍ରିୟ ଡାକ୍ତର ରାମଚନ୍ଦ୍ର ମହାପାତ୍ରଙ୍କ କନିଷ୍ଠା କନ୍ୟା ଅନସୂୟା ସଙ୍ଗେ ତାର ବିବାହ ସ୍ଥିର ହେଲା । ଏ ବିବାହରେ କୌଣସି ଯୌତୁକ ପ୍ରଶ୍ନ ମୁଁ ଉଠାଇ ନ ଥିଲି । ବରଂ କନ୍ୟାପିତା ଯେତେବେଳେ ଶୁଣାଇଲେ, "ମୋ ସ୍ତ୍ରୀ ଗୋଟିଏ ଫ୍ରିଜ୍ ଏବଂ ଗଡ଼ରେଜ୍ ଆଲମାରି ଦେବା ପାଇଁ କହୁଛନ୍ତି," ମୁଁ ତାଙ୍କୁ ଉତ୍ତର ଦେଇଥିଲି, "ମୋର ସେ ଦୁଇଟି ଜିନିଷ ଅଛି; ତେଣୁ ଆଉ ତାହା ଦେବେ କାହିଁକି ?"

ମୁଁ ଯୌତୁକ ପ୍ରଥାକୁ ଘୃଣା କରେ । ମୋର କନ୍ୟାମାନଙ୍କ ବିବାହ ପ୍ରସଙ୍ଗରେ ଯେତେବେଳେ କେହି ପ୍ରଥମେ 'ଦିଆନିଆ' କଥା ଉଠାଇଛି, ସେ ଯେତେ ଉପଯୁକ୍ତ ସ୍ଥାନ ହେଲେ ବି ମୁଁ ସଙ୍ଗେ ସଙ୍ଗେ ତାକୁ ପ୍ରତ୍ୟାଖ୍ୟାନ କରିଛି । 'Rather a man without money than money without a man'—ଜାମାତା ନିର୍ବାଚନ ସମ୍ପର୍କରେ ଜଣେ ଇଂରେଜ କନ୍ୟାପିତାଙ୍କର ଏ ଉକ୍ତିର ସାରବତ୍ତା ମୁଁ ସ୍ୱୀକାର କରେ । ମୋର ପରମ ସୌଭାଗ୍ୟ ଯେ ମୋର କୌଣସି କନ୍ୟାର ବିବାହ ଏ ଘୃଣ୍ୟ ସାମାଜିକ ପ୍ରଥାଦ୍ୱାରା କଳଙ୍କିତ ହୋଇନାହିଁ ।

୧୯୬୧ ନଭେମ୍ବର ୨୬ ତାରିଖରେ ଜଗତ୍‌ସିଂହପୁରଠାରେ ପ୍ରଶାନ୍ତର ବିବାହ ଆୟୁଷ୍ମତୀ ଅନସୂୟା ସଙ୍ଗେ ନିର୍ବିଘ୍ନରେ ସମ୍ପନ୍ନ ହେଲା; କାରଣ ସେହିଠାରେ ତାର ଶ୍ୱଶୁର ଡାକ୍ତର ରାମଚନ୍ଦ୍ର ମହାପାତ୍ର ସପରିବାର ବାସ କରୁଥିଲେ ।

ଠିକ୍ ତାର ପରବର୍ଷ ଜୁଲାଇ ୧୦ ତାରିଖରେ ମୋର ଅନ୍ୟତମା କନ୍ୟା ଲତାରାଣୀର ବିବାହ ଅନୁଷ୍ଠିତ ହେଲା । ଏ ବିବାହର ଦାୟିତ୍ୱ ମତେ ନେବାକୁ ପଡ଼ିବ ବୋଲି ମୁଁ ଭାବି ନ ଥିଲି, କାରଣ ଲତା ଯେତେବେଳେ ୧୦ ମାସର ଶିଶୁ, ସେତେବେଳେ ମୋର ଜ୍ୟେଷ୍ଠ ଶ୍ୟାଳକ ବାଳମୁକୁନ୍ଦ ତାକୁ ପାଳିତା କନ୍ୟାରୂପେ ତା ଘରକୁ ନେଇଯାଇଥିଲେ । କିନ୍ତୁ ଦୁର୍ଯୋଗକୁ ତାକୁ ଲାଳନପାଳନ କରି ବିବାହ ଦେବାପାଇଁ ଆୟୋଜନ କରୁଥିବା ସମୟରେ ତାର ମୃତ୍ୟୁ ଘଟିଲା । ତେଣୁ ସେ କନ୍ୟାର ବିବାହ ଦାୟିତ୍ୱ ମଧ୍ୟ ପଡ଼ିଲା ମୋ ଉପରେ । ପୁରୀ ଜିଲ୍ଲା ତ୍ରିଲୋଚନପୁର ଗ୍ରାମନିବାସୀ ଶ୍ରୀ ଅଲେଖ ତ୍ରିପାଠୀଙ୍କ ପୁତ୍ର ଯୁବକ ଇଞ୍ଜିନିୟର ପ୍ରଭାତକୁମାରଙ୍କ ସହିତ ତା ୧୦ । ୭ । ୧୯୬୦ ରିଖରେ ତାର ବିବାହ କାର୍ଯ୍ୟ ଶେଷ କଲି ।

ଏହି ବିବାହ ଉତ୍ସବ ଦିନ କେତେକ ବରଯାତ୍ରୀ ବିଶୃଙ୍ଖଳା ସୃଷ୍ଟି କରି ମୋତେ ଅସୁବିଧାରେ ପକାଇବାକୁ ଚେଷ୍ଟା କରିଥିଲେ । ଆମ ସମାଜରେ ଏହା ଏକ ସାଧାରଣ ଘଟନା । ବିବାହ ଦିନ ବରଯାତ୍ରୀମାନେ କନ୍ୟା ଘରୁ କୌଣସି ଗୋଟିଏ ଜିନିଷ ଲୁଚାଇ କରି ନେଇଯାଆନ୍ତି, ନିରୂପିତ ସମୟରେ ଭୋଜି ସଭାକୁ ନ ଆସି କିଛି ଗୋଟାଏ ଆଳରେ ଅନୁପସ୍ଥିତ ରହନ୍ତି, କନ୍ୟା ପିତାଠାରୁ ବରଯାତ୍ରୀ ଦକ୍ଷିଣା ଆଦାୟ କରାଯାଏ, ଏ ସବୁ ବହୁ କାଳରୁ ଚାଲିଆସୁଛି । କିନ୍ତୁ ସଭ୍ୟ ସମାଜରେ ଏଭଳି ପ୍ରଥାର ଯୌକ୍ତିକତା ଥିବାପରି ମନେ ହୁଏ ନାହିଁ । ମୁଁ ମନେ କରେ ଏହା ମୂଳରେ ଅଛି ଏକ ଘୃଣ୍ୟ ଧାରଣା । ଯେଉଁମାନେ ଏ ସବୁ କୁତ୍ସିତ ପ୍ରଥାକୁ ପ୍ରଶ୍ରୟ ଦିଅନ୍ତି, ସେମାନେ ବିବାହ ବ୍ୟାପାରରେ କନ୍ୟା ପକ୍ଷକୁ ଦୁର୍ବଳପକ୍ଷ ମନେ କରି ବର ପକ୍ଷର ଉତ୍କର୍ଷ ପ୍ରମାଣିତ କରିବା ପାଇଁ ଏଭଳି ନାନା ଅଶୋଭନୀୟ ପ୍ରଥାକୁ ଚଳାଇ ଆସୁଛନ୍ତି । କିନ୍ତୁ ସତରେ କଣ ବିବାହ ଦୁଇଟି ଅସମ ପକ୍ଷର ମିଳନ ? ଏ ବିଚାରଧାରା ପବିତ୍ର ବିବାହ ବନ୍ଧନର ପରିପନ୍ଥୀ ନୁହେଁ କି ?

ଲତାର ବିବାହ ପରେ ପରେ ମୋତେ ପ୍ରବଳ ଶ୍ୱାସରୋଗ ଆକ୍ରମଣ କଲା । ଶ୍ୱାସ ମୋର ନିତ୍ୟ ସଙ୍ଗୀ ହୋଇ ରହିବା ଫଳରେ ଶାରୀରିକ ଦୁର୍ବଳତା ଏତେ ବଢ଼ିଗଲା ଯେ ମୁଁ ମୋର ଶକ୍ତି ସାମର୍ଥ୍ୟ ହରାଇବସିଲି ଏବଂ 'ସଂସାର' ପତ୍ରିକାର ପ୍ରକାଶନ ଏକ କଠିନ ସମସ୍ୟା ରୂପେ ଦେଖାଗଲା, କାରଣ ଏହି ପତ୍ରିକା ସମ୍ପର୍କୀୟ ଅଧିକାଂଶ କାମ ମତେ ହିଁ କରିବାକୁ ପଡ଼ୁଥିଲା । ସେତେବେଳେ ଏହାର ପରିଚାଳନା ଦାୟିତ୍ୱ ନେବାକୁ ଅନ୍ୟ କେହି ନ ଥିବାରୁ ଠିକ୍ ଉଣେଇଶ ବର୍ଷ ପରେ ୧୯୬୦ ମସିହା ଅଗଷ୍ଟ ମାସଠାରୁ ଏହାର ପ୍ରକାଶନ ବନ୍ଦ କରିବାକୁ ବାଧ୍ୟ ହୋଇଥିଲି । 'ସଂସାର' ପତ୍ରିକାର ଶେଷ ସଂଖ୍ୟାରେ ଏହାର କାରଣ ଦର୍ଶାଇ ମୁଁ ଯାହା ଲେଖିଥିଲି, ତାହାର କିୟଦଂଶ ଏଠାରେ ଉଦ୍ଧାର କରୁଛି ।

"..... ସବୁଠାରୁ ବଡ଼ ଅସୁବିଧା ହେଲା ମୋର ଦୀର୍ଘ ଅସୁସ୍ଥତା ।

……ପାଠକମାନେ କହିପାରନ୍ତି, ପତ୍ରିକାର ସମ୍ପାଦକ ଅସୁସ୍ଥ ରହିଲେ ପତ୍ରିକ ପ୍ରକାଶ କରିବାକୁ କଣ ଅନ୍ୟ କେହି ନାହାନ୍ତି ? ନା, ଏ କ୍ଷେତ୍ରରେ ଅନ୍ୟ କେହି ନ ଥିଲେ । କାରଣ ଏ ପତ୍ରିକାକୁ ଆରମ୍ଭରୁ ନିଜର ଶ୍ରମ ଓ ଅର୍ଥ ଦାନ କରି ମୁଁ ଚଳାଇ ଆସିଛି । ମତେ ପ୍ରିଅନ, କରାଣି, ପରିଚାଳକ ଓ ସମ୍ପାଦକ—ସବୁ କାମ ଏକା ଏକା କରିବାକୁ ହୁଏ । ତେଣୁ ପତ୍ରିକା ଆର୍ଥିକ କ୍ଷତି ସଙ୍ଗେ ଲଢ଼େଇ କରି ଚାଲିଛି, ମୁଁ ଅସୁସ୍ଥ ହେଲେ ତାକୁ କାହିଁକି କିଏ ବା ଚଳାଇବ ? ……ପତ୍ରିକାର ଏ ଅକାଳ ମରଣ ଏଡ଼ିବା ପାଇଁ ମୁଁ ଅନ୍ୟ କୌଣସି ଉପାୟ ନ ଦେଖି ବର୍ତ୍ତମାନ ପାଇଁ ଅନ୍ତତଃ ଆପଣମାନଙ୍କଠାରୁ ବିଦାୟ ନେଉଛି ।"

ଏହାପରେ ୧୯୭୨ ନଭେମ୍ବର ୩୦ ତାରିଖଦିନ ମୋର ଅନ୍ୟତମା କନ୍ୟା ସୁରଭିର ବିବାହ ଡାକ୍ତର ଶଶିଭୂଷଣ ମିଶ୍ର, ଏମ୍. ଏସ୍.ଙ୍କ ସହିତ ସୁଚାରୁରୂପେ ସମ୍ପନ୍ନ ହେଲା । ବରପିତା ଶ୍ରୀ ଲକ୍ଷ୍ମଣ ମିଶ୍ର ଥିଲେ ମୋ ଶ୍ୱଶୁରଙ୍କର ଏକାନ୍ତ ଅନ୍ତରଙ୍ଗ । ତାଙ୍କପରି ଜଣେ ଅମାୟିକ ଓ ସ୍ନେହଶୀଳ ବ୍ୟକ୍ତିଙ୍କୁ ସମ୍ବନ୍ଧୀରୂପେ ପାଇ ମୁଁ ନିଜକୁ ଧନ୍ୟ ମନେ କଲି ।

ଓଡ଼ିଶା ସରକାରଙ୍କ ଅବସରପ୍ରାପ୍ତ ଯୁଗ୍ମ ସେକ୍ରେଟେରୀ ଶ୍ରୀ ପଦ୍ମନାଭ ମିଶ୍ରଙ୍କ ପୁତ୍ର ଶ୍ରୀମାନ୍ ପୂର୍ଣ୍ଣଚନ୍ଦ୍ର ମିଶ୍ର ମୋର ଅଷ୍ଟମ ଜାମାତା । ସେ ଜଗତ୍‌ସିଂହପୁରର ସ୍ୱାମୀ ବିବେକାନନ୍ଦ ସ୍ମାରକୀ ମହାବିଦ୍ୟାଳୟର ଅଧ୍ୟାପକ ଥିଲାବେଳେ ମୋର ଶେଷ ସନ୍ତାନ ମମତାକୁ ବିବାହ କରିଥିଲେ । ୧୯୭୪ ଜୁନ୍ ୧୩ ତାରିଖରେ ଏହି ବିବାହ ଅନୁଷ୍ଠିତ ହୋଇଥିଲା ।

ମମତାର ବିବାହପରେ ମୁଁ ପାରିବାରିକ ଦାୟିତ୍ୱରୁ ମୁକ୍ତି ପାଇଥିବାରୁ ପରମପିତା ପରମେଶ୍ୱରଙ୍କ ନିକଟରେ କୃତଜ୍ଞତା ଜଣାଇ ବହୁ ପରିମାଣରେ ଆଶ୍ୱସ୍ତି ଲାଭକଲି ।

କନ୍ୟାମାନଙ୍କର ବିବାହ ପରେ ମୋ ମନରେ ବ୍ୟବସାୟୀ ଜୀବନପ୍ରତି ବିତୃଷ୍ଣା ଜାତ ହେଲା । ତେଣୁ ସହକାରୀମାନଙ୍କ ହାତରେ ପ୍ରେସ ପରିଚାଳନା ଭାର ଛାଡ଼ିଦେଇ ମୁଁ ସେ ଜଞ୍ଜାଳରୁ ଅବ୍ୟାହତି ନେବାକୁ ଇଚ୍ଛା କଲି । ଅର୍ଥୋପାର୍ଜନର ଲାଳସା ମତେ ବାନ୍ଧି ରଖିପାରିଲା ନାହିଁ । ଜୀବନର ଯେଉଁ ପୃଷ୍ଠାରେ ଦୀର୍ଘକାଳ ଡୋର ବାନ୍ଧି ଦେଇଥିଲି, ତାହାକୁ ପୁଣି ଖୋଲି ଓଲଟାଇଲି । ଅବଶିଷ୍ଟ ସମୟ ଟିକିଏ ନିଶ୍ଚିନ୍ତ ମନରେ ସାହିତ୍ୟ ସେବାରେ ବିତାଇବାକୁ ସ୍ଥିର କରି ସେ ଦିଗରେ ମନୋନିବେଶ କଲି ।

## ଛବିଶ ବର୍ଷପରେ ପୁଣି ବାରିପଦା ଯାତ୍ରା

ମୋର ଷୋଳ ବର୍ଷର ଶିକ୍ଷକ ଜୀବନ ମଧ୍ୟରୁ ଏଗାର ବର୍ଷ କଟିଥିଲା ବାରିପଦାରେ । ଯୌବନର ସମସ୍ତ ଶକ୍ତି ଓ ଉତ୍ସାହ ଢାଳିଦେଇ ମୁଁ ସେଠାରେ କାର୍ଯ୍ୟ

କରିଥିଲି ଏବଂ ତାର ବିନିମୟରେ ମୋର ପ୍ରିୟ ଛାତ୍ର ଓ ସେଠାର ଜନସାଧାରଣଙ୍କଠାରୁ ଅଶାତୀତ ଶ୍ରଦ୍ଧା ଓ ସମ୍ମାନ ପାଇଥିଲି ତେଣୁ ମୋ ବାରିପଦାରହଣିର ସୁଖଦୁଃଖ-ବିଜଡ଼ିତ ସ୍ମୃତି ମୁଁ ଓ ମୋର ସ୍ତ୍ରୀ କେବେହେଲେ ଭୁଲିପାରିବୁ ନାହିଁ। ୧୯୪୭ ଅଗଷ୍ଟ ମାସରେ ଚାକିରିରୁ ଇସ୍ତଫା ଦେଇ ମୁଁ ସେଠାରୁ ବିଦାୟ ନେଇ ଆସିଥିଲି। ପ୍ରାୟ ୩୦ ବର୍ଷପରେ ପୁଣି ସେଠାକୁ ଯିବାକୁ ସୁଯୋଗ ମିଳିବ ଭାବି ନ ଥିଲି। ମୋର ଜ୍ୟେଷ୍ଠ ଜାମାତା ଶ୍ରୀ ବାସୁଦେବ ତ୍ରିପାଠୀ ସେଠାକୁ ଡେପୁଟୀ ଇନ୍‌ସପେକ୍ଟର ଭାବରେ ବଦଳି ହୋଇଯିବା ପରେ ଥରେ ସୁଯୋଗଦେଖି ମୁଁ ପିଲାମାନଙ୍କ ଗାଡ଼ିରେ ଧରି ବାରିପଦା ଯିବାକୁ ବାହାରିଲି।

ସେଠାରେ ପହଞ୍ଚି ପୂର୍ବ ବନ୍ଧୁମାନଙ୍କ ସହ ଦେଖାକଲି। ଶିକ୍ଷକ ସହକର୍ମୀ-ମାନଙ୍କ ମଧ୍ୟରୁ ସର୍ବଶ୍ରୀ ଦୈତାରି ବାରିକ, ଉମାକାନ୍ତ ମିଶ୍ର, କାଶୀନାଥ ମିଶ୍ର, ଦିଶାକର ସାହୁ ଓ ବ୍ରଜସୁନ୍ଦର ଦାସଙ୍କ ଭେଟି ଅତ୍ୟନ୍ତ ଆନନ୍ଦ ଲାଭ କରିଥିଲି। ଦୀର୍ଘ ବ୍ୟବଧାନ ପରେ ଯାଇଥିବାରୁ ରାଜଶାସିତ ଓ ଲୋକଶାସିତ ବାରିପଦା ମଧ୍ୟରେ ପ୍ରଭେଦ ସ୍ପଷ୍ଟ ହୋଇ ଜଣାପଡ଼ୁଥିଲା। କିନ୍ତୁ ମୋର ପ୍ରିୟ କର୍ମସ୍ଥଳୀ ଗୋଲପବାଗର ବାହ୍ୟରୂପରେ କୌଣସି ଉଲ୍ଲେଖନୀୟ ପରିବର୍ତ୍ତନ ଦେଖିଲି ନାହିଁ। ଲୋକସଂଖ୍ୟା ଓ ବାସଗୃହ ବୃଦ୍ଧି ପାଇବା ହେତୁ ପୂର୍ବର ଖୋଲାମେଲା ପରିବେଶ ଓ ରାସ୍ତାଘାଟର ପରିଷ୍କୃତି କେତେକ ପରିମାଣରେ ନଷ୍ଟ ହୋଇ ଯାଇଥିଲା। ମନରେ ସବୁଠାରୁ ବେଶି ଆଲୋଡ଼ନ ଆଣିଲା ରାଜବାଟୀର ଦୃଶ୍ୟ। ଯେଉଁଠି ଛଉନାଚ ଅନୁଷ୍ଠିତ ହେଉଥିଲା ଏବଂ ଯେଉଁ ଅନ୍ଦର ମହଲକୁ ସାଧାରଣ ଲୋକଙ୍କର ପ୍ରବେଶ ନିଷିଦ୍ଧ ଥିଲା, ସେଠାରେ ଶୁଭୁଛି ଛାତ୍ରଛାତ୍ରୀଙ୍କର କୋଳାହଳ ! ଏମ୍.ପି.ସି. କଲେଜର କାର୍ଯ୍ୟ ଏବେ ସେଠାରେ ଚାଲିଛି।

### 'ଝୁମୁକା' ପ୍ରକାଶନ

ଏହି ସମୟରେ ମୁଁ କେତେକ ସୂତ୍ରରୁ ଜାଣିବାକୁ ପାଇଲି ଯେ ମୋ ରଚିତ ପ୍ରାର୍ଥନା ଗୀତ ଆହେ ଦୟାମୟ ବିଶ୍ୱବିହାରୀ······କୁ ଭକ୍ତକବି ମଧୁସୂଦନଙ୍କ କୃତି ବୋଲି କେହି କେହି ଅଭିହିତ କରୁଛନ୍ତି। ଆକାଶବାଣୀରୁ ଶ୍ରୀଯୁକ୍ତ କାଳନ୍ଦୀଚରଣ ପାଣିଗ୍ରାହୀ ଥରେ ମତେ ଏହାର ସୂଚନା ଦେଇଥିଲେ। ଆଉ ଥରେ ଜଣେ ସ୍କୁଲ ପରିଦର୍ଶକ ଏହିପରି ମତ ବ୍ୟକ୍ତ କରିଥିବାର ଶୁଣିପାରିଲି। କଟକ ପ୍ରାକ୍ଟିସିଂ ବାଳିକା ଉଚ୍ଚ ବିଦ୍ୟାଳୟରେ ଜଣେ ଟ୍ରେନିଂ କଲେଜ ଛାତ୍ର ଶିକ୍ଷା ଦେଉଥିଲାବେଳେ ଅନୁରୂପ ମତ ଦେଇଥିଲେ ବୋଲି ମୋର କନ୍ୟା ସୁରଭି ଓ ମମତା ମୋ ଆଗରେ ପ୍ରକାଶ କଲେ। ସବୁଆଡ଼ୁ ବିଚାର କରି ସ୍ଥିର କଲି ମୋ କବିତାଗୁଡ଼ିକୁ ଏକତ୍ର ସଙ୍କଳନ କରି ଖଣ୍ଡିଏ ବହି କରିଦେବି। ତାହାହେଲେ ଏ ଭ୍ରମାତ୍ମକ ପ୍ରଚାର ପାଇଁ ଆଉ ଅବକାଶ ରହିବ ନାହିଁ।

ଏହି ଉଦ୍ଦେଶ୍ୟରେ ପୁରୁଣା ପାଠ୍ୟପୁସ୍ତକରୁ ଏବଂ ପତ୍ରପତ୍ରିକାମାନଙ୍କରୁ ମୋ କବିତାଗୁଡ଼ିକ ସଂଗ୍ରହ କରି 'ଝୁମୁକା' ନାମ ଦେଇ ବହିଟିଏ ପ୍ରକାଶ କଲି ୧୯୭୫ ମସିହା ଫେବୃଆରୀ ୯ ତାରିଖରେ ଶ୍ରୀରାମଚନ୍ଦ୍ର ଭବନରେ ଏହାର ଉଦ୍‌ଘାଟନ ଉତ୍ସବ ଅନୁଷ୍ଠିତ ହୋଇଥିଲା । ଉଦ୍‌ଘାଟକ ଥିଲେ ଶ୍ରୀ ଉଦୟନାଥ ଷଡ଼ଙ୍ଗୀ ଏବଂ ଉତ୍ସବରେ ପୌରୋହିତ୍ୟ କରିଥିଲେ ପଦ୍ମଶ୍ରୀ ଡକ୍ଟର କାଳିନ୍ଦୀଚରଣ ପାଣିଗ୍ରାହୀ । ଡକ୍ଟର ଶ୍ରୀରାମଚନ୍ଦ୍ର ଦାଶ, ଅଧ୍ୟାପିକା ମନୋରମା ମହାପାତ୍ର, ଶ୍ରୀ ନନ୍ଦକିଶୋର ମହାନ୍ତି, ଶ୍ରୀ ମୁରାରମୋହନ ଜେନା, ଶ୍ରୀ ପରମାନନ୍ଦ ଅଧିକାରୀ ପ୍ରମୁଖ ସାହିତ୍ୟିକ-ମାନେ ଶିଶୁସାହିତ୍ୟ ବିଷୟରେ ଭାଷଣ ଦେଇଥିଲେ । ଏହି ଉତ୍ସବର ଆୟୋଜନ କରିଥିଲେ ଡାକ୍ତର ଶୈଳେଶ୍ବର ନନ୍ଦ ଓ ମୋ ପୁଅ ପ୍ରଭାତ । ଶ୍ରୀ ନବୀନ କିଶୋର ପଟ୍ଟନାୟକ ଓ ତାଙ୍କ 'କଳିକା' ଅନୁଷ୍ଠାନର ଶିଶୁଶିଳ୍ପୀମାନେ 'ଝୁମୁକା'ର କେତେକ କବିତାକୁ ନେଇ ସେଦିନ ଏକ ମନୋଜ୍ଞ ସାଂସ୍କୃତିକ କାର୍ଯ୍ୟକ୍ରମ ପରିବେଷଣ କରିଥିଲେ ।

## ମୋ ଲେଖକ ଜୀବନର ପ୍ରଥମ ସମ୍ମାନ

ସେହି ମାସ ୨୦ ତାରିଖ ମୋ ଜୀବନର ଏକ ସ୍ମରଣୀୟ ଦିବସ । ଏ ପର୍ଯ୍ୟନ୍ତ ମୋ ସାହିତ୍ୟକୃତି ପାଇଁ ଆନୁଷ୍ଠାନିକ ଭାବରେ ମୁଁ କେଉଁଠାରେ ସମ୍ମାନିତ ହୋଇ ନ ଥିଲି । ସେହିଦିନ ଓଡ଼ିଶା ସାହିତ୍ୟ ଏକାଡେମୀ ତାଙ୍କ ବାର୍ଷିକ ଉତ୍ସବରେ ଯେଉଁ ସାହିତ୍ୟିକ ଓ ଶିଳ୍ପୀମାନଙ୍କୁ ସମ୍ବର୍ଦ୍ଧିତ କଲେ, ସେମାନଙ୍କ ମଧ୍ୟରେ ମୁଁ ଥିଲି ଅନ୍ୟତମ । ଅନ୍ୟ ସାହିତ୍ୟିକମାନଙ୍କ ଭିତରେ ଥିଲେ ଲଣ୍ଡନ ବିଶ୍ବବିଦ୍ୟାଳୟର ଅଧ୍ୟାପକ ଜେ.ଭି. ବୋଲ୍‌ଟନ୍, ସମ୍ବଲପୁରର ଶ୍ରୀ ଶଙ୍କରପ୍ରସାଦ ପାଢ଼ୀ ଓ ଶ୍ରୀ ନିତ୍ୟାନନ୍ଦ ବହିଦାର, ମୟୂରଭଞ୍ଜର ଶ୍ରୀ ମହେଶ୍ବର ନାୟକ, ଗଞ୍ଜାମର ଶ୍ରୀ ସତ୍ୟ-ନାରାୟଣ ପଣ୍ଡା, ବଲାଙ୍ଗୀରର ପଣ୍ଡିତ ଶ୍ରୀ ଅର୍ଜୁନ ହୋତା, ବୈଜ୍ଞାନିକ ଓ ଶିକ୍ଷାବିତ୍ ଡକ୍ଟର ବଂଶୀଧର ସାମନ୍ତରାୟ, ଗବେଷକ ଡକ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀ, ଲୋକରତ୍ନ ଡକ୍ଟର କୁଞ୍ଜବିହାରୀ ଦାଶ, ନାଟ୍ୟକାର ଶ୍ରୀ ରଘୁନାଥ ପଣ୍ଡା ଏବଂ ନାରୀକବି ଶ୍ରୀମତୀ ସୁନ୍ଦରମଣି ପଟ୍ଟନାୟକ ପ୍ରତ୍ୟେକଙ୍କୁ କାଚ ବନ୍ଧେଇ ହୋଇଥିବା ଗୋଟିଏ ଗୋଟିଏ ସୁନ୍ଦର ମାନପତ୍ର ଏବଂ ରୌପ୍ୟଖୋଦିତ ଉପାୟନ ଉପହାର ସ୍ବରୂପ ମିଳିଥିଲା ।

ଏହା ପରବର୍ଷ ଓଡ଼ିଶା ସରକାରଙ୍କ ଶିଶୁ ସାହିତ୍ୟ ସମିତି କଟକଠାରେ ମୋ ସମେତ ତିନିଜଣ ବର୍ଷୀୟାନ୍ ଶିଶୁ ସାହିତ୍ୟିକଙ୍କୁ ମାନପତ୍ର ଦେଇ ସମ୍ମାନିତ କଲେ । ସମ୍ବର୍ଦ୍ଧିତ ହୋଇଥିବା ଅନ୍ୟ ଦୁଇଜଣ ହେଲେ—ପଣ୍ଡିତ ଶ୍ରୀ ଉପେନ୍ଦ୍ର ତ୍ରିପାଠୀ ଓ ଶ୍ରୀ ଉଦୟନାଥ ଷଡ଼ଙ୍ଗୀ । ଉତ୍ସବରେ ପୌରୋହିତ୍ୟ କରି ତତ୍‌କାଳୀନ ଶିକ୍ଷାମନ୍ତ୍ରୀ ଶ୍ରୀ ଯଦୁନାଥ ଦାସ ମହାପାତ୍ର ପ୍ରତ୍ୟେକଙ୍କୁ ତାମ୍ରଫଳକରେ ଖୋଦିତ ଗୋଟିଏ ଗୋଟିଏ ମାନପତ୍ର ପ୍ରଦାନ କରିଥିଲେ ।

ସମ୍ମାନ ଓ ସମ୍ବର୍ଦ୍ଧନା କେବଳ ଯେ ଅତୀତକୁ ସ୍ୱୀକୃତ ଦିଏ, ତା' ନୁହେଁ, ଏହା ବର୍ତ୍ତମାନକୁ ଆନନ୍ଦମୟ କରିବା ସଙ୍ଗେ ସଙ୍ଗେ ଭବିଷ୍ୟତ ପାଇଁ ପ୍ରେରଣା ଯୋଗାଇଥାଏ । ମୋ ଜୀବନରେ ଅନ୍ତତଃ ମୁଁ ଏହା ଉପଲବ୍ଧି କରିଛି । ସତୁରି ବର୍ଷ ବୟସରେ ସରକାରୀ ସ୍ତରରେ ଦୁଇଥର ସମ୍ବର୍ଦ୍ଧିତ ହେବାପରେ ମୁଁ ନିଜକୁ ପଚାରିଲି, "ଏହି ସମ୍ମାନର ଉପଯୁକ୍ତ ହେବା ପାଇଁ ମୁଁ କରିଛି କଣ ? ଶିଶୁ ସାହିତ୍ୟର ଉନ୍ନତି ପାଇଁ ଆଉ କଣ କିଛି କରିପାରିବି ନାହିଁ ?"

## 'ଛଅଟି ଗଛ ସିରିଜ'ର ପରିକଳ୍ପନା

ପୂର୍ବରୁ କହିଛି ଯେ 'ଶିଶୁ ଦିବସ' ଉପଲକ୍ଷେ କେନ୍ଦ୍ରୀୟ ସ୍ତରରେ ଦିଲ୍ଲୀଠାରେ ଅନୁଷ୍ଠିତ ହେଉଥିବା ଶିଶୁସାହିତ୍ୟର ବିଚାରକମଣ୍ଡଳୀ ବୈଠକରେ ଯୋଗଦେବାକୁ ମୁଁ ଦୁଇଥର ସୁଯୋଗ ପାଇଥିଲି । ସେଥିରେ ଯୋଗ ଦେଇ ମୁଁ ଅନୁଭବ କରିଥିଲି ଯେ ଓଡ଼ିଆ ଶିଶୁ ପୁସ୍ତକଗୁଡ଼ିକ ଅନ୍ୟାନ୍ୟ ଆଞ୍ଚଳିକ ଭାଷାରେ ପ୍ରକାଶିତ ପୁସ୍ତକର ସମକକ୍ଷ ହେବା ତ ଦୂରର କଥା, ତୁଳନା ସ୍ତରକୁ ଯିବାର ଯୋଗ୍ୟତା ମଧ୍ୟ ଅର୍ଜନ କରିପାରି ନାହିଁ । ଆମ ବହିଗୁଡ଼ିକରେ ଯଥେଷ୍ଟ ସଂଖ୍ୟାରେ ଚିତ୍ର ସନ୍ନିବେଶିତ ହୋଇ ନାହିଁ, ପୁଣି ମୁଦ୍ରଣ ପରିପାଟୀ ମଧ୍ୟ ନିକୃଷ୍ଟ ଧରଣର । ଏ ଭଳି ପୁସ୍ତକର ପ୍ରକାଶନ ବ୍ୟୟସାପେକ୍ଷ ହୋଇଥିବା ଦୃଷ୍ଟିରୁ ପେସାଦାର ପୁସ୍ତକ ପ୍ରକାଶକମାନେ ସେ ଦିଗରେ କିଛି କରିପାରୁନାହାନ୍ତି । ପୁସ୍ତକର ମୂଲ୍ୟ ଲୋକମାନଙ୍କର କ୍ରୟଶକ୍ତିର ସୀମା ଲଙ୍ଘନ କରିଗଲେ ବିକ୍ରୀରେ ବ୍ୟାଘାତ ଘଟିବା ସ୍ୱାଭାବିକ । 'ନ୍ୟାଶନାଲ୍ ବୁକ୍ ଟ୍ରଷ୍ଟ' ଯେଉଁ କେତେ ଖଣ୍ଡ ଶିଶୁ ପୁସ୍ତକର ଓଡ଼ିଆ ଅନୁବାଦ ପ୍ରକାଶ କରିଛନ୍ତି, ତାର ମୂଲ୍ୟ ସୁଲଭ ହେଲେହେଁ ସଂଖ୍ୟା ବେଶି ନୁହେଁ । ଫଳରେ ମାଡ୍ରାଜରୁ ପ୍ରକାଶ ପାଉଥିବା ଛବିଳ 'ଜହ୍ନମାମୁଁ' ମାସିକ ପତ୍ରିକା ବହୁ ସଂଖ୍ୟାରେ ଓଡ଼ିଶାରେ ବିକ୍ରୀ ହେଉଛି । ଉକ୍ତ ପତ୍ରିକାର ଭାଷା ଓ ବିଷୟବସ୍ତୁ ଅନେକ ସ୍ଥଳରେ ଶିଶୁ-ଉପଯୋଗୀ ନୁହେଁ ଜାଣି ସୁଦ୍ଧା 'ନାହିଁ ମାମୁଁଠାରୁ କଣାମାମୁଁ ଭଲ' ନ୍ୟାୟରେ ଅଭିଭାବକମାନେ ତାହାକୁ କିଣି ନିଜ ପିଲାମାନଙ୍କ ହାତରେ ଦେଉଛନ୍ତି ।

କିଛି ଆର୍ଥିକ କ୍ଷତି ସହିବାକୁ ପ୍ରସ୍ତୁତ ନ ହେଲେ ଓଡ଼ିଆରେ ସଚିତ୍ର ଶିଶୁ ପୁସ୍ତକ ପ୍ରକାଶ କରିହେବ ନାହିଁ ଜାଣି ମୁଁ ଏ ଦିଗରେ କିଛି କରିବା ପାଇଁ ମନସ୍ଥ କଲି । ଦେଶବିଦେଶର ଲୋକକଥା, ନୀତିଗଳ୍ପ, ପୁରାଣ ଓ କିମ୍ବଦନ୍ତୀ ପ୍ରଭୃତିରୁ ବାଛି ବାଛି ସରଳ ଭାଷାରେ ଶିଶୁଉପଯୋଗୀ ଗଳ୍ପଗୁଡ଼ିଏ ଲେଖିଲି । ସେଗୁଡ଼ିକୁ ଯଥାସମ୍ଭବ ସଚିତ୍ର କରି ପ୍ରତି ବହିରେ ଛଅଟି ଲେଖାଏଁ ଗଳ୍ପ ଦେଇ ଗୋଟିକ ପରେ ଗୋଟିଏ ପ୍ରକାଶ କଲି । ଏ ସିରିଜ୍‌ର ପ୍ରଥମ ବହି 'ଛଅଟି ଗଛ ଅଠର ଫୁଲ' ୧୯୭୭ ମସିହା ଗଣେଶଚତୁର୍ଥୀ ଦିନ ବଜାରକୁ ଗଲା । ଫୁଲ ଯେପରି ଗଛର ଶୋଭା ବର୍ଦ୍ଧନ କରେ, ଚିତ୍ରଗୁଡ଼ିକ ସେହିପରି ଗଳ୍ପକୁ ଆକର୍ଷଣୀୟ କରୁଥିବାରୁ

ବହିର ଏପରି ନାମକରଣ କରାଯାଇଥିଲା । 'ଛଅଟି ଗଳ୍ପ ଅଠର ଫୁଲ' ଅର୍ଥ ଛଅଟି ଗଳ୍ପ ଓ ଅଠରଟି ଚିତ୍ର । ଏ ସିରିଜ୍‌ରେ ନଅ ଖଣ୍ଡି ବହି ପ୍ରକାଶ ପାଇଛି । ଅନ୍ୟ ଆଠ ଖଣ୍ଡର ନାମ ହେଲା 'ଛଅଟି ଗଳ୍ପ, ସତର ଫୁଲ' 'ଛଅଟି ଗଳ୍ପ କୋଡ଼ିଏ ଫୁଲ', 'ଛଅଟି ଗଳ୍ପ ବାଇଶ ଫୁଲ', 'ଛଅଟି ଗଳ୍ପ ତେଇଶ ଫୁଲ', 'ଛଅଟି ଗଳ୍ପ ଚବିଶ ଫୁଲ', 'ମରଣ ଦୋଳି', 'ସୁବର୍ଣ୍ଣ ସେତୁ' ଏବଂ 'ସାଗର କନ୍ୟା' । ୧୯୭୭ ସେପ୍‌ଟେମ୍ବରଠାରୁ ୧୯୮୧ ମାର୍ଚ୍ଚ ମଧ୍ୟରେ ଏହି ବହିଗୁଡ଼ିକ ପ୍ରକାଶ ପାଇଥିଲା । ଏଥିରେ ଥିବା ଚିତ୍ରଗୁଡ଼ିକର ବିନ୍ୟାସ ଓ ମୁଦ୍ରଣ କାର୍ଯ୍ୟରେ ମୋର ପୁଅ ପ୍ରହ୍ଲାଦ ଓ ପ୍ରେସର ପରିଚାଳକ ବିଶ୍ୱଜୀବନ ଅନେକ ସାହାଯ୍ୟ କରିଥିଲେ । ମୋର ନିଜର କୌଣସି ବିକ୍ରୟ ସଂସ୍ଥା ନ ଥିଲେ ହେଁ ବହିଗୁଡ଼ିକ ଶସ୍ତା ଓ ଚିକ୍କଣ ହୋଇଥିବାରୁ ବିକ୍ରୟରେ କିଛି ଅସୁବିଧା ହୋଇ ନ ଥିଲା ।

୧୯୭୯ ଆନ୍ତର୍ଜାତିକ ଶିଶୁ ସମ୍ବତ୍ସର ଉପଲକ୍ଷେ ଏକ ମାସ ପାଇଁ ମୁଁ ଏହି ବହିଗୁଡ଼ିକ ପିଲାମାନଙ୍କୁ ରିହାତି ମୂଲ୍ୟରେ ବିକ୍ରୀ କରିଥିଲି ।

## ବିଭିନ୍ନ ସ୍ଥାନ ପରିଦର୍ଶନ

ପ୍ରେସ କାର୍ଯ୍ୟରୁ ଅବ୍ୟାହତି ମିଳିବାରୁ ଥରେ ମୁଁ ଆମ ଗାଡ଼ିରେ **ସୁନାବେଡ଼ା** ଯିବା ଉଦ୍ଦେଶ୍ୟରେ ସପରିବାର ବାହାରିଲି । ବ୍ରହ୍ମପୁରଠାରେ ରାତି କଟାଇବାକୁ ହେଲା । ସକାଳେ ତପ୍ତପାଣି ଦର୍ଶନ କଲୁ । ଅରଣ୍ୟ ଭିତରେ ଗୋଟିଏ ପ୍ରଶସ୍ତ ପଥର କୁଣ୍ଡ ଭୂଗର୍ଭରୁ ଉତ୍‌ଥିତ ତପ୍ତଜଳରେ ପୂର୍ଣ୍ଣ ହୋଇଥାଏ । ସେହି ଜଳର ରୋଗନିବାରକ ଶକ୍ତି ଅଛି ବୋଲି ଶୁଣିଲୁ । ସେଠାରୁ ଅନେକ ପାହାଡ଼ିଆ ଘାଟି ପାର ହୋଇ ଜୟପୁରବାଟେ ସୁନାବେଡ଼ା ଗଲୁ । ସେଠାରେ ମୋ ଜାମାତା ସତ୍ୟନାରାୟଣ ହିନ୍ଦୁସ୍ଥାନ ଏରୋନଟିକ୍‌ସ୍ ଲିମିଟେଡ୍ ଅଧୀନରେ ମୁଖ୍ୟ ତତ୍ତ୍ୱାବଧାୟକ ରୂପେ କାର୍ଯ୍ୟ କରୁଥାନ୍ତି । ଦୁଇଦିନ ରହିବା ପରେ ଆମେ ସେଠାରୁ ଅନ୍ୟ ଏକ ରାସ୍ତାରେ କଟକ ଫେରିଲୁ ।

ସୁଦୀର୍ଘ ସାଳୁର ଘାଟି ଅତିକ୍ରମ କରି ଆନ୍ଧ୍ରପ୍ରଦେଶ ଦେଇ ବ୍ରହ୍ମପୁର ଆସିବାକୁ ହେଲା । ବାଟରେ ବାଲୁଗାଁଠାରେ ଓହ୍ଲାଇ ଚିଲିକାହ୍ରଦ ଦେଖିଲୁ । ଲଞ୍ଚରେ ବୁଲିବାବେଳେ କବିବର ରାଧାନାଥଙ୍କ ଚିଲିକା ବର୍ଣ୍ଣନା ମନେ ପଡ଼ୁଥାଏ ।

୧୯୭୮ ଅପ୍ରେଲ ୨୫ ତାରିଖ ଦିନ ଯଦୁମଣି ସାହିତ୍ୟ ସଂସଦ **ଉଦୟପୁର** ତାଙ୍କ ବାର୍ଷିକ ଉତ୍ସବରେ ମୋତେ ସମ୍ବର୍ଦ୍ଧିତ କରିଥିଲେ । ସେଠାକୁ ଯାଇ ମୁଁ ଓଡ଼ିଶାର ଜଣେ ବିଶିଷ୍ଟ ସାହିତ୍ୟପ୍ରେମୀ ଓ ସାଧକ ଦାଶରଥି ପଟ୍ଟନାୟକଙ୍କ ପରିଚୟ ଲାଭ କରି ନିଜକୁ ଧନ୍ୟ ମନେ କରିଥିଲି । ତାଙ୍କ ଅକ୍ଳାନ୍ତ ଉଦ୍ୟମରେ ଗଢ଼ା ବାଣୀନିଧି ପାଠାଗାର ଓ ସଂଗ୍ରହାଳୟ ମୋତେ ଅଭିଭୂତ କରିଦେଇଥିଲା ।

୧୯୭୯ ଜାନୁଆରୀ ମାସରେ ଓଡ଼ିଶା ସରକାରଙ୍କ ଶିଶୁ ସାହିତ୍ୟ ସମିତି ପୁରୀ ବିଶ୍ୱମ୍ଭର ବିଦ୍ୟାପୀଠରେ ଏକ ଆଲୋଚନାଚକ୍ରର ଆୟୋଜନ କରିଥିଲେ । ମୁଁ ଓ ମୋର କନ୍ୟା ଶୈଳବାଳା ଉକ୍ତ ସଭାରେ ଯୋଗ ଦେଇ ଆଲୋଚନାରେ ଅଂଶ ଗ୍ରହଣ କରିଥିଲୁ । ସଭାକାର୍ଯ୍ୟ ଶେଷରେ ମୁଁ ପୁରୀ ଜିଲା ସ୍କୁଲକୁ ଯାଇ ପ୍ରଧାନ ଶିକ୍ଷକ ତଥା ମୋର ପୂର୍ବତନ ଗୁରୁ ଶ୍ରୀ ରାମଚନ୍ଦ୍ର ପଣ୍ଡାଙ୍କୁ ଭେଟିଥିଲି । ଦୀର୍ଘକାଳ ପରେ ମୋତେ ଦେଖି ସେ ଅତ୍ୟନ୍ତ ଆନନ୍ଦିତ ହୋଇଥିଲେ ।

୧୯୭୯ ମେ ୧୨ ତାରିଖରେ ଜାତୀୟ କବି ବୀରକିଶୋର ସାହିତ୍ୟ ସଂସଦ ତରଫରୁ ବୁର୍ଲାଠାରେ ଏକ ଶିଶୁ ପାଠାଗାର ଉଦ୍‌ଘାଟିତ ହେଉଥିଲା । ସେହି ଉତ୍ସବରେ ଜଣେ ସମ୍ମାନିତ ଅତିଥି ଭାବରେ ଯୋଗ ଦେଇଥିଲି । ବୀରବାବୁ ମୋ ପାଇଁ କେବଳ 'ଜାତୀୟ କବି' ନ ଥିଲେ । ସେ ଥିଲେ ଜଣେ ଗୁଣଗ୍ରାହୀ ବନ୍ଧୁ, ଆତ୍ମୀୟଠାରୁ ଅଧିକ ଆପଣାର

୧୯୭୯ ବର୍ଷଟି ଆନ୍ତର୍ଜାତିକ ଶିଶୁ ସମ୍ବତ୍ସର ରୂପେ ସର୍ବତ୍ର ପାଳିତ ହେଉଥିଲା । ଏହି ଉପଲକ୍ଷେ କଟକର 'କଳିକା' ସାଂସ୍କୃତିକ ଅନୁଷ୍ଠାନ ତାଙ୍କ ବାର୍ଷିକ ଉତ୍ସବରେ ମୋତେ ସଂବର୍ଦ୍ଧିତ କରିଥିଲେ । ଏହାର କିଛି ଦିନପରେ ଢେଙ୍କାନାଳ କଲେଜର ଜାତୀୟ ସେବା ସଂଗଠନ ଦ୍ୱାରା ଆହୂତ ଶିଶୁମେଳାରେ ମୁଖ୍ୟ ବକ୍ତାଭାବରେ ଯୋଗ ଦେଇଥିଲି ।

ତା ୧୩ । ୪ । ୭୯ ରିଖରେ ପ୍ରଜାତନ୍ତ୍ର ପ୍ରଚାର ସମିତି ବିପ୍ଳବ ମିଳନ ମଣ୍ଡପରେ ଏକ ଶିଶୁମେଳାର ଆୟୋଜନ କରିଥିଲେ । ମୁଁ ସେଥିରେ ସଭାପତିତ୍ୱ କରିଥିଲି ।

ଏହି ସମୟରେ ଶ୍ରୀ ପ୍ରଶାନ୍ତ ନନ୍ଦଙ୍କଦ୍ୱାରା ପ୍ରଯୋଜିତ ଓଡ଼ିଆ କଥାଚିତ୍ର 'ବଳିଦାନ'ରେ ବିଶିଷ୍ଟ ସଂଗୀତଜ୍ଞ ଶ୍ରୀ ପ୍ରଫୁଲ୍ଲ କରଙ୍କ ଉଦ୍ୟମରେ ମୋ ରଚିତ ପ୍ରାର୍ଥନା ଗୀତ 'ଆହେ ଦୟାମୟ ବିଶ୍ୱବିହାରୀ' ସଂଯୋଜିତ ହୋଇଥିଲା । କଣ୍ଠଦାନ କରିଥିଲେ ଶ୍ରୀ କର ଓ ଗାୟିକା ବାଣୀ ଜୟରାମ ।

୧୯୭୯ ମସିହା ସେପ୍ଟେମ୍ବର ୨୫ ତାରିଖରେ ବଡ଼ଚଣା ମହାବିନାୟକ ବିଦ୍ୟାଳୟଠାରେ ପଣ୍ଡିତ ଶ୍ରୀ ଉପେନ୍ଦ୍ର ତ୍ରିପାଠୀ, ଶ୍ରୀ ଉଦୟନାଥ ଷଡ଼ଙ୍ଗୀ ଓ ମୁଁ ଗୋକର୍ଣ୍ଣିକା ସାହିତ୍ୟ ସମାଜଦ୍ୱାରା ସଂବର୍ଦ୍ଧିତ ହୋଇଥିଲୁ । ଅନୁଷ୍ଠାନର ସଭାପତି ଶ୍ରୀ ବୈକୁଣ୍ଠନାଥ ରଥ, ସାଧାରଣ ସଂପାଦକ ଶ୍ରୀ ରମାକାନ୍ତ ଜେନା ଓ ସଦସ୍ୟମାନଙ୍କର ଶ୍ରଦ୍ଧା ଓ ସମ୍ମାନ ମୋର ଅଭୁଲା ସ୍ମୃତି ହୋଇ ରହିଛି ।

ସେହି ବର୍ଷ ଭାରତୀୟ ଜାତୀୟ ସଂଗଠନ ପକ୍ଷରୁ ଡିସେମ୍ବର ୨୧ ତାରିଖରେ କଟକ ଦୋଳମୁଣ୍ଡେଇସ୍ଥିତ ବାବା ସାଗରଦାସ ବିଦ୍ୟାପୀଠରେ ଏବଂ ଏହାର ଗ୍ରୀନ୍‌ଫିନ-

ପରେ କଟକ କଳାବିକାଶ କେନ୍ଦ୍ରଠାରେ ଅନୁଷ୍ଠିତ ଶିଶୁପତ୍ରିକା 'ଝିକମିକ'ର ବାର୍ଷିକ ଉତ୍ସବରେ ଅନ୍ୟମାନଙ୍କ ସହିତ ମୁଁ ସଂବର୍ଦ୍ଧିତ ହୋଇଥିଲି ।

୧୯୭୯ ବର୍ଷର ଘଟଣା ମଧ୍ୟରେ ମୋର **ଦଶପଲ୍ଲା** ଯାତ୍ରା ଅନ୍ୟତମ । ଦଶପଲ୍ଲା ଥିଲା ପରଲୋକଗତ ମୋ ଶ୍ୱଶୁରଙ୍କର କର୍ମସ୍ଥଳୀ । ମୋ ସ୍ତ୍ରୀଙ୍କର ଜନ୍ମ ମଧ୍ୟ ସେହିଠାରେ । ମୁଁ କଲେଜରେ ପଢ଼ିଲାବେଳେ କିଛିଦିନ ଦଶପଲ୍ଲାର ପିଲାମାନଙ୍କ ସଙ୍ଗେ ମେସ୍‌ରେ ରହିଥିଲି । ତେଣୁ ମୋ ପରିବାର ପକ୍ଷରେ ଦଶପଲ୍ଲାର ଏକ ସ୍ୱତନ୍ତ୍ର ଆକର୍ଷଣ ଅଛି । ଥରେ ଆମ୍ଭେମାନେ ସୁବିଧା ଦେଖି ସେଠାକୁ ଯାଇଥିଲୁ । ଏହି ଅବସରରେ ଦଶପଲ୍ଲା ଗଡ଼କୁ ଯାଇ ରାଜବାଟୀ ଏବଂ ପ୍ରଧାନ ସ୍ଥାନମାନ ମଧ୍ୟ ବୁଲି ବୁଲି ଦେଖିଥିଲୁ ।

୧୯୮୦ ମସିହା ଜାନୁଆରୀ ୧୩ ତାରିଖ ଦିନ ଫକୀରମୋହନ ସାହିତ୍ୟ ପରିଷଦଦ୍ୱାରା ଆୟୋଜିତ ବ୍ୟାସକବିଙ୍କ ଜୟନ୍ତୀ ଉତ୍ସବରେ ଯୋଗ ଦେବାକୁ ସପରିବାର **ବାଲେଶ୍ୱର** ଯାଇଥିଲି । ସେତେବେଳେ ମୋର ଦ୍ୱିତୀୟ ଜାମାତା ଡାକ୍ତର ସତ୍ୟନାରାୟଣ ଶତପଥୀ ବାଲେଶ୍ୱରରେ ମୁଖ୍ୟ ଜିଲ୍ଲା ଚିକିତ୍ସାଧିକାରୀ ଥିଲେ । ଜୟନ୍ତୀ ଉତ୍ସବର ଗୋଟିଏ ଦିନ ଶିଶୁସାହିତ୍ୟର ଆଲୋଚନା ପାଇଁ ଉଦ୍ଦିଷ୍ଟ ଥିଲା । ସେଠାରେ 'ପାଠ୍ୟପୁସ୍ତକ ଓ ଶିଶୁସାହିତ୍ୟ' ବିଷୟରେ ମୁଁ ଏକ ପ୍ରବନ୍ଧ ପାଠକରିଥିଲି ।

ବାଲେଶ୍ୱରଠାରୁ ଅଳ୍ପଦୂରରେ **ରେମୁଣା** । ସେଠାର କ୍ଷୀରଚୋରା ଗୋପୀନାଥଙ୍କୁ ଦର୍ଶନ କରିବାକୁ ସମସ୍ତଙ୍କର ଇଚ୍ଛା ହେଲା । ତେଣୁ ସଭାକାର୍ଯ୍ୟ ପରେ ସେଠାକୁ ପିଲାମାନଙ୍କ ସହ ଗଲି । କବିବର ରାଧାନାଥ ତାଙ୍କ ଉଷା କାବ୍ୟରେ ରାଜକୁମାରୀର ବିରହ ମୃଗୟା ସ୍ଥଳୀରୂପେ ଏ ସ୍ଥାନର ଯେଉଁ ଚିତ୍ର ଦେଇଅଛନ୍ତି, ତାହା ମନେପଡ଼ିଲା—

'ପ୍ରେମ-ଶରାଙ୍କିତ ଲଳିତ ମୃଗର ଯହିଁ ମୃଗୟା-ସ୍ଥଳୀ
ଏବେ ଛନ୍ତି ସପ୍ତସ୍ରୋତାତୀରେ ଗୋପ-ନେପଥ୍ୟଧାରୀ ।'

ମୁଖ୍ୟ ରାଜପଥଠାରୁ କିଛି ଦୂରରେ ଏକ କ୍ଷୁଦ୍ର ପଲ୍ଲୀ ସନ୍ନିକଟ ନିଭୃତ ସ୍ଥଳୀରେ ଅବସ୍ଥିତ ଏହି ମନ୍ଦିରର ଶୋଭା ଅତି ମନୋରମ । ମନ୍ଦିର ବେଢ଼ାଭିତରେ ଥିବା ଚୌଶାଳାରେ କେତେଗୋଟି ହୃଷ୍ଟପୁଷ୍ଟ ଗାଈ ମନରେ କ୍ଷୀରଚୋରାଙ୍କର ସ୍ମୃତି ଆଣି ଦେଉଥିଲେ ।

ଏହି ରେମୁଣା କଥା କହିଲାବେଳେ ମନେ ପଡ଼େ ଉତ୍କଳ ଭାରତୀଙ୍କର ଅନ୍ୟତମ ବରପୁତ୍ର ଆଦର୍ଶ ଶିକ୍ଷକ ଚନ୍ଦ୍ରମୋହନ ମହାରଣାଙ୍କ କଥା । ଏହି ଗାଁର ଧୂଳିମାଟି ଦେଖିଛି ତାଙ୍କ ଜନ୍ମ, ଶୈଶବ ଓ ଦୈନ୍ୟକ୍ଲିଷ୍ଟ ଜୀବନର ସାଧନା । ସେହି ପୁଣ୍ୟସ୍ମୃତି ବହନ କରି ରେମୁଣା ଆଜି ଧନ୍ୟ ।

## ଏକ ଅପ୍ରତ୍ୟାଶିତ ସୁସମ୍ବାଦ

୧୯୮୦ ମସିହା ଜାନୁଆରୀ ୨୪ ତାରିଖ । ସବୁଦିନପରି ସେଦିନ ମୁଁ ଭୋରରୁ ତଳ ମହଲାକୁ ଓହ୍ଲାଇ ଆସି ଖବରକାଗଜ ପଢ଼ିବସିଲି । ଗୋଟିଏ ସମ୍ବାଦ ମୋର ଦୃଷ୍ଟି ଆକର୍ଷଣ କଲା—'ଓଡ଼ିଶା ସାହିତ୍ୟ ଏକାଡେମୀ, ଶ୍ରେଷ୍ଠ ଲେଖକଙ୍କୁ ପୁରସ୍କାର ଘୋଷଣା' । ଶେଷଯାଏ ପଢ଼ିଗଲି । ସବାଶେଷରେ ଲେଖାଥିଲା—ଶିଶୁ ସାହିତ୍ୟରେ 'ଝୁମୁକା' : ପ୍ରଣେତା ଶ୍ରୀ ରାମକୃଷ୍ଣ ନନ୍ଦ ।

ଆଉ ଥରେ ପଢ଼ିଲି । ଏକ ଅନିର୍ବଚନୀୟ ଆନନ୍ଦରେ ମନ ପୂରିଉଠିଲା । ଏହା ପରେ ପରେ ଏକାଡେମୀ ଅଫିସରୁ ପତ୍ର ଆସିଲା । ଫେବୃଆରୀ ୮ ତାରିଖରେ ଭୁବନେଶ୍ୱର ରବୀନ୍ଦ୍ର ମଣ୍ଡପରେ ଉପସ୍ଥିତ ହୋଇ ଏକ ହଜାର ଟଙ୍କା ପୁରସ୍କାର ଓ ମାନପତ୍ର ଗ୍ରହଣ କଲି ।

ଠିକ୍ ଦୁଇଦିନପରେ ଶ୍ରୀରାମଚନ୍ଦ୍ର ଭବନରେ କଟକର 'ହିଦସ୍ବରାନୁ', 'ଶିଶୁସାଥୀ' ଓ ନୃସିଂହ କିଶୋର ସଂଘ ମିଳିତଭାବରେ ମୋତେ ସମ୍ବର୍ଦ୍ଧନା ଜଣାଇଥିଲେ । ଉତ୍ସବଟିର ଆୟୋଜନ କରିଥିଲେ ଶିଶୁସାହିତ୍ୟିକ ଶ୍ରୀ କ୍ଷୀରୋଦଚନ୍ଦ୍ର ପୋଥାଲ ।

ଫେବୃଆରୀ ୧୨ ତାରିଖରେ ରେଭେନ୍‌ସା କଲିଜିଏଟ୍ ସ୍କୁଲର ଛାତ୍ର ଓ ଶିକ୍ଷକମାନେ ବିଦ୍ୟାଳୟର ବାର୍ଷିକ ପୁରସ୍କାର ବିତରଣ ଉତ୍ସବରେ ମୋତେ ସେ ସ୍କୁଲର ଜଣେ ପୁରାତନ ଛାତ୍ରରୂପେ ସମ୍ବର୍ଦ୍ଧିତ କରି ଏକ ମାନପତ୍ର ପ୍ରଦାନ କରିଥିଲେ ।

କଟକର ଜଣେ ଉତ୍ସାହୀ ଶିକ୍ଷକ ଏବଂ ଲେଖକ ଶ୍ରୀ ଧ୍ରୁବଚରଣ ପଣ୍ଡା ମୋର ଖଣ୍ଡେ ଜୀବନୀ ପୁସ୍ତକ ଲେଖିବେ ବୋଲି ବହୁଦିନରୁ ଇଚ୍ଛା କରିଥିଲେ । ସ୍ଥାନୀୟ ପ୍ରକାଶନ ସଂସ୍ଥା 'ସନ୍ତୋଷ ପବ୍‌ଲିକେସନ୍‌ସ୍'ର ଶ୍ରୀ ଉମେଶଚନ୍ଦ୍ର ସାହୁଙ୍କଦ୍ୱାରା ସେହି ପୁସ୍ତକଟି 'ଶିଶୁପ୍ରେମୀ ରାମକୃଷ୍ଣ' ନାମରେ ୧୯୮୧ରେ ପ୍ରକାଶିତ ହେଲା ।

## ଓଡ଼ିଆ ଶିଶୁସାହିତ୍ୟ ସଂକଳନ

ଏହି ସମୟରେ ଓଡ଼ିଶା ସାହିତ୍ୟ ଏକାଡେମୀର ସମ୍ପାଦକଙ୍କଠାରୁ ଖଣ୍ଡେ ଚିଠି ପାଇଲି ଯେ ଏକାଡେମୀ ଖଣ୍ଡିଏ ଓଡ଼ିଆ ଶିଶୁସାହିତ୍ୟ ସଂକଳନ ପ୍ରକାଶ କରିବାକୁ ନିଷ୍ପତ୍ତି ନେଇଛନ୍ତି ଏବଂ ମୁଁ ରାଜି ହେଲେ ସେ ଏହାର ପ୍ରସ୍ତୁତି ଦାୟିତ୍ୱ ମୋ ଉପରେ ଅର୍ପଣ କରିବେ । କାର୍ଯ୍ୟଟି ପାଇଁ ବାରଶହ ଟଙ୍କା ପାରିତୋଷିକ ମିଳିବ । ଏହା ମୋ ପକ୍ଷରେ ଥିଲା ଏକ ଆହ୍ୱାନ । ନାହିଁ କରିଦେଲେ ଅନ୍ୟ କେହି ଦାୟିତ୍ୱ ନେଇ କାର୍ଯ୍ୟଟି ସମ୍ପାଦନ କରିବେ, କିନ୍ତୁ ମୁଁ କଲେ ବହୁ ଅଭିଜ୍ଞତା ଅର୍ଜନ କରିବି । ପୂର୍ବରୁ ଆମ ଶିଶୁସାହିତ୍ୟର କୌଣସି ସଂକଳନ ପ୍ରକାଶ ପାଇ ନ ଥିଲା । ତେଣୁ ସହାୟକ ଗ୍ରନ୍ଥ ବା ଅନ୍ୟ କୌଣସି ସୂତ୍ରରୁ ଉଲ୍ଲେଖନୀୟ ସାହାଯ୍ୟ ମିଳିବାର ଆଶା

ନ ଥିଲି । ତଥାପି ସମ୍ମତି ଜଣାଇ ପୂର୍ଣ୍ଣପ୍ରାଣରେ ଏହି କାର୍ଯ୍ୟରେ ଲାଗିପଡ଼ିଲି । ଯେଉଁ କାର୍ଯ୍ୟରେ ଯେତେ ଅସୁବିଧା ଥାଏ, ତାହା କରିପାରିଲେ ସେତିକି ଆନନ୍ଦ ମିଳେ । ମୋ ଜୀବନର ବହୁ ଘଟଣାରେ ମୁଁ ଏହା ଅନୁଭବ କରିଛି । ଶ୍ୱାସ-ରୋଗର ତାଡ଼ନା ସତ୍ତ୍ୱେ ପ୍ରତ୍ୟହ ସନ୍ଧ୍ୟାବେଳେ ଲାଇବ୍ରେରୀକୁ ଯାଇ ସଂକଳନ ପାଇଁ ଉପାଦାନ ସଂଗ୍ରହ କଲି । 'ଜହ୍ନମାମୁଁ' ପତ୍ରିକା ଦେଖିବାରେ ସ୍ନେହୀବନ୍ଧୁ ଶ୍ରୀ ବିଚିତ୍ରାନନ୍ଦ କର ମୋତେ ସାହାଯ୍ୟ କରିଥିଲେ । ନିର୍ଦ୍ଦିଷ୍ଟ ସମୟ ମଧ୍ୟରେ କାର୍ଯ୍ୟଟି ଶେଷକରି ୧୯୮୧ ମାର୍ଚ୍ଚ ୨୭ ତାରିଖରେ ଏକାଡେମୀ କାର୍ଯ୍ୟାଳୟରେ ପାଣ୍ଡୁଲିପିଟି ଦେଇ-ଆସିବା ପରେ ମୋତେ ନିଶ୍ଚିନ୍ତ ଲାଗିଲା ।

ଏହା ପରେ ପରେ ଏକାଡେମୀ କର୍ତ୍ତୃପକ୍ଷ ମୋତେ ଆଉ ଗୋଟିଏ ଦାୟିତ୍ୱ ଦେଲେ । ଓଡ଼ିଆ ଶିଶୁ ସଙ୍ଗୀତ ବା ନାନାବାୟା ଗୀତର ଏକ ସଂକଳନ ପ୍ରସ୍ତୁତ କରିବାକୁ ହେବ । କିଛିଦିନ ପରିଶ୍ରମ କରି ସେ କାର୍ଯ୍ୟଟି ମଧ୍ୟ ଶେଷ କଲି । ଏଥିମଧ୍ୟରେ ଉକ୍ତ ଦୁଇଟିଯାକ ସଂକଳନ ଓଡ଼ିଶା ସାହିତ୍ୟ ଏକାଡେମୀଙ୍କଦ୍ୱାରା ପ୍ରକାଶିତ ହୋଇସାରିଛି ।

୧୯୮୧ ଏପ୍ରିଲ ୧୦ ତାରିଖରେ ବାଙ୍କ ସ୍ଥିତ ଛାତ୍ରାବାସର ବାର୍ଷିକ ଉତ୍ସବକୁ ମୁଖ୍ୟ ଅତିଥି ଭାବରେ ନିମନ୍ତ୍ରିତ ହୋଇ ଅନୁଗୁଳ ଯାଇଥିଲି । ଏହା ପୂର୍ବରୁ ମୁଁ କେବେ ସେଠାକୁ ଯାଇ ନ ଥିଲି । ଅନେକ ଦିନପରେ ନବବାବୁଙ୍କୁ ଦେଖି ଆନନ୍ଦ ଲାଗିଲା । ଏହି ଅବସରରେ ଶ୍ରୀମତୀ ମାଲତୀ ଚୌଧୁରୀ ଓ 'ସଂସାର'ର ପୂର୍ବତନ ଲେଖକ ଶ୍ରୀ ବିଭୂତିଭୂଷଣ ମହାନ୍ତିଙ୍କ ସହ ମଧ୍ୟ ସାକ୍ଷାତର ସୁଯୋଗ ମିଳିଲା ।

ଏହି ବର୍ଷ ନଭେମ୍ବର ପହିଲା ଦିନ ଆମ ଗ୍ରାମ ଏମ୍.ଇ.ସ୍କୁଲର ବାର୍ଷିକ ପୁରସ୍କାର ବିତରଣ ଉତ୍ସବରେ ଯୋଗ ଦେଇଥିଲି । ମୋର ପିତା ଗ୍ରାମରେ ପ୍ରଥମ ନି.ପ୍ରା. ସ୍କୁଲ ବସାଇ ସେଥିରେ ମାସିକ ଛଅ ଟଙ୍କା ବେତନରେ ଶିକ୍ଷକତା କରିଥିଲେ । ତାଙ୍କର ସ୍ମୃତିରକ୍ଷା ଉଦ୍ଦେଶ୍ୟରେ ମୁଁ 'ମଧୁସୂଦନ ସ୍ମାରକୀ ବୃତ୍ତି' ନାମକ ଏକ ପାଣ୍ଠି ଗଢ଼ି ପ୍ରତି ବର୍ଷ ସପ୍ତମ ଶ୍ରେଣୀର ଦୁଇଜଣ ପିଲାଙ୍କୁ ଆର୍ଥିକ ସାହାଯ୍ୟ ଦେବି ବୋଲି ସେହି ସଭାରେ ଘୋଷଣା କରିଥିଲି ।

ସେହି ବର୍ଷ ନଭେମ୍ବର ୧୫ ତାରିଖରେ ଚୌଦ୍ୱାରର ପ୍ରାଥମିକ ଶିକ୍ଷାମଣ୍ଡଳ-ଦ୍ୱାରା ଆୟୋଜିତ ଶିଶୁମେଳାରେ ମୁଖ୍ୟ ଅତିଥିଭାବରେ ଯୋଗ ଦେବାର ସୁଯୋଗ ପାଇଲି । ମୋ ସଙ୍ଗରେ ଯାଇଥିଲେ ଅଧ୍ୟକ୍ଷ ଶ୍ରୀ ପଠାଣି ପଟ୍ଟନାୟକ । ସଭାରେ ଯୋଗ ଦେବା ପୂର୍ବରୁ ଆମେ ସ୍ୱର୍ଗତ ଲକ୍ଷ୍ମୀନାରାୟଣ ସାହୁଙ୍କ ସାଧନାପୀଠକୁ ଯାଇ ହିନ୍ଦ୍ ସେବକ ସଂଘର ଆଶ୍ରମ ବୁଲି ଦେଖିଥିଲୁ ।

୧୯୮୧ ବର୍ଷ ଶେଷ ହେବାପୂର୍ବରୁ ମୋତେ ଆଉ ଦୁଇଟି ଅନୁଷ୍ଠାନ ପକ୍ଷରୁ ସମ୍ବର୍ଦ୍ଧନା ଦିଆଯାଇଥିଲା । ଶ୍ରୀ ରାଜକିଶୋର ରାଜଙ୍କଦ୍ୱାରା ପ୍ରତିଷ୍ଠିତ 'ନୀଳଶୈଳ'ର

ନବମ ବାର୍ଷିକ ମିଳନ ଉତ୍ସବରେ ନଭେମ୍ବର ୨୯ ତାରିଖରେ ମୁଁ ସମ୍ମାନିତ ହୋଇଥିଲି । ଡିସେମ୍ବର ୩୧ ତାରିଖରେ 'ଉନ୍ମେଷ' ଡାଇଜେଷ୍ଟ ପତ୍ରିକାର ଦ୍ୱିତୀୟ ବାର୍ଷିକ ଉତ୍ସବରେ ମଧ୍ୟ ମୋତେ ସମ୍ମାନିତ କରାଯାଇଥିଲା ।

## ମୋ ତୈଳଚିତ୍ର

ଦିନେ ମାନନୀୟ ଫଣୀନ୍ଦ୍ରନନ୍ଦ ଆମ ଘରୁ ମୋର ଗୋଟିଏ ଫଟୋ ମଗାଇ-ନେଲେ । ତାଙ୍କଠାରୁ ଜଣାଗଲା କଟକର ସରସ ସାହିତ୍ୟ ସମିତି ମୋର ଏକ ତୈଳଚିତ୍ର ପ୍ରସ୍ତୁତ କରାଇ ଶ୍ରୀରାମଚନ୍ଦ୍ର ଭବନରେ ସ୍ଥାପନ କରିବାକୁ ନିଷ୍ପତ୍ତି ନେଇଛନ୍ତି । ମୋର ଏଥିରେ ଅନିଚ୍ଛା ଥିବାରୁ ଜାଣି ମୋ ପୁଅ ପ୍ରଦ୍ୟୁତ ସମସ୍ତ ମୂଲ୍ୟ ଦେଇ ସେ ଚିତ୍ରଟି ନିଜେ କିଣିଆଣିବ ବୋଲି ଅନୁରୋଧ ଜଣାଇଲା, ମାତ୍ର ସେ କହିଲେ, "ଜଣେ ସଭ୍ୟ ସମସ୍ତ ମୂଲ୍ୟ ବହନ କରିବାକୁ ରାଜି ହୋଇଛନ୍ତି ।" ଉକ୍ତ ସଭ୍ୟ ତାଙ୍କ ନାମ ପ୍ରକାଶ କରିବାକୁ ମନା କରିଥିବାରୁ ସେ ତାଙ୍କ ନାମ କହିଲେ ନାହିଁ ।

କିଛିଦିନପରେ ଚିତ୍ରଶିଳ୍ପୀ ଶ୍ରୀ କାଶୀନାଥ ବାରିକ ତୈଳଚିତ୍ରଟି ଧରି ମୋ ଚେହେରା ସଙ୍ଗେ ମିଳାଇବାକୁ ଆମ ଘରକୁ ଆସିଲେ । ତାଙ୍କ ସଙ୍ଗରେ ଆସିଥିଲେ ଚାର୍ଟାର୍ଡ ଏକାଉଣ୍ଟାଣ୍ଟ ଶ୍ରୀ ହୃଦସ୍ୱାନନ୍ଦ ନାୟକ । ଶିଳ୍ପୀଙ୍କ ସାଙ୍ଗେ ଶ୍ରୀ ନାୟକଙ୍କୁ ଦେଖି ମୁଁ ଅନୁମାନ କଲି ସେଇ ବୋଧହୁଏ ତୈଳଚିତ୍ରର ବ୍ୟୟ ବହନ କରୁଛନ୍ତି । ସେ ଯାହା ହେଉ, ଚିତ୍ରଟି ସେତେବେଳେ ପ୍ରସ୍ତୁତ ହୋଇସାରିଲେଣି, ତାହା ଉନ୍ମୋଚିତ ହେବ । କିନ୍ତୁ ମୁଁ ବଞ୍ଚି ଥାଉଁ ଥାଉଁ ଏହା ସମୀଚୀନ ହେବ କି ? ଚିଠିଏ ଚାଠି ଏହି ମର୍ମରେ ଲେଖି ଫଣୀନ୍ଦ୍ରନନ୍ଦଙ୍କୁ ଜଣାଇଦେଲି—'ମୋ ମୃତ୍ୟୁପରେ ଯଦି ସଭ୍ୟମାନେ ଉପଯୁକ୍ତ ମନେ କରନ୍ତି, ତେବେ ମୋ ତୈଳଚିତ୍ରଟି ଉନ୍ମୋଚନ କରିପାରନ୍ତି, କିନ୍ତୁ ବର୍ତ୍ତମାନ ନୁହେଁ ।"

ମୋର ଆଉ ଜଣେ ବନ୍ଧୁ, 'ସଂସାର'ର ସୁପରିଚିତ ଲେଖକ ଓ ଶିଳ୍ପୀ କୁହୁଡ଼ିର ଶ୍ରୀ ନବ ପଟ୍ଟନାୟକ ମୋର ଆଉ ଏକ ତୈଳଚିତ୍ର ପ୍ରସ୍ତୁତ କରି ତାଙ୍କ ନିଜ ଖର୍ଚ୍ଚରେ ମୋ ଘରକୁ ପଠାଇଦେଲେ । ତାର ମୂଲ୍ୟ ନେବାକୁ ଯେତେ କହିଲି, ସେ ରାଜି ହେଲେ ନାହିଁ । ମୁଁ ଡାକରେ ଛଅଶହ ଟଙ୍କାର ଏକ ଚେକ୍ ପଠାଇଦେବାରୁ ସେ ମୋ ପତ୍ନୀଙ୍କର ଏକ ତୈଳଚିତ୍ର ତିଆରି କରି ପଠାଇଦେଲେ ଏବଂ ସବୁଦିନ ପାଇଁ ମୋତେ ଋଣୀ କରି ରଖିଲେ ।

କଟକ ଜିଲ୍ଲା ଦେବୀ-କନ୍ଦାଳ ଧୋଇସ୍ତା ଅଞ୍ଚଳର ବାଲାସୁଣୀ ହାଇସ୍କୁଲଟି ମୋର ପୂର୍ବତନ ଛାତ୍ର ଶ୍ରୀମାନ୍ ରାଜକିଶୋର ମହାନ୍ତିଙ୍କ ଉଦ୍ୟମର ଫଳ । ସେଠାକୁ ଦୁଇଥର ଯିବାକୁ ମତେ ସୁଯୋଗ ମିଳିଥିଲା । ଥରେ ଯାଇଥିଲି ୧୯୮୨ ଜାନୁଆରୀ ୨୬ ତାରିଖରେ ପତାକା ଉତ୍ତୋଳନ ଉତ୍ସବରେ ଯୋଗ ଦେବା ପାଇଁ; ଆଉଥରେ ୧୯୮୬

ନଭେମ୍ବର ୮ ତାରିଖରେ ଶିକ୍ଷକ ଶ୍ରୀ ଲକ୍ଷ୍ମୀନାରାୟଣ ପାତ୍ରୀ ଏବଂ ସ୍କୁଲ କମିଟିର ପ୍ରେସିଡେଣ୍ଟ ଶ୍ରୀମାନ୍ ରାଜକିଶୋରଙ୍କ ସଂବର୍ଦ୍ଧନାରେ ଯୋଗ ଦେବାଲାଗି । ସ୍ଥାନୀୟ ଲୋକମାନଙ୍କର ଉତ୍ସାହ ଓ ସହଯୋଗ ମୋତେ ଅଭିଭୂତ କରିଥିଲା ।

୧୯୮୨ ଫେବୃଆରୀ ୨୩ ଓ ୨୪ ତାରିଖରେ ଡକ୍ଟର ମହୀନ୍ଦ୍ର ମହାନ୍ତିଙ୍କ ଦ୍ୱାରା ଆୟୋଜିତ ଶିଶୁ ସାହିତ୍ୟ କର୍ମଶାଳାରେ ମୁଖ୍ୟ-ଅତିଥିରୂପେ ଯୋଗ ଦେବାଲାଗି ଭଦ୍ରକ ଯାଇଥିଲି । ସ୍ଥାନୀୟ ଆଡ଼ଭୋକେଟ ଶ୍ରୀ ସଚ୍ଚିଦାନନ୍ଦ ମହାନ୍ତିଙ୍କ ଅତିଥିରୂପେ ରହି ବହୁ ଶିଶୁ ସାହିତ୍ୟିକଙ୍କୁ ସେଠାରେ ଭେଟିଥିଲି । ଶ୍ରଦ୍ଧେୟ କୃତ୍ତିବାସ ନାୟକଙ୍କ ସଙ୍ଗେ ମୋର ପ୍ରଥମ ପରିଚୟ ହେଲା ସେହି କର୍ମଶାଳାରେ ।

ସେହି ମାସ ୨୮ ତାରିଖରେ ଉତ୍କଳ ପାଠକ ସଂସଦର ଏକ ସାହିତ୍ୟିକ ସମାବେଶରେ ଯୋଗ ଦେବା ଲାଗି ବହୁ ବିଶିଷ୍ଟ ବନ୍ଧୁଙ୍କ ସହ କଟକ ଜିଲ୍ଲାର ଏରସମା ଯିବାକୁ ପଡ଼ିଥିଲା । ଉକ୍ତ ଅନୁଷ୍ଠାନର ବାର୍ଷିକ ଉତ୍ସବ ସବୁ ବର୍ଷ କଟକ ଶ୍ରୀରାମଚନ୍ଦ୍ର ଭବନରେ ଅନୁଷ୍ଠିତ ହୁଏ ଏବଂ ସେଠାରେ ସାତଜଣ କୃତବିଦ୍ୟ ବ୍ୟକ୍ତିଙ୍କୁ ସମ୍ମାନିତ କରାଯାଏ । ସମ୍ମାନିତ ବ୍ୟକ୍ତିମାନଙ୍କ ଜୀବନୀସମ୍ବଳିତ ଖଣ୍ଡେ ପୁସ୍ତକ ସହ ସଂସଦଦ୍ୱାରା ପ୍ରସ୍ତୁତ ଏକ ମୂଲ୍ୟବାନ ସଂକଳନ ମଧ୍ୟ ସେଦିନ ପ୍ରକାଶ ପାଏ । ମୁଁ ସେ ବର୍ଷ ସଂସଦଦ୍ୱାରା ସମ୍ମାନିତ ହୋଇ ଉପାୟନ ଗ୍ରହଣ କରିଥିଲି । ପୂଜ୍ୟ ପୂଜା କ୍ଷେତ୍ରରେ ଏକ ଉନ୍ନତ ପରଂପରା ସୃଷ୍ଟି କରିଥିବା ହେତୁ ସଂସଦର ସଭାପତି ଡକ୍ଟର ସଦାଶିବ ମିଶ୍ର, ସଂପାଦକ ଶ୍ରୀ ବ୍ରଜମୋହନ ମହାନ୍ତି ଓ ସହ-ସଂପାଦକ ଶ୍ରୀ ସୁଭାଷଚନ୍ଦ୍ର ମହାନ୍ତିଙ୍କ ନିଷ୍ଠା ଓ ଉଦ୍ୟମ ଅଭିନନ୍ଦନୀୟ ।

୧୯୮୨ ଜୁଲାଇ ୨୭ ତାରିଖ ଦିନ ଭୁବନେଶ୍ୱର ସୂଚନା ଭବନଠାରେ ଜ୍ଞାନମଣ୍ଡଳ (Encyclopaedia) ସଂପର୍କରେ ଏକ ଅନ୍ତରଙ୍ଗ ଆଲୋଚନାର ଆୟୋଜନ କରାଇଥିଲେ କଟକ ଆକାଶବାଣୀର ନିର୍ଦ୍ଦେଶକ ଶ୍ରୀ ଶ୍ୟାମାନନ୍ଦ ବୈଶ୍ୟ । 'ବିଶ୍ୱପରିଚୟ'ର ସଂକଳୟିତା ହିସାବରେ ମୋତେ ଉକ୍ତ ସଭାରେ ଆଲୋଚନା ପରିଚାଳନା କରିବାକୁ ଡକାଯାଇଥିଲା । ଜ୍ଞାନମଣ୍ଡଳର ସଂକଳକ ଶ୍ରୀ ବିନୋଦ କାନୁନ୍‌ଗୋଙ୍କ ସହ ମୁଁ ଏହି ସଭାରେ ଯୋଗ ଦେବାକୁ ଯାଇଥିଲି । ବିଭିନ୍ନ ଭାଷାରେ ଜ୍ଞାନକୋଷର ସଂପାଦନା ଏବଂ ଓଡ଼ିଆରେ ଏହାର ବିକାଶ ସଂପର୍କରେ ମୁଁ ସେଠାରେ ଆଲୋଚନା କରିଥିଲି ।

କେତେକ ଉତ୍ସାହୀ ସାହିତ୍ୟିକ ବନ୍ଧୁ ଭୁବନେଶ୍ୱରଠାରେ 'ଓଡ଼ିଶା ଶିଶୁ ସାହିତ୍ୟ ଏକାଡେମୀ' ନାମକ ଏକ ଅନୁଷ୍ଠାନ ଗଢ଼ି ସେଥିରେ ମୋର ସହଯୋଗ କାମନା କରିଥିଲେ । ମୁଁ ଦୁଇ ତିନୋଟି ସଭାରେ ଯୋଗ ଦେଇ ଉକ୍ତ ଏକାଡେମୀର ଆଜୀବନ ସଭ୍ୟଶ୍ରେଣୀଭୁକ୍ତ ହେଲି ଏବଂ ବନ୍ଧୁମାନଙ୍କ ଅନୁରୋଧରେ କିଛିଦିନ ସଭାପତି ଦାୟିତ୍ୱ ନେଇଥିଲି । ମାତ୍ର ଭୁବନେଶ୍ୱରରେ ଅଫିସ ରହିଥିବା ଦୃଷ୍ଟିରୁ

ଯୋଗାଯୋଗ ରକ୍ଷା କରିବା କଷ୍ଟକର ହେବାରୁ ଉକ୍ତ ଦାୟିତ୍ୱରୁ ଅବ୍ୟାହତି ନେବାକୁ ବାଧ୍ୟ ହେଲି ।

ବ୍ୟକ୍ତି ଜୀବନରେ ଗୋଟିଏ ଗୋଟିଏ ବର୍ଷ ଶୁଭ ଫଳ ଦିଏ ବୋଲି ଜ୍ୟୋତିଷୀମାନେ କହନ୍ତି । ତାହା ସତ୍ୟ ହୋଇଥିଲେ ୧୯୮୬ ବର୍ଷଟି ମୋ ପକ୍ଷରେ ଶୁଭଂକର ବୋଲି କହିବି । ଉତ୍କଳ ପାଠକ ସଂସଦଦ୍ୱାରା ସମ୍ବର୍ଦ୍ଧିତ ହେବାପରେ ଅନ୍ୟ ଏକ ଅନୁଷ୍ଠାନ ମୋତେ ସେ ବର୍ଷ ସମ୍ମାନିତ କରିଥିଲା । ଜୁନ୍ ୧୪ ତାରିଖ ପହିଲି ରଜ ଦିନ ତୃତୀୟ ଶାରଳା ପୁରସ୍କାର ଉତ୍ସବରେ ଉପସ୍ଥିତ ରହି ମୋର ପୂଜ୍ୟ ଗୁରୁ ଶ୍ରୀ ନନ୍ଦକିଶୋର ଦାସ, ପଦ୍ମଶ୍ରୀ ଡ଼ଃ ସତ୍ୟନାରାୟଣ ରାଜଗୁରୁ ଓ ପଣ୍ଡିତ ଠାକୁର ଅନନ୍ତ ତ୍ରିପାଠୀ ଶର୍ମାଙ୍କ ସହ ଶାରଳା ଉପାୟନ ଗ୍ରହଣ କରିଥିଲି ।

ଏହି ବର୍ଷ ମୋର ଦୁଇଖଣ୍ଡି ଶିଶୁପୁସ୍ତକ ମଧ୍ୟ ପ୍ରକାଶିତ ହୋଇଥିଲା— 'ପ୍ରକୃତିର ଗଳ୍ପପୁଞ୍ଜ' ଏବଂ 'ଇନ୍ଦ୍ରଧନୁ' । ପ୍ରଥମଟି ମୋର ମୌଳିକ କୃତି ଏବଂ ଦ୍ୱିତୀୟଟି ନ୍ୟାସନାଲ ବୁକ୍ ଟ୍ରଷ୍ଟଦ୍ୱାରା ପ୍ରକାଶିତ 'Rainbow' ପୁସ୍ତକର ଅନୁବାଦ । ଏହାଛଡ଼ା ଓଡ଼ିଶା ସାହିତ୍ୟ ଏକାଡେମୀ ନିର୍ଦ୍ଦେଶରେ ଓଡ଼ିଆ ଶିଶୁସାହିତ୍ୟ ଏବଂ ପତ୍ର-ପତ୍ରିକା ବିଷୟରେ ଏକ ସୂଚନାତ୍ମକ ପୁସ୍ତିକା ମଧ୍ୟ ପ୍ରସ୍ତୁତ କରିଥିଲି । ଏକାଡେମୀର ରଜତଜୟନ୍ତୀ ଉତ୍ସବରେ ଏହା ପ୍ରକାଶ ପାଇଥିଲା ।

## 'ସଂସାର'ର ପୁନଃପ୍ରକାଶନ

୧୯୮୬ର ସବୁଠାରୁ ଉଲ୍ଲେଖଯୋଗ୍ୟ ଘଟଣା ହେଲା ସଂସାର ପତ୍ରିକାର ପୁନଃପ୍ରକାଶନ । ମୋର ପୁଅ ପ୍ରଦ୍ୟୁମ୍ନ ଏବଂ କନ୍ୟା ଶୈଳବାଳା ଏଥିପୂର୍ବରୁ କେତେଥର ଏ ପ୍ରସଙ୍ଗ ଉଠାଇଥିଲେ ମଧ୍ୟ ମୁଁ ନିଜର ଅସାମର୍ଥ୍ୟ ଜଣାଇ ନୀରବ ରହିଥିଲି । କିନ୍ତୁ ସେ ବର୍ଷ ଦିନେ ଜୁନ୍ ମାସରେ ପ୍ରଦ୍ୟୁମ୍ନ ଆମ ଘରଠାରେ କେତେଜଣ ଆତ୍ମୀୟଙ୍କ ଉପସ୍ଥିତିରେ ଏ ପ୍ରସଙ୍ଗ ପୁଣି ଥରେ ଉଠାଇବାରୁ ମୁଁ ବାଧ୍ୟ ହୋଇ ସଂପାଦନାର ଦାୟିତ୍ୱ ନେବାକୁ ସମ୍ମତ ଦେଲି । ଅଗଷ୍ଟ ମାସ ଏହାର ଜନ୍ମ ମାସ ହୋଇଥିବା ଦୃଷ୍ଟିରୁ ସ୍ଥିର ହେଲା ଯେ ସେ ବର୍ଷ ଅଗଷ୍ଟ ମାସଠାରୁ 'ସଂସାର'ର ଦ୍ୱିତୀୟ ପର୍ଯ୍ୟାୟ ପ୍ରକାଶ କରାଯିବ ।

ତାହାହିଁ କରାଗଲା । ମୋର ନାତି, ପ୍ରଦ୍ୟୁମ୍ନର ଦ୍ୱିତୀୟ ପୁତ୍ର ବନସ୍ପତିଭୂଷଣ ପରିଚାଳନାରେ ମୋତେ ସାହାଯ୍ୟ କଲା । ହାତରୁ ତିନିହଜାର ଟଙ୍କା ମୂଳଧନ ଦେଇ କାର୍ଯ୍ୟ ଆରମ୍ଭ କଲି । ୧୯୮୬ ଅଗଷ୍ଟ ମାସରେ ସଂସାର ଦ୍ୱିତୀୟ ପର୍ଯ୍ୟାୟର ପ୍ରଥମ ସଂଖ୍ୟା ପ୍ରକାଶ ପାଇଲା । ପୁରୁଣା ଘୋଷଣାପତ୍ରଟି ହଜିଯାଇଥିବାରୁ ଗୋଟିଏ ନୂଆ ଘୋଷଣା-ପତ୍ର ନେବାକୁ ପଡ଼ିଲା । ତତ୍କାଳୀନ ଏ.ଡି.ଏମ୍. ଶ୍ରୀ ଚନ୍ଦ୍ରମଣି ନାୟକ 'ସଂସାର'ର ପୁନଃପ୍ରକାଶନରେ ଆନନ୍ଦିତ ହୋଇ ମୋତେ ଏ କାର୍ଯ୍ୟରେ ସାହାଯ୍ୟ କରିଥିଲେ ।

'ସଞ୍ଚାର' ପରିବାରର ଯେଉଁ ଲେଖକ ବନ୍ଧୁମାନେ ଏ ପର୍ଯ୍ୟନ୍ତ ନୀରବ ରହିଥିଲେ, ଜଣ ଜଣ ହୋଇ ପୁଣି ସଞ୍ଚାର ପୃଷ୍ଠାରେ ଦେଖାଦେଲେ । ଆଉ ଜଣେ ଯୁବକ ବନ୍ଧୁ ଶ୍ରୀ ନାରାୟଣ ନନ୍ଦଙ୍କର ଆଯାଚିତ ସହଯୋଗ ମୁଁ ଭୁଲିପାରିବି ନାହିଁ । ସେ ସ୍ୱତଃପ୍ରବୃତ୍ତ ହୋଇ ପ୍ରାୟ ପାଞ୍ଚଶହ ଜଣ ଗ୍ରାହକ କରିଦେଇଥିଲେ । ଏହିପରି ନୂଆ ଓ ପୁରୁଣା ବହୁ ଲେଖକ, ପାଠକ ଓ ଶୁଭେଚ୍ଛୁ ବନ୍ଧୁଙ୍କ ସହାୟତାରେ 'ସଞ୍ଚାର' ଆଗେଇ ଚାଲିଲା ।

## ପତ୍ରପତ୍ରିକାରେ ମୋର ଲେଖା

୧୯୭୫ ରୁ ୧୯୮୨ ମସିହା ମଧ୍ୟରେ ମୋର ଶିଶୁ ଓ କିଶୋର ଉପଯୋଗୀ ରଚନା ସର୍ବାଧିକ ସଂଖ୍ୟାରେ ପ୍ରକାଶିତ ହୋଇଛି । 'ଛଅଟି ଗଛ ସିରିଜ'ର ଗଳ୍ପ-ଗୁଡ଼ିକୁ ମିଶାଇଲେ ମୋର ସେହି ସମୟର ଶିଶୁରଚନା ଦେଢ଼ଶହରୁ ଅଧିକ ହେବ । ଏଥିରୁ ଅଧିକାଂଶ 'ଶିଶୁଲେଖା', 'ମୀନାବଜାର', 'ମନପବନ' ଏବଂ ଅନ୍ୟାନ୍ୟ ଶିଶୁପତ୍ରିକାରେ ପ୍ରକାଶିତ ହୋଇଥିଲା । ସାତ ଆଠଟି କବିତା ଓ ପ୍ରବନ୍ଧକୁ ବାଦ୍‌ଦେଲେ ଅନ୍ୟ ସବୁଗୁଡ଼ିକ ଗଳ୍ପ । ପ୍ରାୟ ତିରିଶଟି ମୌଳିକ ରଚନା ଏବଂ ଅବଶିଷ୍ଟ କିମ୍ବଦନ୍ତୀ, ଲୋକକଥା ଓ ବିଜ୍ଞାନ ସମ୍ବନ୍ଧୀୟ ଗଳ୍ପ ।

ଏଥିରୁ ପ୍ରାକୃତିକ ତଥ୍ୟ ଉପରେ ଆଧାରିତ କେତୋଟି ଗଳ୍ପକୁ ମୋ 'ପ୍ରକୃତିର ଗଳ୍ପପୁଞ୍ଜ' ପୁସ୍ତକରେ ସ୍ଥାନ ଦିଆଯାଇଛି । ପିଲାମାନଙ୍କ ଅଭ୍ୟାସ ଓ ଆଚରଣ ସମ୍ବନ୍ଧୀୟ ମୌଳିକ ଗଳ୍ପ ମଧ୍ୟରୁ ପନ୍ଦରଟିକୁ ନେଇ 'ସୁନାପାହାଚ'ର ପରିକଳ୍ପନା ।

୧୯୮୩ ମସିହା ମେ ମାସ ପ୍ରଥମ ଭାଗରେ ନ୍ୟାସନାଲ୍ ବୁକ୍ ଟ୍ରଷ୍ଟ୍ ମୋତେ ଆଉ ଖଣ୍ଡିଏ ଇଂରାଜି ପୁସ୍ତକ ଓଡ଼ିଆରେ ଅନୁବାଦ କରିବାକୁ ଦେଲେ । ବହିର ନାମ Wild Woodnotes ଏବଂ ତାକୁ ଲେଖିଥିଲେ ଶ୍ରୀ ଜଗତ୍ ରାୟ । 'ବଣ ଜଙ୍ଗଲର କଥା' ନାମରେ ସେ ବହିଟି ଏଥିମଧ୍ୟରେ ପ୍ରକାଶିତ ହୋଇଛି ।

ଜୁଲାଇ ୪ ତାରିଖରେ ଭୁବନେଶ୍ୱରରୁ ପ୍ରକାଶିତ 'କୁଆଁ ତାରା' ଶିଶୁପତ୍ରିକା ତାଙ୍କର ବାର୍ଷିକ ଉତ୍ସବରେ ମୋତେ ସମ୍ମାନିତ କରିଥିଲେ ।

## କଲିକତାରେ ଲେଖକ ଶିବିର

ଏହାପରେ ନ୍ୟାସନାଲ ବୁକ୍ ଟ୍ରଷ୍ଟ ଅଫିସରୁ ପତ୍ର ପାଇଲି ଯେ ୧୯୮୩ ମସିହା ନଭେମ୍ବର ମାସରେ କଲିକତାଠାରେ ସେମାନେ ଏକ ପୁସ୍ତକ ମେଳାର ଆୟୋଜନ କରୁଛନ୍ତି ଏବଂ ସେହି ସମୟରେ ନଭେମ୍ବର ୧୧,୧୨,୧୩ ତାରିଖ ତିନିଦିନ ଧରି ସେଠାରେ ପୂର୍ବାଞ୍ଚଳୀୟ ଲେଖକ ଶିବିର ଅନୁଷ୍ଠିତ ହେବ । ଏଥିରେ ଯୋଗ ଦେବାପାଇଁ ଓଡ଼ିଶାରୁ, ପଶ୍ଚିମ ବଙ୍ଗରୁ ଏବଂ ଆସାମରୁ

ଓଡ଼ିଜଣ ଲେଖାଏଁ ଲେଖକଙ୍କୁ ଡକାଯାଇଛି । ଏମାନେ ପ୍ରତ୍ୟେକେ ଶିଶୁ ସାହିତ୍ୟର ବିଭିନ୍ନ ସମସ୍ୟା ବିଷୟରେ ଗୋଟିଏ ଲେଖାଏଁ ନିବନ୍ଧ ପାଠ କରିବେ ଏବଂ ଶେଷରେ ଏକ ଆଲୋଚନା ଚକ୍ର ଅନୁଷ୍ଠିତ ହେବ ।

ମୋ ନିବନ୍ଧର ବିଷୟ ଥିଲା—'ଆଜିର ପିଲା : ଏକ ବ୍ୟକ୍ତିଗତ ଧାରଣା' । ଓଡ଼ିଶାରୁ ମୁଁ ଓ ଶ୍ରୀ ମହେଶ୍ୱର ମହାନ୍ତି ସାଙ୍ଗ ହୋଇ ଯାଇଥିଲୁ । ମୁଁ ମୋ ଜାମାତା ଶ୍ରୀ ପୂର୍ଣ୍ଣଚନ୍ଦ୍ର ମିଶ୍ରଙ୍କୁ ସାଥିରେ ଡାକି ନେଇଥିଲି । କଲିକତାର ନିଜାମ ପାଲେସ୍‌ଠାରେ ଆମ ରହିବାର ବ୍ୟବସ୍ଥା କରାହୋଇଥିଲା ।

ହାଇଦ୍ରାବାଦର ନିଜାମ ଯେଉଁ ଯୁଗରେ ତାଙ୍କ କଲିକତା ରହଣିପାଇଁ ଏହି ଅଟ୍ଟାଳିକା ତୋଳାଇଥିଲେ, ସେ ଯୁଗ ଆଜି ନାହିଁ । 'ଯଦୁପତେଃ କ୍ୱଗତା ମଥୁରାପୁରୀ, ରଘୁପତେଃ କ୍ୱ ଗତୋତ୍ତରକୋଶଳାଃ' । ଆଜି ନିଜାମ ଶବ୍ଦର ରାଜକୀୟ ଝଲକ ଅତୀତ ଗର୍ଭରେ ଅବଲୁପ୍ତ । ନବନିର୍ମିତ ପ୍ରବେଶଦ୍ୱାରଠାରୁ ଅଳ୍ପ ଦୂରରେ ପରିତ୍ୟକ୍ତ ପୁରାତନ ଫାଟକଟି ନିଜର ଦୈନ୍ୟ ଲୁଚାଇ ପଡ଼ିରହିଛି । ଏହି ହତା ମଧ୍ୟରେ ଗୋଟିଏ ଘରେ ମୁଁ ଓ ମହେଶ୍ୱରବାବୁ ରହି ସର୍କିଟ ହାଉସ୍‌ରେ ହେଉଥିବା ଲେଖକ ଶିବିରରେ ଯୋଗଦେଲୁ ।

ଆଲୋଚନା ଶେଷରେ ଉପରବେଳା ଆମେ ଦୁଇଥର ପୁସ୍ତକମେଳା ଦେଖିବାକୁ ଯାଇଥିଲୁ । କ୍ରେତାମାନଙ୍କର ଭିଡ଼ ଦେଖି ମନେହେଲା ବଙ୍ଗୀୟମାନଙ୍କର ପୁସ୍ତକପ୍ରୀତି ଆମଠାରୁ ବେଶି । ସେଥିପାଇଁ ତାଙ୍କ ଶିଶୁକିଶୋର ପୁସ୍ତକଗୁଡ଼ିକ ଏଡ଼େ ସୁଦୃଶ୍ୟ ହୋଇପାରୁଛି ।

ବୁକ୍ ଟ୍ରଷ୍ଟର ଅନୁରୋଧରେ କଲିକତା ଦୂରଦର୍ଶନକେନ୍ଦ୍ର ହିନେ ଓଡ଼ିଶାରୁ ମତେ, ବଙ୍ଗରୁ ଶ୍ରୀମତୀ ଲୀଲା ମଜୁମଦାର ଓ ଆସାମରୁ ଶ୍ରୀ ନବକାନ୍ତ ବଡ଼ୁଆଙ୍କୁ ନେଇ ଶିଶୁସାହିତ୍ୟ ଉପରେ ଏକ କାର୍ଯ୍ୟକ୍ରମର ଆୟୋଜନ କରିଥିଲେ । ଆଉ ହିନେ ଯାଇ ବିରଲା ପ୍ଲାନେଟୋରିୟମ୍ ଦେଖି ଆସିଥିଲି ।

୧୯୮୪ ମାର୍ଚ୍ଚ ୨୩ ଓ ୨୪ ତାରିଖ ଦୁଇଦିନଧରି ଅନୁଗୁଳଠାରେ ଶିଶୁ ସାହିତ୍ୟ ଉପରେ ଏକ ଆଲୋଚନା ଚକ୍ରର ଆୟୋଜନ କରିଥିଲେ ଓଡ଼ିଶା ସାହିତ୍ୟ ଏକାଡେମୀ । ଉଦ୍‌ଘାଟକ ଭାବରେ ମୁଁ ଏଥିରେ ଯୋଗ ଦେଇଥିଲି ।

ମାସେ ନ ପୂରୁଣୁ 'ଟିକିଦୁନିଆ' ଶିଶୁ ପତ୍ରିକାର ସମ୍ପାଦକ ଶ୍ରୀ ପ୍ରଶାନ୍ତ ମହାନ୍ତି ଓ ତାଙ୍କର ସହଯୋଗୀମାନଙ୍କ ଉଦ୍ୟମରେ ସମ୍ବଲପୁରଠାରେ ଅପ୍ରେଲ ୮,୯,୧୦ ତିନି ଦିନ ଧରି ଚତୁର୍ଥ ରାଜ୍ୟସ୍ତରୀୟ ଶିଶୁ ସାହିତ୍ୟିକ ସମ୍ମିଳନୀ ବସିଲା । ଜଣେ ସମ୍ମାନିତ ବକ୍ତା ଭାବରେ ମୁଁ ସେଥିରେ ଯୋଗ ଦେଇଥିଲି । ଉତ୍କଳ ସାହିତ୍ୟ ସମାଜର ସାଧାରଣ ସମ୍ପାଦିକା ଶ୍ରୀମତୀ ମନୋରମା ମହାପାତ୍ର ମୋ ଯିବା ଆସିବା ଓ ରହଣିର ସମସ୍ତ ବନ୍ଦୋବସ୍ତ କରିଦେଇଥିଲେ ।

## ମୋର ସାତଖଣ୍ଡି ନୂଆ ବହି

୧୯୮୪ ଠାରୁ ୧୯୮୭ ମସିହା ମଧ୍ୟରେ ମୋର ସାତଖଣ୍ଡି ନୂଆ ବହି ପ୍ରକାଶ ପାଇଥିଲା । କଟକ ପବ୍ଲିଶିଂ ହାଉସ୍‌ର ପ୍ରୋପ୍ରାଇଟର ଶ୍ରୀ ରବୀନ୍ଦ୍ରନାଥ ମହାନ୍ତି ଏଥିରୁ ଚାରିଖଣ୍ଡି ପ୍ରକାଶ କରିଥିଲେ । ବହିଗୁଡ଼ିକ ହେଲା—ଆମ ଜାତୀୟ ପତାକା ଓ ଜାତୀୟ ସଙ୍ଗୀତ, ଆମ ଜାତୀୟ ପୁଷ୍ପ ଓ ଜାତୀୟ ପ୍ରତୀକ, ଆମ ଜାତୀୟ ପଶୁ ଓ ଆମ ଜାତୀୟ ପକ୍ଷୀ ।

ଅନ୍ୟ ଦୁଇଟିର ନାମ 'ସୁନାପାହାଡ' ଓ 'ଜୀବନ ରହସ୍ୟ' । ପ୍ରଥମଟି ମୋର ମୌଳିକ ଗଳ୍ପ ସଙ୍କଳନ । ଏହାର ପ୍ରକାଶକ ଥିଲେ ଶ୍ରୀ ପୀତାମ୍ବର ମିଶ୍ର, ବିଦ୍ୟାପୁରୀ । 'ଗ୍ରନ୍ଥମନ୍ଦିର'ର ଶ୍ରୀ ଅଭିରାମ ମିଶ୍ର ଦ୍ୱିତୀୟ ବହିଟି ପ୍ରକାଶ କରିଥିଲେ ।

ସପ୍ତମ ପୁସ୍ତକଟି ନ୍ୟାସନାଲ ବୁକ୍ ଟ୍ରଷ୍ଟଙ୍କ 'Pollution' ପୁସ୍ତକର ଅନୁବାଦ 'ପ୍ରଦୂଷଣ' ।

୧୯ ୪ ଅଗଷ୍ଟ ୧୦ ତାରିଖରେ ଶ୍ରୀମତୀ ମାଳତୀ ଚୌଧୁରୀଙ୍କ ଜନ୍ମଦିନ ଉପଲକ୍ଷେ 'Parents and Pedagogue' ପତ୍ରିକା ପକ୍ଷରୁ ଶ୍ରୀରାମଚନ୍ଦ୍ର ଭବନରେ ମୋତେ ସମ୍ମାନିତ କରାଯାଇଥିଲା ।

ଏ ବର୍ଷର ଅନ୍ୟାନ୍ୟ ଘଟଣା ମଧ୍ୟରେ ପାରାଦୀପ ଓ ପୁରୀ ଭ୍ରମଣ ଅନ୍ୟତମ । ପୁରୀରୁ ଫେରିବା ବାଟରେ ପିପିଲି ନିକଟସ୍ଥ ସମରାଇ ଶାସନକୁ ଯାଇ ମୋର ଏକମାତ୍ର ଭଣଜା ଓ ତାର ପିଲାମାନଙ୍କୁ ଦେଖି ଆସିଥିଲି ।

ଏ ବର୍ଷ ଫେବୃଆରୀ ୨୭ ତାରିଖରେ ଆମ ଗ୍ରାମ ବାଇରୋଇଠାରେ ଭାଇନାଙ୍କର ୮୨ ବର୍ଷ ବୟସରେ ପରଲୋକ ଘଟିଲା । ଚାରି ଭାଇଙ୍କ ମଧ୍ୟରୁ ଆଉ ରହିଲୁ ମୁଁ ଓ ସବାକନିଷ୍ଠ ଦାନକୃଷ୍ଣ ।

## 'ସଂସାର'ର ଜନ୍ମଦିନ ବିଶେଷାଙ୍କ

ଅଗଷ୍ଟ ମାସ ଥିଲା 'ସଂସାର'ର ଜନ୍ମମାସ । ୧୯୫୨ର ଏହି ମାସରେ 'ସଂସାର' ପ୍ରଥମେ ପ୍ରକାଶ ପାଇଥିଲା । ୧୯୮୫ ଅଗଷ୍ଟ ସଂଖ୍ୟାଟିକୁ ତାହାର ସ୍ମାରକୀରୂପେ ବଡ଼ ଆକାରରେ ପ୍ରକାଶ କଲି । ଏଥିରେ ଓଡ଼ିଆ ଭାଷାର ବର୍ତ୍ତମାନ ଅବସ୍ଥା ସଂପର୍କରେ କେତେଜଣ ବିଶିଷ୍ଟ ଲେଖକ ଆଲୋଚନା କରିଥିଲେ । ସେମାନେ ହେଲେ ଡଃ ସଦାଶିବ ମିଶ୍ର, ଶ୍ରୀ ବିନୋଦ କାନୁନ୍‌ଗୋ, ଡଃ ଧନେଶ୍ୱର ମହାପାତ୍ର, ଡଃ ଜଗନ୍ନାଥ ମହାନ୍ତି ଓ ଡଃ କୁଳମଣି ସାମଲ । ଏହି ସଂଖ୍ୟାରେ 'ସଂସାର'ର ୨୨ ବର୍ଷର ଏକ ସଂକ୍ଷିପ୍ତ ବିବରଣୀ ଦେଇଥିଲେ ଶ୍ରୀ ଗଜେନ୍ଦ୍ର ବେହେରା ।

## ୪୦ ବର୍ଷପରେ ଭିଙ୍ଗାରପୁର

ଶ୍ରୀ ବଳେଶ୍ୱର ଉଚ୍ଚ ବିଦ୍ୟାଳୟର ପଞ୍ଚାଶ ବର୍ଷ ପୂର୍ତ୍ତି ଉପଲକ୍ଷେ ୧୯୮୬ ଜାନୁଆରି ୧୦,୧୧ ଓ ୧୨ ତିନି ଦିନ ଧରି ସୁବର୍ଣ୍ଣ ଜୟନ୍ତୀ ଉତ୍ସବ ପାଳିତ ହୋଇଥିଲା । ମୁଁ ଏକଦା ଉକ୍ତ ବିଦ୍ୟାଳୟର ପ୍ରଧାନ ଶିକ୍ଷକ ଥିବା ଦୃଷ୍ଟିରୁ ଆମନ୍ତ୍ରିତ ହୋଇ ପ୍ରଥମ ଦିନ ସେଠାକୁ ଯାଇଥିଲି । ସେ ଦିନର ମୁଖ୍ୟ ଅତିଥି ଥିଲେ ରାଜ୍ୟ ଅର୍ଥ ଓ ବିଧିବିଭାଗ ମନ୍ତ୍ରୀ ଶ୍ରୀ ଗଙ୍ଗାଧର ମହାପାତ୍ର । ବହୁ ପୁରାତନ ଛାତ୍ର ଓ ସ୍ଥାନୀୟ ଭଦ୍ର ବ୍ୟକ୍ତି ମୋତେ ଦୀର୍ଘ କାଳ ପରେ ଦେଖି ଆନନ୍ଦିତ ହୋଇଥିଲେ ।

## 'ଆହେ ଦୟାମୟ ବିଶ୍ୱବିହାରୀ'

ମୋ ଜୀବନର ଏକ ଶୁଭ ମୁହୂର୍ତ୍ତରେ ଏହି ପ୍ରାର୍ଥନା ଗୀତଟି ମୁଁ ରଚନା କରିଥିଲି ବୋଲି ଏବେ ମନେ ହେଉଛି । ତା ନ ହେଲେ ଏତେ ଦିନ ଧରି ତାହା ଓଡ଼ିଶାର ପୁରପଲ୍ଲୀରେ ଆଦୃତ ହୋଇ ନ ଥାନ୍ତା । କିନ୍ତୁ ଆନନ୍ଦ ସଙ୍ଗେ ସଙ୍ଗେ ମନରେ ଦୁଃଖ ଆସୁଛି ଯେ ବହୁ ଲୋକ ଏହା ମୋର ରଚନା ବୋଲି ତ ଜାଣନ୍ତି ନାହିଁ, ଓଲଟି କହନ୍ତି ଏହା ଭକ୍ତକବି ମଧୁସୂଦନଙ୍କ ଦ୍ୱାରା ରଚିତ । ଆକାଶବାଣୀ; ଦୂରଦର୍ଶନ, ବିଦ୍ୟାଳୟର ଶ୍ରେଣୀଗୃହ, ସଭାସମିତି ଏବଂ ଅନ୍ୟାନ୍ୟ କେତେକ ସ୍ଥାନରେ ଲୋକମାନେ ଏହା କହୁଥିବାର ମୁଁ ପ୍ରମାଣ ପାଇଛି । ଗୋଟିଏ ଶ୍ରେଷ୍ଠ ଗୀତ ବିଷୟରେ ଏପରି ଭୁଲ୍ ଧାରଣା କାହିଁକି ରହିଛି—ଏ ପ୍ରଶ୍ନ ମନରେ ଉଠିବା ସ୍ୱାଭାବିକ । ଟିକିଏ ତଲେଇ କରି ଦେଖିଲେ ଏହାର ଉତ୍ତର ମିଳେ ।

ଏହି ପ୍ରାର୍ଥନା ଗୀତଟି ୧୯୩୩-୩୪ରେ ପ୍ରଥମେ ମୋ ପାଠ୍ୟପୁସ୍ତକ 'ସାହିତ୍ୟ ସୋପାନ—୨ୟ ଭାଗ'ରେ ପ୍ରକାଶ ପାଇଥିଲା । ସେତେବେଳକୁ ମଧୁସୂଦନଙ୍କ ସ୍ତବ କବିତା 'ଅଖିଳ ବ୍ରହ୍ମାଣ୍ଡପତି ମୋ ଜୀବନ ସ୍ୱାମୀ' ପ୍ରାୟ ପ୍ରତ୍ୟେକ ସ୍କୁଲରେ ପ୍ରାର୍ଥନା-ବେଳେ ବୋଲାଯାଉଥାଏ । ସାହିତ୍ୟ ସୋପାନ ସ୍କୁଲମାନଙ୍କରେ ପ୍ରଚଳିତ ହେବାରୁ ଏବଂ ମୋ କବିତାର ଭାଷା ସରଳ ଥିବାରୁ ଶିକ୍ଷକମାନେ ତାହାକୁ ପ୍ରାର୍ଥନାବେଳେ ପିଲାଙ୍କୁ ବୋଲାଉଥିଲେ । କାଳକୁ କାଳ ହୋଇ କ୍ରମେ ତାହା ଲୋକପ୍ରିୟ ହୋଇଉଠିଲା ।

'ସାହିତ୍ୟ ସୋପାନ' ପାଠ୍ୟପୁସ୍ତକ ଥିବା ପର୍ଯ୍ୟନ୍ତ ଉକ୍ତ ପ୍ରାର୍ଥନା ଗୀତର ଲେଖକ ବିଷୟରେ କୌଣସି ପ୍ରଶ୍ନ ଉଠି ନ ଥିଲା । କିନ୍ତୁ ପାଠ୍ୟପୁସ୍ତକର ଜାତୀୟ-କରଣ ପରେ ଅସୁବିଧା ଦେଖାଦେଲା । ଲେଖକଙ୍କୁ କେହି ଜାଣିଲେ ନାହିଁ । ପ୍ରାଚୀନ କାଳର ରୀତି ଅନୁସାରେ ଗୀତ ଶେଷରେ 'ଭଣିତା' ନ ଥିଲା; ପୁଣି ମଧୁସୂଦନଙ୍କୁ ସମସ୍ତେ 'ଭକ୍ତକବି' ରୂପେ ଜାଣିଥିଲେ । ତେଣୁ ଏ ଗୀତଟିକୁ ମଧ୍ୟ ତାଙ୍କର ରଚନା ବୋଲି ଧରିନେଲେ ।

ଏ ସଂପର୍କରେ ୨୬ । ୫ । ୮୭ ର ଦୈନିକ 'ପ୍ରଜାତନ୍ତ୍ର'ରେ ସଂପାଦକ ଶ୍ରୀ ଭର୍ତ୍ତୃହରି ମହତାବ 'ଡାଏରୀରୁ କିୟଦଂଶ'ରେ ଯାହା ଲେଖିଛନ୍ତି, ତାହା ଅତ୍ୟନ୍ତ ପ୍ରାସଙ୍ଗିକ ବୋଲି ଏଠାରେ ଉଦ୍ଧାର କରୁଛୁ । ସେ ଲେଖିଛନ୍ତି—

"ପ୍ରାଥମିକ ସ୍କୁଲରେ ଉଚ୍ଚସ୍ୱରରେ ପ୍ରାର୍ଥନା ବୋଲୁଥିବା ୨୦ ବର୍ଷ ତଳର ପିଲାଟି ଆଜି ରାମକୃଷ୍ଣ ନନ୍ଦଙ୍କୁ ଦେଖି ଭାବୁଛି—ସତରେ, ଏଇ କଣ 'ଅହେ ଦୟାମୟ ବିଶ୍ୱବିହାରୀ' ଲେଖିଛନ୍ତି ! ମୋର ମଧ୍ୟ ଏପରି ଦୁରବସ୍ଥା ମନରେ ହୋଇଥିଲା । ......ମନେ ମନେ ଭାବୁଥିଲି, ରାମାୟଣ ମହାଭାରତ ପରି ଏ ପ୍ରାର୍ଥନାସବୁ ମଧ୍ୟ ସେହି ପୁରାଣଯୁଗର କିମ୍ବା ପଞ୍ଚସଖାଯୁଗର । ରାମକୃଷ୍ଣ ନନ୍ଦଙ୍କୁ ଶ୍ରୀରାମଚନ୍ଦ୍ର ଭବନରେ ସେଉଁଦିନ ଦୂରରୁ ଦେଖିଲି ଏବଂ ଚିହ୍ନିଲି, ସେଦିନ ବାସ୍ତବତା ମୋତେ ଚକିତ କରିଦେଇଥିଲା ।"

'ବଳିଦାନ' ଚଳଚ୍ଚିତ୍ରରେ ଏହି ସଂଗୀତର ଗୀତିକାର ଭାବରେ ମୋର ନାମ ଦିଆଯାଇଛି । ମୋ କବିତା ସଂକଳନ 'ଝୁମୁକା'ରେ ମଧ୍ୟ ଏହା ସ୍ଥାନ ପାଇଛି । ତଥାପି ଲୋକଙ୍କ ମନରୁ ଭୁଲ୍ ଧାରଣା ଦୂର ହୋଇନାହିଁ । ଆନନ୍ଦର କଥା, 'ପ୍ରଜାତନ୍ତ୍ର' ସାପ୍ତାହିକୀ (ତା ୬-୧୨ ଡିସେମ୍ବର ୧୯୮୭ ସଂଖ୍ୟା)ରେ ଶ୍ରୀ ଗୁରୁକଲ୍ୟାଣ ମହାପାତ୍ର ମୋ ସହିତ ସାକ୍ଷାତ୍କାର୍ରର ଯେଉଁ ବିବରଣୀ ପ୍ରକାଶ କରିଛନ୍ତି, ତାହା ବହୁ ପରିମାଣରେ ସତ୍ୟ ଉଦ୍‌ଘାଟନ କରି ଦେଇଛି ।

ଏ ପ୍ରାର୍ଥନା ଗୀତ ସଂବନ୍ଧରେ ଆଉ ଗୋଟିଏ କଥା ନ ଲେଖି ରହିପାରୁନାହିଁ । ୧୯୩୪ରେ ମହାତ୍ମାଜୀ ପଦଯାତ୍ରା କରୁ କରୁ ଭଦ୍ରକରେ ଯେତେବେଳେ ପହଞ୍ଚିଲେ, ସେ ପ୍ରାର୍ଥନା ସଭାରେ ଗୋଟିଏ ଓଡ଼ିଆ ଗୀତ ବୋଲାଯାଉ ବୋଲି କହିଲେ । କେହି ଜଣେ ମୋ ପ୍ରାର୍ଥନା ଗୀତଟି ବୋଲି ଶୁଣାଇଲେ । ମହାତ୍ମାଜୀ ଖୁସି ହୋଇ ତାହା ଆଶ୍ରମ ଭଜନାବଳୀରେ ରହୁ ବୋଲି ମତ ଦେଇଥିଲେ । ସେହିଦିନୁ ତାହା ଉକ୍ତ ଭଜନପୁସ୍ତିକାରେ ସ୍ଥାନ ପାଇଛି । ଭଦ୍ରକର ଆଡଭୋକେଟ ଶ୍ରୀ ସଚ୍ଚିଦାନନ୍ଦ ମହାନ୍ତି ତାଙ୍କ ପିତା ସ୍ୱାଧୀନତା ସଂଗ୍ରାମୀ ଗୋକୁଳାନନ୍ଦବାବୁଙ୍କଠାରୁ ଏହା ଶୁଣିଥିବାର ମୋତେ କହିଛନ୍ତି ।

## ସାକ୍ଷାତ୍କାର

ଆଜିକାଲି ପତ୍ରପତ୍ରିକା ପୃଷ୍ଠାରେ, ଆକାଶବାଣୀ ଓ ଦୂରଦର୍ଶନରେ ବେଳେ ବେଳେ ସାକ୍ଷାତ୍କାରର ବିବରଣୀ ଦିଆଯାଉଛି । ଏହି ସାକ୍ଷାତ୍କାରଗୁଡ଼ିକ ପ୍ରଚାରଧର୍ମୀ ନ ହୋଇ ଶିକ୍ଷାପ୍ରଦ ହେବା ଆବଶ୍ୟକ । କେତେକ ପତ୍ରପତ୍ରିକା, ବେତାର ଓ ଦୂରଦର୍ଶନରେ ମୋ ସଙ୍ଗେ ସାକ୍ଷାତ୍କାରର ବିବରଣୀ କେତେ ଥର ପ୍ରକାଶିତ ହୋଇଛି ।

'ଉତ୍କଳ ପ୍ରସଙ୍ଗ'ର ତତ୍କାଳୀନ ସମ୍ପାଦକ ମହାପାତ୍ର ନୀଳମଣି ସାହୁ ଥରେ ମୋ ସଙ୍ଗେ ସାକ୍ଷାତ୍ କରି ମୋ ଶିକ୍ଷକ ଜୀବନର ଅଭିଜ୍ଞତା ସଂଗ୍ରହ କରିଥିଲେ । ଆକାଶବାଣୀର ବିଦ୍ୟାଳୟ କାର୍ଯ୍ୟକ୍ରମରେ ଶ୍ରୀ ଜଗଦୀଶ ମିଶ୍ର ଥରେ ମୋ ସହିତ ଏକ ସାକ୍ଷାତ୍କାରର ଆୟୋଜନ କରି ମୋ ଶିଶୁ ସାହିତ୍ୟ ରଚନା ଓ ତଦ୍‌ବିଷୟକ କେତେକ ବିବରଣୀ ଶ୍ରୋତାମାନଙ୍କୁ ଶୁଣାଇଥିଲେ । ଆଉ ଥରେ ସେହିପରି ଦୂରଦର୍ଶନର ପ୍ରଯୋଜିକା ଶ୍ରୀମତୀ ଜୟନ୍ତୀ ରଥ ମୋ ସଙ୍ଗେ ଏକ ସାକ୍ଷାତ୍କାରର ବ୍ୟବସ୍ଥା କରିଥିଲେ । ଏହି କାର୍ଯ୍ୟକ୍ରମ ମାଧ୍ୟମରେ ଦୂରଦର୍ଶନର ଶ୍ରୋତାମାନଙ୍କୁ ମୋ ଜୀବନ ଓ କାର୍ଯ୍ୟ ସହିତ ପରିଚିତ କରାଇବା ଏହି ପ୍ରସାରଣର ଉଦ୍ଦେଶ୍ୟ ଥିଲା । ପ୍ରଜାତନ୍ତ୍ର ସାପ୍ତାହିକରେ ମୋ ସହିତ ଏକ ସାକ୍ଷାତ୍କାର ପ୍ରକାଶ ପାଇଥିବା କଥା ପୂର୍ବରୁ କହିଛି ।

କିନ୍ତୁ ମୋ ପକ୍ଷରେ ସବୁଠାରୁ ଆମୋଦଦାୟକ ଥିଲା ୧୯୮୭ ଜୁଲାଇର 'ଦୁର୍ମୁଖ' ପୃଷ୍ଠାରେ ପ୍ରକାଶିତ ମୋର ଏକ ପରିଚୟ । ଏହା ସାକ୍ଷାତ୍କାର ନୁହେଁ, ସମ୍ପାଦକଙ୍କ ନିଜ ମତ । 'ଦେଖ ଏ ଢଙ୍ଗକୁ' ଶିରୋନାମାରେ ମୋ ସମ୍ବନ୍ଧୀୟ କେତେକ କଥା ପ୍ରକାଶ ପାଇଥିଲା । ଏକ ବ୍ୟଙ୍ଗଚିତ୍ରରେ 'ଦୁର୍ମୁଖ' ମୋ ହାତରେ ଖଣ୍ଡେ 'ସଂସାର' ଧରାଇ ଦେଇ ପାଠକମାନଙ୍କ ଆଗରେ ଠିଆ କରାଇଥିଲେ । ପରପୃଷ୍ଠାରେ ମୋ କାର୍ଯ୍ୟକଳାପ ବର୍ଣ୍ଣନା କଲାବେଳେ ଦୁର୍ମୁଖୀ ଭାଷା ପ୍ରୟୋଗ ନ କରି ସୁମୁଖ ପାଲଟି ଯାଇଥିଲେ ବୋଲି ମୋର ମନେ ହେଲା ।

'ଲେଖକ ସାମ୍ମୁଖ୍ୟ' ର କେନ୍ଦୁଝର ଗଡ଼ଠାରେ ଅନୁଷ୍ଠିତ ହେଉଥିବା ସପ୍ତମ ବାର୍ଷିକ ଉତ୍ସବରେ ଏବଂ ଭୁବନେଶ୍ୱରସ୍ଥ ରବୀନ୍ଦ୍ର ମଣ୍ଡପଠାରେ 'ଶତଦ୍ରୁ' ପତ୍ରିକାଦ୍ୱାରା ଆୟୋଜିତ ସମ୍ବର୍ଦ୍ଧନା ସଭାରେ ଅସୁସ୍ଥତା ଯୋଗୁ ଯୋଗ ଦେଇ ପାରି ନ ଥିଲି । ୧୯୮୭ ଜୁନମାସରେ ନ୍ୟାସନାଲ ବୁକ୍ ଟ୍ରଷ୍ଟଙ୍କର 'Our Body' ପୁସ୍ତକର ଅନୁବାଦ ଶେଷକରି ପଠାଇଦେଇଥିଲି ।

## ପ୍ରଭାତର ପଦୋନ୍ନତି

ଓଡ଼ିଶା ସରକାରଙ୍କ ଜଳସେଚନ ବିଭାଗରେ ୨୨ ବର୍ଷ କାମ କରିବା ପରେ ୧୯୮୭ ଅକ୍ଟୋବର ୭ ତାରିଖ ଦିନ ପ୍ରଭାତ ନିର୍ବାହୀ ଯନ୍ତ୍ରୀ ପଦକୁ ଉନ୍ନୀତ ହେଲା । ଏହାଦ୍ୱାରା ଆର୍ଥିକ ଦିଗରୁ ସେ ବିଶେଷ ଲାଭବାନ୍ ନ ହେଲେ ସୁଦ୍ଧା ତା ଯୋଗ୍ୟତାର ସ୍ୱୀକୃତି ମିଳିଥିବା ଯୋଗୁଁ ଆମେ ସମସ୍ତେ ସନ୍ତୋଷ ଲାଭ କଲୁ ।

ମୋର ଯେତେଦୂର ଧାରଣା, ଯୋଗ୍ୟତାର ପୁରସ୍କାର କ୍ଷେତ୍ରରେ ବ୍ରିଟିଶ ଶାସନ ଅମଳରେ ଯେଉଁ ନୀତି ଅନୁସୃତ ହେଉଥିଲା, ତାହା ଥିଲା ନ୍ୟାୟ ଓ ନୀତିସ୍ଥ ବିଚାରର ପରିପନ୍ଥୀ । ଦୁଃଖର କଥା, ସ୍ୱାଧୀନ ଭାରତରେ ସେହି କଳଙ୍କର ଅବସାନ ଘଟିଛି । ସେତେବେଳେ ସରକାରଙ୍କ ସମର୍ଥକ ଓ ତୋଷାମୋଦକାରୀମାନେ ହିଁ

କେବଳ ବଡ଼ ବଡ଼ ବୃତ୍ତି ପାଉଥିଲେ ଏବଂ ଉଚ୍ଚ ପଦବୀକୁ ଉନ୍ନୀତ ହେଉଥିଲେ । ଯୋଗ୍ୟତାର ଉପଯୁକ୍ତ ମୂଲ୍ୟାୟନ ହେଉ ନ ଥିଲା । ପଦ ପଦବୀର ସଂଖ୍ୟା ଥିଲା ନଗଣ୍ୟ । ମାତ୍ର ସ୍ୱାଧୀନ ଭାରତରେ ଆମେ ଏ ଦିଗରେ ଯାହା ଅଗ୍ରଗତି କରିଛୁ, ତାହା ଅତ୍ୟନ୍ତ ଉତ୍ସାହପ୍ରଦ । ବିଭିନ୍ନ କ୍ଷେତ୍ରରେ କୃତିତ୍ୱ ହାସଲ କରିଥିବା ବ୍ୟକ୍ତିମାନଙ୍କୁ ଯେଉଁ ପ୍ରକାର ପଦବୀ, ପୁରସ୍କାର ଓ ସମ୍ମାନ ପ୍ରଦାନ କରାଯାଉଛି, ତାହା ବ୍ରିଟିଶ ଯୁଗରେ କଳ୍ପନାତୀତ ଥିଲା । ଜାତିର ବିକାଶ ପାଇଁ ଏ ସବୁର ଆବଶ୍ୟକତା ଯଥେଷ୍ଟ ବେଶୀ । ଯେଉଁ ସରକାର ଭାରତକୁ ନିର୍ଜୀବ ରଖି କେବଳ ଧନଲୁଣ୍ଠନରେ ବ୍ୟସ୍ତ ଥିଲା, ତା'ଠାରୁ କେତେଟା ଶୁଷ୍କ 'ରାୟ ସାହେବ' 'ରାୟ ବାହାଦୂର' ଓ 'ନାଇଟ୍' ବ୍ୟତୀତ ଆଉ କଣ ଆଶା କରାଯାଇ ପାରୁଥାନ୍ତା ?

## ଆମ ସ୍ମୃତିରକ୍ଷାପାଇଁ

ମୋର କନ୍ୟାମାନେ ନିଜ ନିଜ ଭିତରେ ଗୁଡ଼ିଏ ଟଙ୍କା ଚାନ୍ଦା କରି ସେଥିରେ ମୋର ଏବଂ ତାଙ୍କ ମାଆଙ୍କର ସ୍ମୃତିରକ୍ଷାପାଇଁ ୧୯୮୭ ଅକ୍ଟୋବର ୮ ତାରିଖରେ କଟକ ନଗରପଡ଼ାସ୍ଥିତ ସ୍ୱାମୀ ବିଚିତ୍ରାନନ୍ଦ କଲ୍ୟାଣ ଆଶ୍ରମଠାରେ ଏକ ଉତ୍ସବର ଆୟୋଜନ କରିଥିଲେ । ଜଷ୍ଟିସ୍ ନବ କୁମାର ଦାଶ ଏବଂ ଶ୍ରୀମତୀ ମନୋରମା ମହାପାତ୍ର ଯଥାକ୍ରମେ ଉତ୍ସବର ସଭାପତି ଓ ମୁଖ୍ୟ ଅତିଥିରୂପେ ଉପସ୍ଥିତ ରହି ସମସ୍ତଙ୍କୁ ଉତ୍ସାହିତ କରିଥିଲେ । ମୋ ସ୍ମୃତିରକ୍ଷାପାଇଁ ଏକ ପାଠାଗାର ଖୋଲାଯାଇ କେତେକ ବହି ଓ ପତ୍ରିକା ଉକ୍ତ ପାଠାଗାରକୁ ଦିଆଯାଇଥିଲା । ମୋ ସ୍ତ୍ରୀଙ୍କ ସ୍ମୃତିରେ ତାଙ୍କ ନାମ ଖୋଦିତ ଥିବା ଚବିଶଟି ଷ୍ଟିଲ୍ ଗ୍ଲାସ୍ ଆଶ୍ରମକୁ ଦାନ କରାଯାଇଥିଲା ।

## 'ସଂସାର'ର ଲେଖକ ସମ୍ମେଳନ

୧୯୮୭ ଅକ୍ଟୋବର ୨୫ ତାରିଖ ଦିନ କଟକ ଶ୍ରୀରାମଚନ୍ଦ୍ର ଭବନଠାରେ 'ସଂସାର' ପତ୍ରିକାର ଲେଖକମାନଙ୍କର ଏକ ମିଳନୋତ୍ସବ ଅନୁଷ୍ଠିତ ହୋଇଥିଲା । ପତ୍ରିକାର ଜନ୍ମଠାରୁ ଏ ପର୍ଯ୍ୟନ୍ତ ଲେଖକମାନଙ୍କୁ ଏକତ୍ର କରାଇ ଭାବବିନିମୟର ଏପରି କୌଣସି ଆୟୋଜନ ପୂର୍ବରୁ କରାଯାଇ ନ ଥିଲା । ମୁଁ ବହୁଦିନୁ ଏହି ସମ୍ମେଳନର ଆବଶ୍ୟକତା ଅନୁଭବ କରୁଥିଲେ ହେଁ ଅର୍ଥାଭାବରୁ ଏହା କାର୍ଯ୍ୟକାରୀ କରିପାରୁ ନ ଥିଲି । ପତ୍ରିକାର ଆର୍ଥିକ ଅବସ୍ଥା କ୍ରମେ ସ୍ୱଚ୍ଛଳ ହେବାରୁ ମୁଁ ଏପରି ଏକ ସମ୍ମେଳନ ଡାକିବାକୁ ନିଷ୍ପତ୍ତି ନେଲି ।

ଡକ୍ଟର ସଦାଶିବ ମିଶ୍ରଙ୍କ ପୌରୋହିତ୍ୟରେ ସଭାକାର୍ଯ୍ୟ ଅନୁଷ୍ଠିତ ହୋଇଥିଲା । ଶ୍ରୀମତୀ ମନୋରମା ମହାପାତ୍ର ଉତ୍ସବର ମୁଖ୍ୟ ଅତିଥି ଭାବେ ଯୋଗ ଦେଇଥିଲେ । ଏହି ଅବସରରେ ୨୧ ଜଣ ଲେଖକ ଲେଖିକାଙ୍କୁ ମାନପତ୍ର ଓ ଉପାଧି ପ୍ରଦାନଦ୍ୱାରା ସମ୍ମାନିତ କରାଯାଇଥିଲା । ଉତ୍ସବ ପରିଚାଳନାରେ ମୋ ପୁତ୍ର, ପୁତ୍ରବଧୂ, କନ୍ୟା,

ଜାମାତା ଓ ନାତି ନାତୁଣୀମାନେ ସକ୍ରିୟ ଅଂଶ ଗ୍ରହଣ କରିଥିଲେ । ସମସ୍ତ କାର୍ଯ୍ୟ ଶୃଙ୍ଖଳିତ ଭାବରେ ସମ୍ପନ୍ନ ହୋଇଥିବାରୁ ଆମ୍ଭେମାନେ ସନ୍ତୋଷ ଲାଭ କରିଥିଲୁ ।

ଉତ୍ସବ ପରେ କେତେଜଣ ଲେଖକଙ୍କୁ ଅତିସାମାନ୍ୟ ପାରିତୋଷିକ ଦିଆ-ଯାଇଥିଲା । ଡଃ ନିତ୍ୟାନନ୍ଦ ସ୍ୱାଇଁ ତାଙ୍କ ପାରିତୋଷିକ ଟଙ୍କା ଗ୍ରହଣ ନ କରି ଫେରାଇ ଦେଇଥିଲେ ।

## ପୁଣି ସମ୍ମାନ ଓ ସଂବର୍ଦ୍ଧନା

୧୯୮୬ ଡିସେମ୍ବର ୨୬ ତାରିଖରେ ଶିଶୁ ପତ୍ରିକା 'ମନପବନ'ର ରଜତ ଜୟନ୍ତୀ ଉତ୍ସବ କଳାବିକାଶ କେନ୍ଦ୍ରଠାରେ ଅନୁଷ୍ଠିତ ହୋଇଥିଲା । ମୁଁ ଏହି ଉତ୍ସବରେ ସମ୍ମାନିତ ହୋଇ ମାନପତ୍ର ଓ ଉପାୟନ ଗ୍ରହଣ କରିଥିଲି ।

୧୯୮୮ ମାର୍ଚ୍ଚ ୧୯ ତାରିଖ ଦିନ କନକପୁର ସାରଦା ଏକାଡେମୀର ପ୍ରଧାନ ଶିକ୍ଷକ ଶ୍ରୀ ବ୍ରଜକିଶୋର ପଣ୍ଡା ତାଙ୍କ ବିଦ୍ୟାଳୟର ପୁରସ୍କାର ଉତ୍ସବକୁ ମୁଖ୍ୟ ଅତିଥିରୂପେ ମୋତେ ଡାକି ନେଇଥିଲେ । ଏହି ସୁଯୋଗରେ ପୁତ୍ର ଓ ପୁତ୍ରବଧୂ ସହ ମୁଁ ସେଠାକୁ ଯାଇ ମା ସାରଳା ଦେବୀଙ୍କୁ ଦର୍ଶନ କରିଥିଲି । ମନେ ପଡ଼ିଲା ଏହି ଦେବୀଙ୍କ ଆଶୀର୍ବାଦ ଲାଭକରି ଦିନେ ଆଦିକବି ଶାରଳାଦାସ ପ୍ରକାଣ୍ଡ ମହାଭାରତ ଗ୍ରନ୍ଥ ଲେଖିଥିଲେ । କବିଙ୍କ ନିଜ କଥାରେ—

'ଶାରଳା ଚଣ୍ଡୀ ନାମ ଅଟଇ ସେହି ଦେବୀ,
ତାହାର ଦାସ ମୁଁ ଯେ ଶାରଳାଦାସ କବି ।'

ସେଠାରୁ ଫେରିଲାବେଳେ ନିକଟବର୍ତ୍ତୀ ଏକ ଗ୍ରାମ ତାଙ୍କ ଜନ୍ମସ୍ଥାନ ବୋଲି ଜଣେ ବନ୍ଧୁ ଦେଖାଇଦେଇଥିଲେ । କବିଙ୍କ ଉଦ୍ଦେଶ୍ୟରେ ପ୍ରଣତି ଜଣାଇ କଟକ ଫେରିଲି ।

ମୋର ପୂଜ୍ୟ ଗୁରୁ ସ୍ୱର୍ଗତ ନନ୍ଦକିଶୋର ଦାସ ଦିନେ ମୋତେ ଦେଖିବାକୁ ଆସି କହିଥିଲେ, "ରାଧାନାଥ ପାଠାଗାରର ବାର୍ଷିକ ଉତ୍ସବକୁ ଆମେ ଥରେ ତୁମକୁ ସୋରୋ ନେବୁ ।" ଦୁଃଖର କଥା, ଏହା ଦେଖିବାକୁ ସେ ରହିଲେ ନାହିଁ । ୧୯୮୮ ଅପ୍ରେଲ ପ୍ରଥମ ସପ୍ତାହରେ ଉକ୍ତ ପାଠାଗାରର ବାର୍ଷିକ ଉତ୍ସବରେ ଯୋଗ ଦେବାକୁ ପାଠାଗାରର ସଭାପତି ତଥା ଓଡ଼ିଶାର ଶିକ୍ଷାମନ୍ତ୍ରୀ ଶ୍ରୀ ଯଦୁନାଥ ଦାସ ମହାପାତ୍ର ମୋତେ ପତ୍ର ଦେଇଥିଲେ । ଅଧ୍ୟାପକ ଶ୍ରୀ ବ୍ରଜକିଶୋର ରାୟଙ୍କୁ ଏବଂ ମୋତେ ଆମ ସାହିତ୍ୟ ସାଧନାପାଇଁ ସଭାରେ ସମ୍ମାନିତ କରାଯାଇଥିଲା । ଉଭୟଙ୍କୁ ଗୋଟିଏ ଲେଖାଏଁ ସୁଦୃଶ୍ୟ ମାନପତ୍ର ଏବଂ ରୂପା ତାରକସିରେ ନିର୍ମିତ କୋଣାର୍କ ଚକ୍ର ଓ ଅଶ୍ୱ ଉପାୟନ ସ୍ୱରୂପ ଦିଆଯାଇଥିଲା । ଏହି ଉତ୍ସବକୁ ଉଦ୍‌ଘାଟନ କରିଥିଲେ କେନ୍ଦ୍ର ରାଷ୍ଟ୍ରମନ୍ତ୍ରୀ ଶ୍ରୀ ଚିନ୍ତାମଣି ପାଣିଗ୍ରାହୀ ।

ସେହି ବର୍ଷ ପ୍ରଜାତନ୍ତ୍ର ପ୍ରଚାର ସମିତିର ବାର୍ଷିକ ବସନ୍ତ ମିଳନ ଉତ୍ସବର ଦ୍ୱିତୀୟ ଦିବସରେ ଯେଉଁ ସାନ୍ଧ୍ୟ ଅଧିବେଶନ ବସିଥିଲା, ମୁଁ ସେଥିରେ ସଭାପତିତ୍ୱ କରି 'ଓଡ଼ିଆ ଭାଷା ଉପରେ ଗଣମାଧ୍ୟମର ପ୍ରଭାବ' ସମ୍ପର୍କରେ ଏକ ଲିଖିତ ଅଭିଭାଷଣ ପାଠ କରିଥିଲି । ସେ ବର୍ଷ ଉତ୍ସବର ମୁଖ୍ୟ ଅତିଥି ବିଜୟଲକ୍ଷ୍ମୀ ପଣ୍ଡିତଙ୍କ କନ୍ୟା ଶ୍ରୀମତୀ ନୟନତାରା ସହଗଲ୍‌ଙ୍କ ଇଂରାଜୀ ଭାଷଣ ବହୁ ଶ୍ରୋତାଙ୍କୁ ମୁଗ୍‌ଧ କରିଥିଲା ।

ଏପ୍ରିଲ ୧୩ ତାରିଖ ସନ୍ଧ୍ୟାରେ ଶ୍ରୀରାମଚନ୍ଦ୍ର ଭବନରେ ପାଳିତ ହେଉଥିବା 'ନୀଳଶୈଳ'ର ବସନ୍ତ ମିଳନ ଉତ୍ସବରେ ମୁଖ୍ୟ ଅତିଥିରୂପେ ଯୋଗ ଦେବାପାଇଁ ମୋତେ ସୁଯୋଗ ମିଳିଥିଲା । ନିରୂପିତ ସମୟରେ ସଭାକାର୍ଯ୍ୟ ଆରମ୍ଭ ହୋଇଥିବାରୁ ମୁଁ ଉଦ୍ୟୋକ୍ତାମାନଙ୍କୁ ଧନ୍ୟବାଦ ଜଣାଇଥିଲି ।

ସାଂସ୍କୃତିକ ଉତ୍ସବମାନ ଆଜିକାଲି ଘନ ଘନ ଅନୁଷ୍ଠିତ ହେଉଛି । ବିକାଶୋନ୍ମୁଖୀ ରାଷ୍ଟ୍ରପକ୍ଷରେ ଏହା ଅବଶ୍ୟ ଏକ ଶୁଭ ଲକ୍ଷଣ । କିନ୍ତୁ ସୁଖ ଲାଗନ୍ତା, ଯଦି ସଭାକାର୍ଯ୍ୟ ସବୁଠାରେ ନିରୂପିତ ସମୟରେ ଆରମ୍ଭ ହୁଅନ୍ତା ଏବଂ ଶେଷ ହୁଅନ୍ତା । ମାତ୍ର ଏ ନିୟମ ଲଂଘନ ଯେପରି ଏକ ପରଂପରାରେ ପଡ଼ିଗଲାଣି । ଯେଉଁମାନେ ଆଦର୍ଶ ଆଚରଣ ଦେଖାଇବା କଥା, ଦେଶର ସେହି ବଡ଼ପଣ୍ଡାମାନେ ଯଦି ନିୟମ ଭାଙ୍ଗିବେ, ତେବେ 'କାହାକୁ କହିବା ?' କେବଳ ଲମ୍ବା ଲମ୍ବା ଭାଷଣ ଦେଲେ କଣ ଏ ଦୋଷର କ୍ଷାଳନ ହୋଇପାରିବ ? ଦେଶର ଜନକ ମହାତ୍ମା ଗାନ୍ଧୀ ସମୟାନୁବର୍ତ୍ତିତା ଉପରେ ବିଶେଷ ଗୁରୁତ୍ୱ ଦେଉଥିଲେ । ଆମେ ଯଦି ତାଙ୍କର ସ୍ୱପ୍ନର ଭାରତ ଦେଖିବାକୁ ଚାହୁଁ, ତେବେ ତାଙ୍କ ନୀତିକୁ କଡ଼ାକଡ଼ି ପାଳନ କରିବା ଉଚିତ ।

୧୯୮୮ ଜୁଲାଇ ୩୦ ତାରିଖ ଦିନ ଭୁବନେଶ୍ୱରଠାରେ ଓଡ଼ିଶା ଶିଶୁ ସାହିତ୍ୟ ଏକାଡେମୀର ଦ୍ୱିତୀୟ ବାର୍ଷିକ ଉତ୍ସବ ଅନୁଷ୍ଠିତ ହୋଇଥିଲା । ମୁଁ ଜଣେ ସମ୍ମାନିତ ଅତିଥିଭାବରେ ଏଥିରେ ଯୋଗ ଦେଇଥିଲି । ରାଜ୍ୟ ମୁଖ୍ୟ ମନ୍ତ୍ରୀ ଶ୍ରୀ ଜାନକୀ-ବଲ୍ଲଭ ପଟ୍ଟନାୟକ ଉତ୍ସବରେ ପୌରୋହିତ୍ୟ କରି ଏକାଡେମୀଦ୍ୱାରା ପ୍ରକାଶିତ କେତେଖଣ୍ଡି ପୁସ୍ତକ ଉନ୍ମୋଚନ କରିଥିଲେ । ଏହି ଉତ୍ସବରେ ଉଦୟପୁରର ଶ୍ରୀ ଦାଶରଥି ପଟ୍ଟନାୟକଙ୍କୁ ସମ୍ମାନିତ କରାଯାଇଥିଲା ।

ଏହାର ପରଦିନ ସନ୍ଧ୍ୟାବେଳେ ଭୁବନେଶ୍ୱର ସୂଚନାଭବନଠାରେ ଇଷ୍ଟର୍ଣ୍ଣ ମିଡ଼ିଆ ଲିମିଟେଡଙ୍କଦ୍ୱାରା ପ୍ରକାଶିତ କେତେଖଣ୍ଡି ସଚିତ୍ର ଶିଶୁପୁସ୍ତକର ଉନ୍ମୋଚନ ଉତ୍ସବ ଅନୁଷ୍ଠିତ ହୋଇଥିଲା । ଓଡ଼ିଶା ସାହିତ୍ୟ ଏକାଡେମୀର ସଭାପତି ମହାପାତ୍ର ନୀଳମଣି ସାହୁ ଓ ମୁଁ ଉନ୍ମୋଚକ ଭାବରେ ଯୋଗ ଦେଇଥିଲୁ । ଇଷ୍ଟର୍ଣ୍ଣ ମିଡିଆର ନିର୍ଦ୍ଦେଶକ ତଥା 'ସମ୍ବାଦ' ପତ୍ରିକାର ସମ୍ପାଦକ ଶ୍ରୀ ସୌମ୍ୟରଂଜନ ପଟ୍ଟନାୟକ ଏହି ଉତ୍ସବର ଆୟୋଜନ କରିଥିଲେ ।

## ଏକ ଦାରୁଣ ଆଘାତ

ମୁଁ ଯେତେବେଳେ ମୋ ଜୀବନ-ସିଡ଼ିରେ ୮୨ଟି ପାହାଚ ଅତିକ୍ରମ କରି ସାରି ୮୩ ଆଡ଼କୁ ଆଗଉଥିଲି, ଯେତେବେଳେ ସାଫଲ୍ୟ ଓ ସମ୍ମାନ ଗୋଟିକ ପରେ ଗୋଟିଏ ଆସି ମୋ କର୍ମକ୍ଳାନ୍ତ ଜୀବନକୁ ସଞ୍ଜୀବନୀ ଯୋଗାଉଥିଲା, ସେତିକିବେଳେ ବିଧାତାଙ୍କର ଏକ ଦାରୁଣ ଆଘାତରେ ମୋର ସମସ୍ତ ସ୍ୱପ୍ନ ଓ ସୁଖସୌଧ ଧୂଳିସାତ୍ ହୋଇଗଲା । ମୋର ଜୀବନ ସାଥୀ ପ୍ରିୟତମା ପତ୍ନୀ ସୌଦାମିନୀ ଦେବୀ ଆମ ସମସ୍ତଙ୍କୁ ଛାଡ଼ି ସ୍ୱର୍ଗପୁରକୁ ଚାଲିଗଲେ ।

ବର୍ତ୍ତମାନ ଯାହା ଗୋଟିଏ ବାକ୍ୟରେ ଲେଖି ହୋଇଯାଉଛି, ଯାହା ଘଟିବାକୁ ଏକ ସେକେଣ୍ଡ ମଧ୍ୟ ଲାଗି ନ ଥିଲା, ସେ ବିପତ୍ତିର ପରିସର କେତେ ବ୍ୟାପକ, ସେ ବେଦନା କେତେ ତୀବ୍ର, ତାହା କେବଳ ଅନୁଭବୀ ହିଁ ଜାଣିପାରିବେ । ମୋ ଜୀବନରେ ମୁଁ ବହୁ ବନ୍ଧୁ ଓ ସ୍ୱଜନଙ୍କୁ ହରାଇଛି । ପିତା, ମାତା, ପିତାମହ, ପିତାମହୀ, ସାନ ଭାଇ, ସାନ ଭଉଣୀ, ଭାଉଜ, ଭିଉଜ ପ୍ରଭୃତି ଆତ୍ମୀୟମାନେ ମୋତେ ଛାଡ଼ି ଚାଲିଯାଇଛନ୍ତି; କିନ୍ତୁ ବର୍ତ୍ତମାନର ବିପତ୍ତି ମୋ ପକ୍ଷରେ ଥିଲା ସବୁଠାରୁ ଦୁଃସହ । ସାତ ବର୍ଷ ଧରିକୁ ଘରୁ ଛାଡ଼ି ବିଦେଶରେ ରହୁଥିବାରୁ ପରିବାରରେ ମୁଁ କାହାରି ମରଣ ସ୍ୱଚକ୍ଷୁରେ ଦେଖି ନ ଥିଲି । ସମ୍ବାଦ ପାଇ ଘରେ ପହଞ୍ଚିଲାବେଳକୁ କାହାର ପ୍ରାଣହୀନ ଶରୀରକୁ ଦେଖେ କିମ୍ବା କାହାର ଶବ ଦାହ ହୋଇସାରିଥାଏ; କିନ୍ତୁ ଏ ମରଣର ପ୍ରତିଟି ପର୍ଯ୍ୟାୟ ମୁଁ ସ୍ୱଚକ୍ଷୁରେ ଦେଖିଲି । ଆଘାତର ପ୍ରତିଟି ଧକ୍କା ଅଙ୍ଗରେ ନିଇଲି । ତେଣୁ ଏ ବେଦନାର ତୁଳନା ମୋ ଅନୁଭୂତିର ବାହାରେ ।

ମରଣ ସବୁବେଳେ ଅପ୍ରତ୍ୟାଶିତ । ଦୁରାରୋଗ୍ୟ ବ୍ୟାଧିଗ୍ରସ୍ତ ବ୍ୟକ୍ତି ମଧ୍ୟ ଜାଣି ନ ଥାଏ କେତେବେଳେ ତାର ଶେଷ ମୁହୂର୍ତ୍ତ ଆସି ପହଞ୍ଚିବ । ମୋ ପତ୍ନୀ ଦୀର୍ଘକାଳ ଧରି ପେଟ ରୋଗ ଭୋଗୁଥିଲେ । ତାଛଡ଼ା ଆଉରି ଏତଜ୍ଜନିତ ପୀଡ଼ା ତାଙ୍କୁ ଅବଶ କରିଦେଇଥିଲା । କିନ୍ତୁ ସେ ଏତେ ଶୀଘ୍ର ଆମ ପାଖରୁ ଚାଲିଯିବେ ବୋଲି କାହାରି ଧାରଣା ନ ଥିଲା । ହଠାତ୍ ଦିନେ ରାତିରେ ଝାଡ଼ା ଯିବା ପରେ ସେ ଅତି ଦୁର୍ବଳ ବୋଧ କଲେ । ସଙ୍ଗେ ସଙ୍ଗେ ଚିକିତ୍ସାର ବ୍ୟବସ୍ଥା କରାଗଲା । ଏକମାତ୍ର ପୁଅ ପ୍ରଭାତ ତ ପାଖରେ ଥିଲା । ଡାକ୍ତରମାନଙ୍କୁ ଡାକି ତା କର୍ତ୍ତବ୍ୟରେ ସେ ଲାଗିପଡ଼ିଲା । ଝିଅ ଓ ଜ୍ୱାଇଁମାନେ ଖବର ପାଇବାମାତ୍ରେ ସମସ୍ତେ ଆସି ପହଞ୍ଚିଗଲେ ।

ମୋର ଆଠ ଜଣ ଜ୍ୱାଇଁଙ୍କ ମଧ୍ୟରୁ ଚାରିଜଣ ଡାକ୍ତର । ସେମାନଙ୍କ ବ୍ୟତୀତ କଟକ ମେଡିକାଲ କଲେଜର ଭେଷଜ ଅଧ୍ୟାପକ ଡାକ୍ତର କିଶୋରଚନ୍ଦ୍ର ମିଶ୍ର, ଡାକ୍ତର ସୂର୍ଯ୍ୟନାରାୟଣ ଦାସ, ଡାକ୍ତର ଶୈଳେଶ୍ୱର ନନ୍ଦ, ଡାକ୍ତର ଜ୍ଞାନେନ୍ଦ୍ରନାଥ ମହାନ୍ତି, ଡାଃ କଲ୍ୟାଣୀ ମହାନ୍ତି ପ୍ରଭୃତି ପୂର୍ଣ୍ଣପ୍ରାଣରେ ତାଙ୍କ ଚିକିତ୍ସାରେ ଲାଗିପଡ଼ିଲେ । ଆବଶ୍ୟକସ୍ଥଳେ ଡାକ୍ତର ଏସ୍. ଏସ୍. ଏଲ୍. ବାଜୋରିଆ, ଡାକ୍ତର ରବୀନ୍ଦ୍ରନାଥ ସାହୁ,

ଡାକ୍ତର ଗୌରାଙ୍ଗଚରଣ ନାୟକ ପ୍ରଭୃତି ବିଶେଷଜ୍ଞଙ୍କୁ ଦେଖାଇ ପରାମର୍ଶ ନିଆଗଲା । ମାତ୍ର ସମସ୍ତଙ୍କର ଅକ୍ଳାନ୍ତ ଉଦ୍ୟମ ସତ୍ତ୍ୱେ ଅଗଷ୍ଟ ୧୩ ତାରିଖ ଦିନ ୮ଟା ୪୦ ମିନିଟରେ ସେ ଆମ୍ଭମାନଙ୍କୁ ଶୋକସାଗରରେ ଭସାଇ ଚିରକାଳ ଲାଗି ଆଖି ବୁଜିଦେଲେ ।

ତାଙ୍କର ଇଚ୍ଛା ଅନୁଯାୟୀ କଟକରେ ତାଙ୍କର ଶବଦାହ ଓ ଅନ୍ତ୍ୟେଷ୍ଟିକ୍ରିୟା ନିରାଡ଼ମ୍ବର ଭାବରେ ପାଳନ କରାଗଲା । ଏକାଦଶାହ ଦିନ ମୋର କନ୍ୟାମାନେ ସ୍ଥାନୀୟ ସ୍ୱାମୀ ବିଚିତ୍ରାନନ୍ଦ ଆଶ୍ରମର ଅନାଥ ଶିଶୁମାନଙ୍କୁ ମିଷ୍ଟାନ୍ନ ବିତରଣ କରିଥିଲେ । ମୋର ମଧ୍ୟମା କନ୍ୟା ଶ୍ରୀମତୀ ଶୈଳବାଳାର ଉଦ୍ୟମରେ ସେଦିନ 'ମୁକ୍ତ ପକ୍ଷୀର ସ୍ମରଣେ' ଶିରୋନାମାରେ ଏକ ସ୍ମରଣିକା ପ୍ରକାଶ ପାଇଥିଲା ।

'ସଂସାର'ର ସେପ୍ଟେମ୍ବର ସଂଖ୍ୟାରେ ସ୍ୱର୍ଗତା ସୌଦାମିନୀ ଦେବୀଙ୍କର ଫଟୋଚିତ୍ର ସହ ତାଙ୍କର ତିରୋଧାନ ସମ୍ବାଦ ପ୍ରକାଶ ପାଇଥିଲା । ତା ପୂର୍ବରୁ ଅବଶ୍ୟ 'ସମ୍ବାଦ', 'ପ୍ରଜାତନ୍ତ୍ର' ଓ 'ସମାଜ'ରୁ 'ସଂସାର'ର ବହୁ ପାଠକପାଠିକା ଏ ବିଷୟ ଅବଗତ ହୋଇ ମୋତେ ସମବେଦନା ଜଣାଇ ପତ୍ରମାନ ଲେଖିଥିଲେ ।

## କଳାପଟା ଯୋଜନା

ସେପ୍ଟେମ୍ବର ମାସ ପ୍ରଥମ ସପ୍ତାହରେ ସମ୍ବାଦ ମିଳିଲା ଯେ ଓଡ଼ିଶା ସରକାରଙ୍କ ଶିକ୍ଷା ବିଭାଗ 'କଳାପଟା ଯୋଜନା' (Operation Blackboard) ନାମକ ଏକ ନୂତନ ଯୋଜନା କାର୍ଯ୍ୟକାରୀ କରିବା ନିମନ୍ତେ କେନ୍ଦ୍ର ସରକାରଙ୍କ ଆନୁକୂଲ୍ୟରେ କେତେଗୁଡ଼ିଏ ଶିଶୁପୁସ୍ତକ, ମାସିକ ପତ୍ରିକା ଓ ଶିକ୍ଷୋପକରଣ କିଣିବେ । ସରକାରୀ ବିଜ୍ଞପ୍ତି ବାହାରିବା ପରେ ପରେ ଲେଖକ ଓ ପ୍ରକାଶକମାନେ ନିର୍ଦ୍ଦିଷ୍ଟ ସମୟମଧ୍ୟରେ ଟେଣ୍ଡର ଦାଖଲ କଲେ । ମୁଁ ମଧ୍ୟ ମୋ ଦ୍ୱାରା ଲିଖିତ ଛଅଟି ଗଳ୍ପ ସିରିଜ୍‌ର ବହିଗୁଡ଼ିକୁ ଦାଖଲ କଲି । କିଛିଦିନ ପରେ ଜାଣିଲି ଯୋଜନାର ପ୍ରଥମ ପର୍ଯ୍ୟାୟରେ ମୋର ନଅଟି ବହି ନିର୍ବାଚିତ ହୋଇଛି । ପରେ ପରେ ଜଣାଗଲା ସରକାର ପର୍ଯ୍ୟାୟକ୍ରମେ ଆଉ କିଛି ଶିଶୁପୁସ୍ତକ କ୍ରୟ କରି ସ୍କୁଲମାନଙ୍କୁ ଯୋଗାଇଦେବେ । ଏହି ଯୋଜନାର ସଫଳତା ବହୁପରିମାଣରେ ସରକାରୀ କର୍ମଚାରୀମାନଙ୍କ ନିଷ୍ଠା ଓ ଆନ୍ତରିକତା ଉପରେ ନିର୍ଭର କରୁଛି ସତ, କିନ୍ତୁ ଏହାଦ୍ୱାରା ଆର୍ଥିକ ଓ ଆଙ୍ଗିକ ଦୃଷ୍ଟିରୁ ଆମ ଶିଶୁ ସାହିତ୍ୟ ଯେ କିଛି ବାଟ ଆଗେଇଯିବ, ଏଥିରେ ସନ୍ଦେହ ନାହିଁ ।

ସୁଖର କଥା, ଉଲ୍ଲିଖିତ ଯୋଜନାନୁଯାୟୀ ସରକାର ଯେଉଁ ତିନୋଟି ମାସିକ ପତ୍ରିକାକୁ ନିର୍ବାଚନ କରିଥିଲେ, ସେଥିରେ ମୋଦ୍ୱାରା ସମ୍ପାଦିତ 'ସଂସାର' ଥିଲା ଏକତମ । ଅନ୍ୟ ଦୁଇଟି ଶିଶୁ ପତ୍ରିକା 'ଶିଶୁଲେଖା' ଓ 'ମୀନାବଜାର' ମଧ୍ୟ ସରକାରଙ୍କ ଅନୁମୋଦନ ଲାଭ କରିଥିଲା । ଏହି ତିନୋଟି ପତ୍ରିକାରୁ ୬୩୬୭ ଖଣ୍ଡ

ଲେଖାଏଁ ସରକାର ଅଠର ମାସ ପାଇଁ କଣି ନେଇ ପ୍ରଥମ ଦଫାରେ ୮୦ଟି ବ୍ଲକ୍, ନୋଟିଫାଏଡ୍ ଏରିଆ କାଉନ୍‌ସିଲ ଏବଂ ମ୍ୟୁନିସିପାଲିଟି ଅଧୀନସ୍ଥ ପ୍ରାଇମେରୀ ଓ ଏମ୍. ଇ. ସ୍କୁଲକୁ ଯୋଗାଇ ଦେବାର ବ୍ୟବସ୍ଥା କରିଥିଲେ ।

ଯେଉଁ କଠୋର ଦାୟିତ୍ୱ ମୋ ଉପରକୁ ଆସିଥିଲା, ତାହା ସ୍ମରଣ କରି ମୁଁ କର୍ତ୍ତବ୍ୟରେ ଲାଗିପଡ଼ିଲି । ନିରନ୍ତର କର୍ମରତ ରହିବାଫଳରେ ମୋ ପତ୍ରିକାର ସୌଭାଗ୍ୟରେ ଉଲ୍ଲସିତ ହେବାକୁ କିମ୍ବା ପତ୍ନୀଙ୍କ ବିଚ୍ଛେଦରେ ମ୍ରିୟମାଣ ହେବାକୁ ଅବସର ପାଇଲି ନାହିଁ ।

## ମୋ ଜୀବନର ଦୀର୍ଘତମ ଅସୁସ୍ଥତା

୧୯୮୮ ମସିହାର ଶୀତଋତୁ । ମୋ ପତ୍ନୀଙ୍କ ମୃତ୍ୟୁର ଛଅମାସ ନ ପୂରୁଣୁ ମୁଁ ଗୁରୁତର ଭାବରେ ଅସୁସ୍ଥ ହୋଇପଡ଼ିଲି । ଶ୍ୱାସର ପ୍ରକୋପ ସଙ୍ଗେ ଜ୍ୱର କ୍ରମାଗତ ଲାଗି ରହିଲା । ବହୁ ଚେଷ୍ଟାରେ ମଧ୍ୟ ଦେହର ଉତ୍ତାପ କମିଲା ନାହିଁ । ମୋର କନ୍ୟା ଓ ପୁତ୍ରବଧୂ ମୋ ପାଖେପାଖେ ରହି ମୋର ସେବାଶୁଶ୍ରୂଷା କରୁଥାନ୍ତି । ମନେ ହେଲା ଏହାହିଁ ବୋଧହୁଏ ମୋର ଶେଷ ଯାତ୍ରା । କିନ୍ତୁ ବିଧାତାଙ୍କର ଇଚ୍ଛା ଥିଲା ଭିନ୍ନ । ପ୍ରାୟ ମାସେ କାଳ ରୋଗ ଭୋଗିବାପରେ ହୋମିଓପ୍ୟାଥିକ୍ ଔଷଧ ଖାଇ ଜ୍ୱରମୁକ୍ତ ହେଲି ।

ଜ୍ୱର ଯିବା ଛାଡ଼ିଗଲା, ଶ୍ୱାସର ଯନ୍ତ୍ରଣା ମୋତେ ଅଚଳ କରି ରଖିଲା । ଦୁଇମାସ ଯାଏ ମୁଁ ଅଫିସକୁ ଯାଇପାରିଲି ନାହିଁ କି ପତ୍ରିକାର ଦାୟିତ୍ୱ ତୁଲାଇପାରିଲି ନାହିଁ । ଏହି ସମୟରେ ମୋର ଜାମାତା ଡାକ୍ତର ଇନ୍ଦ୍ରମଣି ପତି ମୋତେ ବ୍ରହ୍ମପୁର ନେଇଗଲେ । ସେ ଥିଲେ ସେତେବେଳେ ସେଠା ମେଡିକାଲ କଲେଜର ଅଧ୍ୟକ୍ଷ । ସ୍ଥାନ ପରିବର୍ତ୍ତନ ଏବଂ କନ୍ୟା ବୀଣାପାଣିର ସେବାଯତ୍ନରେ ମୁଁ କିଞ୍ଚିତ ଆରାମ ବୋଧକଲି । ବ୍ରହ୍ମପୁରରେ ଏକ ସପ୍ତାହର ରହଣି ଭିତରେ ଥରେ ଗୋପାଳପୁର ବୁଲିଯାଇଥିଲି । ଏହା ମୋ ଜୀବନର ପ୍ରଥମ ଗୋପାଳପୁର ଦର୍ଶନ ।

ମୁଁ ବ୍ରହ୍ମପୁର ଯାଇଥିବା ସମୟରେ ମାର୍ଚ୍ଚ ୧୨ ତାରିଖରେ କଟକ ଶ୍ରୀରାମଚନ୍ଦ୍ର ଭବନଠାରେ ଅନୁଷ୍ଠିତ 'ମଣିମାଣିକ'ର ବାର୍ଷିକ ଉତ୍ସବରେ ମୋତେ ସମ୍ମାନିତ କରାଯାଇ 'ସାହିତ୍ୟରତ୍ନ' ଉପାଧିରେ ଭୂଷିତ କରାଯାଇଥିଲା ।

୧୯୮୯ ମାର୍ଚ୍ଚ ୧୫ ତାରିଖରେ କଟକ ଫେରିଲି । ଶ୍ୱାସରୋଗର ତାଡ଼ନାରୁ ମୁକ୍ତ ହେବାର ଆଶା ଛାଡ଼ି ଦେଇଛି । ଗତ ଫେବୃଆରୀ ମାସଠାରୁ ମୋତେ ୮୪ ବର୍ଷ ଚାଲିଲାଣି । ଏବେ ଶକ୍ତିଅନୁସାରେ ମୋର କନ୍ୟା ଶୈଳବାଳାର ସହାୟତାରେ 'ସଂସାର' ପତ୍ରିକାର ସଂପାଦନା କାର୍ଯ୍ୟଟି ତୁଲାଇ ଯାହା କିଛି ସନ୍ତୋଷ ପାଏ । କେତେଦିନ ଏହା କରିପାରିବି ପରମେଶ୍ୱର ଜାଣନ୍ତି ।

'ସଂସାର'ର ଆର୍ଥିକ ଅବସ୍ଥା ଭଲ ନ ଥିବାରୁ ଏପର୍ଯ୍ୟନ୍ତ ଲେଖକମାନଙ୍କୁ କିଛି ଦେଇ ନ ପାରି ମୁଁ ଶାନ୍ତି ପାଇପାରୁ ନ ଥିଲି । ଏବେ ସେଠିକି ସ୍ୱଚ୍ଛଳତା ଆସିଛି, ତାକୁ ଗୃହି ସେମାନଙ୍କୁ ଯତ୍‌ସାମାନ୍ୟ ପାରିତୋଷିକ ଦେବାକୁ ଆରମ୍ଭ କରିଛି ।

ଉଚ୍ଚାବଚ ଭୂମିଉପରେ ପଡ଼ିଉଠି ମୋ ଜୀବନର ଧାରା ଏହିପରି ବହି ଚାଲିଛି । ପୃଥିବୀର ଅନନ୍ତ ଘଟଣାପ୍ରବାହ ସହିତ ଏ କ୍ଷୀଣଧାରାଟି ମିଶି ଦିନେ ଏକାକାର ହୋଇଯିବ । କିନ୍ତୁ ବର୍ତ୍ତମାନପାଇଁ ଏହାର ବୋଧହୁଏ କିଛି ମୂଲ୍ୟ ଅଛି । ଅନ୍ତତଃ ମୋର ପିଲମାନେ ଏଥିରୁ ମୋ ଜୀବନ ସଂଗ୍ରାମର କାହାଣୀ ପଢ଼ି ଭବିଷ୍ୟତକୁ ଭେଟିବା ପାଇଁ ଶକ୍ତି ଓ ସାହସ ସଞ୍ଚୟ କରିବେ । ବିଭିନ୍ନ କ୍ଷେତ୍ରରେ ମୁଁ ଯଥାସାଧ୍ୟ ମୋର କର୍ତ୍ତବ୍ୟ ପାଳନ କରିବାକୁ ଚେଷ୍ଟା କରିଛି ଜାଣି ମୋର ପୂର୍ବତନ ଛାତ୍ରମାନେ ଅନୁପ୍ରାଣିତ ହେବେ । କର୍ମକ୍ଷେତ୍ର ଥରକୁ ଥର ବଦଳି ଯାଇଥିଲେ ସୁଦ୍ଧା ମୁଁ କେବେବେଳେ ଖିନ୍ନ ବା ପରାଜିତ ହୋଇନାହିଁ ଜାଣି ମୋର ବନ୍ଧୁମାନେ ଆନନ୍ଦିତ ହେବେ ।

ଅନ୍ୟ ଯେଉଁମାନେ ଏହାକୁ ପଢ଼ିବେ, ସେମାନେ ଆଉ କିଛି ନ ପାଇଲେ ବି ଏଥିରୁ ଗୋଟାଏ ଦ୍ରୁତ ପରିବର୍ତ୍ତନମୁଖୀ ସମାଜର ଆଲେଖ୍ୟ ପାଇବେ । ଏ ଅଶୀ ବର୍ଷ ଭିତରେ ଦେଶଟା କେତେ ବଦଳିଗଲାଣି, ମୋ ଜୀବନର ଉଭୟ ପ୍ରାନ୍ତକୁ ଗୃହିଁଲେ ମୁଁ ଜାଣିପାରୁଛି । କେଉଁ ଅଜଣା ଯୁଗରୁ ଚଳି ଆସୁଥିବା ତାଳପତ୍ର ଓ ଲେଖନ, କୋଚଲାଖଡ଼ି ଓ କାଠି କଲମ ପିଲାଦିନେ ମୁଁ ଦେଖିଥିଲି ଓ ବ୍ୟବହାର ମଧ୍ୟ କରିଥିଲି । ଏବେ ଟି.ଭି. ପାଖରେ ବସି କମ୍ପ୍ୟୁଟରର ଅଦ୍ଭୁତ କରାମତି ଓ ମହାକାଶଯାତ୍ରାର ଦୃଶ୍ୟ ଦେଖୁଛି । ମୁଁ କଲେଜ ଜୀବନରେ ମଧ୍ୟ ରେଡ଼ିଓ ଦେଖି ନ ଥିଲି, ଆଜି କିନ୍ତୁ ପଲ୍ଲୀର ଗାଈଆଳ ପିଲା ହାତରେ ଟ୍ରାଞ୍ଜିଷ୍ଟର !

ସବୁ କ୍ଷେତ୍ରରେ ଅଭୂତପୂର୍ବ ପରିବର୍ତ୍ତନ । ନୂଆବୋହୂର ଚୂ'ଚୂ' ଠାର, ପୁଅପିଲାଙ୍କ ଧୋତିପିନ୍ଧା, ବାଲ୍ୟବିବାହ ଓ ସବାରିଡାକ, ପେଟପାଇଁ ମୁଣ୍ଡପୋତା କେଳାର କୃଚ୍ଛ୍ର ସାଧନା, ଡାକହରକରାର ଝଂଝଂଣ ଶବ୍ଦ ସାଙ୍ଗକୁ ଡଗଡଗ ଚାଲି, ଜମିଦାର ମହାଜନମାନଙ୍କ ନିଷ୍ଠୁର ଜୁଲୁମ ପ୍ରଭୃତି ଯାହା ଥିଲା ମୋ ପିଲାଦିନେ ଅତି ସାଧାରଣ, ଆଜି ସେ ସବୁ ସ୍ୱପ୍ନପରି ଲାଗୁଛି । କଚେରୀର ପିଆଦାକୁ ଦେଖିଲେ ଯେଉଁ ଗ୍ରାମବାସୀ ଆତଙ୍କରେ ଲୁଚି ରହୁଥିଲେ, ଗଣତନ୍ତ୍ର ଶାସନପ୍ରସାଦରୁ ସେମାନେ ହୋଇଛନ୍ତି ନିର୍ଭୀକ ଓ ସ୍ପଷ୍ଟବାଦୀ । ଶିକ୍ଷା, ସ୍ୱାସ୍ଥ୍ୟ, କୃଷି, ଶିଳ୍ପ ଓ ରାସ୍ତାଘାଟର ବିକାଶ ଦେଶର ଚେହେରା ବଦଳାଇଦେଇଛି । ବିଜ୍ଞାନର ଇନ୍ଦ୍ରଜାଲ ଅନ୍ଧବିଶ୍ୱାସୀଙ୍କ ଆଖି ଖୋଲି ଦେଇଛି ।

କିନ୍ତୁ ଏ ସବୁ ଅଗ୍ରଗତି ସାଙ୍ଗକୁ ହଜିଯାଇଛି ସରଳ ଜୀବନର ଶାନ୍ତି ଓ ସନ୍ତୋଷଟିକିକ । ଜନସଂଖ୍ୟାବୃଦ୍ଧି ଯୋଗୁ ଯେଉଁ ଅଭାବ ଦେଖାଦେଇଛି, ତାର ସୁଯୋଗ

ନେଇ ଧନଲୋଭୀମାନେ ମେଲ ଦେଇଛନ୍ତି ଦୁର୍ନୀତିର ପସରା । ଘନ ଘନ ବିକ୍ଷୋଭ ଓ ଧର୍ମଘଟ ଫଳରେ ସାଧାରଣ ଜୀବନଯାତ୍ରା ବିପର୍ଯ୍ୟସ୍ତ ହୋଇପଡ଼ୁଛି । ତେଣୁ ପୁରାତନ ଓ ନୂତନର ସନ୍ଧିକ୍ଷଣରେ ଯେତେ ଯେତେ ପରିବର୍ତ୍ତନ ମଧ୍ୟରେ ଆମ ସମାଜ ଗଢି କରୁଛି, ତାର ଛାୟା ପଡ଼ୁଛି ମୋର ଏହି କ୍ଷୁଦ୍ର ଜୀବନରେ ଏବଂ ଏଇ ଲିପିବଦ୍ଧ ଅନୁଭୂତିରୁ ତାର କିଞ୍ଚିତ୍ ଧାରଣା ମିଳିପାରେ ।

* * *

# ଜୀବନ-ପଞ୍ଜି

୧୯୦୬—ଜନ୍ମ
୧୯୧୧-୧୪—ନିମ୍ନ ପ୍ରାଥମିକ ଶିକ୍ଷା
୧୯୧୫-୧୮—ଭିଙ୍ଗାରପୁର ମାଇନର ସ୍କୁଲରେ ଶିକ୍ଷାଲାଭ
୧୯୧୯—ପିତୃବିୟୋଗ
୧୯୧୯-୨୧—କଟକ ରେଭେନ୍ସା କଲେଜିଏଟ୍ ସ୍କୁଲରେ ଅଧ୍ୟୟନ
୧୯୨୧—ଅସହଯୋଗ ଆନ୍ଦୋଳନରେ ଯୋଗଦାନ
୧୯୨୨-୨୩—ଜଗତ୍‌ସିଂହପୁର ଅଳକାଶ୍ରମରେ କଂଗ୍ରେସ କାର୍ଯ୍ୟ
୧୯୨୩—ସତ୍ୟବାଦୀ ଜାତୀୟ ବିଦ୍ୟାଳୟରେ ଶିକ୍ଷାଲାଭ
୧୯୨୪—ଗ୍ରାମରେ ଅବସ୍ଥାନ
୧୯୨୪-୨୫—କଟକ ଜିଲ୍ଲାବୋର୍ଡ଼ ଅଧୀନରେ ସୂତାକଟା ଶିକ୍ଷକ କାର୍ଯ୍ୟ
୧୯୨୫—ବିବାହ
୧୯୨୫-୩୦—ରେଭେନ୍ସା କଲେଜରେ ଅଧ୍ୟୟନ
୧୯୩୦-୩୧—ବାଙ୍କି-ଡମପଡ଼ା ହାଇସ୍କୁଲରେ ଶିକ୍ଷକତା
୧୯୩୧-୪୨—ବାରିପଦା ହାଇସ୍କୁଲରେ ଶିକ୍ଷକତା
୧୯୩୪—ପିତାମହଙ୍କ ମୃତ୍ୟୁ
୧୯୩୬—କଟକ ଟ୍ରେନିଂ କଲେଜରେ ଅଧ୍ୟୟନ
୧୯୪୨-୪୬—ଶ୍ରୀ ବଟେଶ୍ୱର ହାଇସ୍କୁଲରେ ପ୍ରଧାନ ଶିକ୍ଷକ
୧୯୪୬-୪୭—କଟକରେ ଅବସ୍ଥାନ ଓ ପାରିଜାତ ପ୍ରେସ ପ୍ରତିଷ୍ଠା
୧୯୫୧—ମାତୃବିୟୋଗ
୧୯୫୧ (ଅଗଷ୍ଟ)—'ଫସାର' ପ୍ରକାଶନ ଆରମ୍ଭ
୧୯୬୧—ପାରିଜାତ ପ୍ରେସ କାର୍ଯ୍ୟକାଳର ପରିସମାପ୍ତି
୧୯୭୫—ଓଡ଼ିଶା ସାହିତ୍ୟ ଏକାଡେମୀଦ୍ୱାରା ସମ୍ବର୍ଦ୍ଧିତ
୧୯୮୦—'ଝୁମୁକା' ପୁରସ୍କୃତ
୧୯୮୨—'ଫସାର'ର ପୁନଃପ୍ରକାଶ
୧୯୮୩—କଲିକତା ଲେଖକ ଶିବିରରେ ଯୋଗଦାନ
୧୯୮୮—ପତ୍ନୀବିୟୋଗ

# ମୋ ରଚିତ ପୁସ୍ତକାବଳୀ

୧ । ତୁଳସୀଦାସ—୧୯୩୦
୨ । ତୁଳସୀଦାସ ଦୋହାବଳୀ—୧୯୩୧
୩ । ପ୍ରତିଧ୍ୱନି—୧୯୩୩
୪ । ସଂଗ୍ରାମ ଓ ସାଧନା (୧ମ)-୧୯୩୬
୫ । ସଂଗ୍ରାମ ଓ ସାଧନା (୨ୟ)-୧୯୪୬
୬ । ଓନ୍ କ୍ରୁଷ୍ଟି—୧୯୪୮
୭ । ବିଜ୍ଞାନର କୁହୁକ—୧୯୫୯
୮ । ବିଶ୍ୱ ପରିଚୟ—୧୯୬୨
୯ । ଜୀବନ ତରଙ୍ଗ—୧୯୬୯
୧୦ । ଟୁମୁକା—୧୯୬୫

**ଛଅଟି ଗଛ ସିରିଜ (୧୯୭୭-୧୯୮୪)**

୧୧ । ଅଠର ଫୁଲ
୧୨ । କୋଡ଼ିଏ ଫୁଲ
୧୩ । ବାଇଶ ଫୁଲ
୧୪ । ତେଇଶ ଫୁଲ
୧୫ । ଚବିଶ ଫୁଲ
୧୬ । ସୁବର୍ଣ୍ଣ ସେଉ
୧୭ । ମରଣ ଦୋଳ
୧୮ । ସାଗର କନ୍ୟା
୧୯ । ଓଡ଼ିଆ ଶିଶୁ ସାହିତ୍ୟ ସଙ୍କଳନ —୧୯୮୨
୨୦ । ଓଡ଼ିଆ ଶିଶୁ ସଙ୍ଗୀତ ସଙ୍କଳନ —୧୯୮୨
୨୧ । ପ୍ରକୃତିର ଗଳ୍ପଗୁଚ୍ଛ ୧୯୮୨
୨୨ । ଇନ୍ଦ୍ରଧନୁ (ଅନୁବାଦ)—୧୯୮୨
୨୩ । ପ୍ରଦୂଷଣ ,, —୧୯୮୨
୨୪ । ଆମ ବଣଜଙ୍ଗଲ କଥା (ଅନୁବାଦ) — ୧୯୮୩
୨୫ । ଆମ ଶରୀର (ଅନୁବାଦ)
୨୬ । ସୁନା ପାହାଡ—୧୯୮୪
୨୭ । ଆମ ଜାତୀୟ ପଶୁ—୧୯୮୪
୨୮ । ଆମ ଜାତୀୟ ପକ୍ଷୀ—୧୯୮୪
୨୯ । ଆମ ଜାତୀୟ ପତାକା ଓ ଜାତୀୟ ସଙ୍ଗୀତ—୧୯୮୫
୩୦ । ଆମ ଜାତୀୟ ପୁଷ୍ପ ଓ ଜାତୀୟ ପ୍ରତୀକ—୧୯୮୫
୩୧ । ଜୀବନ ରହସ୍ୟ—୧୯୮୬
୩୨ । ରତ୍ନପାଖୁଡ଼ା (୧ମ)—୧୯୮୮
୩୩ । ରତ୍ନପାଖୁଡ଼ା (୨ୟ)— ୧୯୮୮
୩୪ । ସତର ଫୁଲ—୧୯୮୯
୩୫ । ଅଦେଖା ବଣର ଫୁଲ—୧୯୮୯
୩୬ । ପଞ୍ଚତନ୍ତ୍ର କାହାଣୀ (୧ମ) —୧୯୮୯
୩୭ । ପଞ୍ଚତନ୍ତ୍ର କାହାଣୀ (୨ୟ) — ୧୯୮୯
୩୮ । ପଞ୍ଚତନ୍ତ୍ର କାହାଣୀ (୩ୟ) - ୧୯୮୯

## ପାଠ୍ୟପୁସ୍ତକ

୧ । ସାହିତ୍ୟ ସୋପାନ (୧ମ) —୧୯୩୪
୨ । ସାହିତ୍ୟ ସୋପାନ (୨ୟ) ,,
୩ । ପାଠ ସୋପାନ (୧ମ)—୧୯୪୪
୪ । ପାଠ ସୋପାନ (୨ୟ) ,,
୫ । ସାହିତ୍ୟ ସୋପାନ (୩ୟ) —୧୯୩୬
୬ । ସାହିତ୍ୟ ସୋପାନ (୪ର୍ଥ) ,,
୭ । ସାହିତ୍ୟ ବୋଧ (୧ମ)—୧୯୩୮
୮ । ସାହିତ୍ୟବୋଧ (୨ୟ)—୧୯୩୮
୯ । ରଚନା ଦର୍ପଣ—୧୯୪୦
୧୦ । ପାଠ ସୋପାନ (୩ୟ)—୧୯୪୫

# କେତେଖଣ୍ଡି ଚିଠି

**ଡକ୍ଟର ଧନେଶ୍ୱର ମହାପାତ୍ର,** କଟକ (ତା ୬ । ୧ । ୭୯)

'… ..ଆପଣଙ୍କ ଜୀବନ ହାଟବେଳ ବାଣପନ୍ଥା କାହାକୁ ଚମତ୍କୃତ କରେନାହିଁ ସତ, କିନ୍ତୁ ଫୁଲଝରିଟି ଭଳି କୋମଳ ଆଲୋକର ଆନନ୍ଦ ପ୍ରଦାନ କରିଛି । ମୁଁ ଆପଣଙ୍କଠାରୁ ଶିଖିଛି ଖଟି ଖାଇବା, ମନରେ କୌଣସି ଅହମିକା ପୋଷଣ ନ କରିବା, ଗୌରବ ଲାଭ କରିବାକୁ ଲାଳାୟିତ ନ ହେବା, କନ୍ୟାମାନଙ୍କ ନିମନ୍ତେ ଚିନ୍ତିତ ନ ହେବା ଏବଂ ବୃତ୍ତିରେ ଯଥାସମ୍ଭବ ସ୍ୱାଧୀନ ହେବା ।'

ସ୍ୱାଧୀନତା ସଂଗ୍ରାମୀ **ଶ୍ରୀଯୁକ୍ତ ରାଜକୃଷ୍ଣ ବୋଷ** (ତା ୧୦ । ୧ । ୮୦)

'ଭାଇ ରାମକୃଷ୍ଣବାବୁ,

ମୋର ଆଶିଷ ଓ ଅଭିନନ୍ଦନ ଜାଣିବେ । ଆପଣ ଯେତେ ଯେତେ ଅଭିନନ୍ଦିତ ଓ ସମ୍ମାନିତ ହେଉଛନ୍ତି, ମୋର ସେତେ ବେଶି ଆନନ୍ଦ; କାହିଁକି ନା ଆମେ ଦୁହେଁ ଦେଶର ମୁକ୍ତି ସଂଗ୍ରାମରେ ସମଯୋଦ୍ଧା ଥିଲେ ।'

**ଡକ୍ଟର ନାରାୟଣ ହଜାରୀ,** ରିଡର୍, ପବ୍ଲିକ୍ ଆଡମିନିଷ୍ଟ୍ରେସନ, ଉତ୍କଳ ବିଶ୍ୱବିଦ୍ୟାଳୟ (ତା ୧୧ । ୧ । ୮୦)

'……ମୁଁ ଜାଣିଥିଲି 'ଆହେ ଦୟାମୟ ବିଶ୍ୱବିହାରୀ'ର ଲେଖକ ରାମକୃଷ୍ଣ ନନ୍ଦ; କିନ୍ତୁ ଅତ୍ୟନ୍ତ ପ୍ରାଚୀନ ହୋଇଥିବେ ଏହା ମୋର ଧାରଣା ଥିଲା । କାଳିନ୍ଦୀବାବୁ ମୋର ଏ ଭ୍ରାନ୍ତ ଧାରଣାକୁ ଦୂର କରିଛନ୍ତି । ……ଆପଣଙ୍କର ମଙ୍ଗଳ କାମନା କରୁଛି ।'

**ଶ୍ରୀ ଗୋବିନ୍ଦଚନ୍ଦ୍ର ଉଦ୍‌ଗାତା,** ବୁଢ଼ାରଜା, ସମ୍ବଲପୁର (ତା ୯ । ୬ । ୮୧)

,ଆଜି ଖବରକାଗଜରେ ଦେଖିଲି—ଶାରଳା ପୁରସ୍କାର ସଂସ୍ଥା ଏ ବର୍ଷ ଆପଣଙ୍କ ଜୀବନବ୍ୟାପୀ ସାଧନାକୁ ଅଭିନନ୍ଦିତ କରିବାକୁ ସ୍ଥିର କରିଛନ୍ତି । ଏ ସିଦ୍ଧାନ୍ତ ଅତ୍ୟନ୍ତ ସମୀଚୀନ ହୋଇଛି । ସେମାନେ ବାସ୍ତବରେ ଏଥିରେ ଗୌରବ ପାଇବେ ଆପଣଙ୍କ ଶକ୍ତି ଓ ସାଧନାକୁ ପୁରସ୍କୃତ କରାଇ ।

ଆପଣଙ୍କ ସାଧନାର ପ୍ରକୃତରେ ଅଛି ଆଦର୍ଶ ଏବଂ ତାହାହିଁ ତାହାର ଶକ୍ତି । ଈଶ୍ୱର ଆପଣଙ୍କୁ ଆହୁରି ଦୀର୍ଘ କର୍ମମୟ ଜୀବନ ଦେଇ ସେହି ଆଦର୍ଶର ଜୟସ୍ତମ୍ଭକୁ ଚିରଦୀପ୍ତ କରି ରଖିଥାନ୍ତୁ ।'

**ଶ୍ରୀ ବସନ୍ତ କୁମାର ଶତପଥୀ**, ସହଦେବଖୁଣ୍ଟା, ବାଲେଶ୍ୱର
(ତା ୬ । ୭ । ୮୭)

ପୂଜନୀୟ ସାର୍,

ଆପଣଙ୍କ ପୋଷ୍ଟକାର୍ଡ଼ ପାଇଲାମାତ୍ରେ ମୁଁ ୧୯୨୮-୨୯ ସାଲକୁ, କ୍ଲାସ ନାଇନ୍‌କୁ ବାରିପଦା ହାଇସ୍କୁଲର ପ୍ରଶସ୍ତ ହଲ୍‌କୁ ଚାଲିଗଲି । ମୋ ପାଖରେ ମୋର ତିନି ନମ୍ବର, ଚାରି ନମ୍ବର ପୁଅ, ତାଙ୍କ ଦୁଇ ସ୍ତ୍ରୀ ଓ ଅନ୍ୟ କେଇଜଣ ନାତି ଉପସ୍ଥିତ ଥିଲେ । ମିଜୋରାମରେ NEHUରେ ଥିବା ଇଂରାଜୀ Reader ପୁଅ କହିଲା, "ବାପା, ତୁମର ବି ସାର୍ ଅଛନ୍ତି ଯେ କି ତୁମ ପାଖକୁ ଏଡ଼େ ସୁନ୍ଦର ଅକ୍ଷରରେ ଏତେ ଆତ୍ମୀୟତାପୂର୍ଣ୍ଣ ଚିଠି ଲେଖିଛନ୍ତି ? ଆଶ୍ଚର୍ଯ୍ୟ !" ତା'ପରେ ଅନେକ କଥା ହେଲୁଁ । ସେମାନେ ମୋତେ ଧନ୍ୟ ମନେ କଲେ । ମୁଁ ତ ନିଜେ କେତେ ଧନ୍ୟ ସେମାନେ ଜାଣିଲେ ନାହିଁ । ମୁଁ ସଦେମାତ୍ର କହିଲି, "ଯେଉଁ ତିନିଜଣ ଶିକ୍ଷକ ମୋ ଜୀବନକୁ ଗଢ଼ି ମୋଡ଼ି ଦେଇଛନ୍ତି, ସେ ଭିତରୁ ଏ ଜଣେ ।"

**ଶ୍ରୀ ମୁରାରିମୋହନ ଜେନା**, ସମ୍ପାଦକ, ଉତ୍କଳ ସାହିତ୍ୟ ସମାଜ
(ତା ୨୯ । ୬ । ୮୦)

'ଆପଣଙ୍କ ରଚିତ ସେଇ ପ୍ରାଣପୁଲକଭରା ପଂକ୍ତି 'ଶିଁମୁଣ୍ଡ ବନ୍ଧ ହୋଇଲା ନିକଟ, ପ୍ରାଣ ହେଲା ପୁଲକିତ, ଭାବିଲି ଏ ଭୂଇଁ ଧନ୍ୟ ହେଲା ଛୁଇଁ ଏ ମୋ ଚିର ପରିଚିତ' ପଢ଼ି ଯେପରି ଆତ୍ମହରା ହୋଇଥିଲି, 'ସତ କହିବାକୁ କିଆଁ ଡରିବ, ସତ କହି ପଛେ ମଲେ ମରିବ' ପଢ଼ି ଏ ଯାବତ୍ ସେହିପରି ତାକୁ ଜୀବନର ପାଥେୟ କରି ରଖିଛୁ । ଆପଣଙ୍କ ଲେଖାର ଶୈଳୀ ଓ ଆଦର୍ଶ ମୋତେ ଏକା କାହିଁକି, ମୋଭଳି ବହୁ ସାହିତ୍ୟସେବୀଙ୍କୁ ଚିରକାଳ ଅନୁପ୍ରାଣିତ କରୁଥିବ ।'

**ଶ୍ରୀ ପ୍ରଫୁଲ୍ଲକୁମାର ଗିରି**, ଅନୁଗୁଳ (ତା ୧୫ । ୬ । ୮୨)

'...୧୯୮୨ର ଶାରଳା ପୁରସ୍କାର ପ୍ରଦାନ ଉତ୍ସବରେ ଆପଣଙ୍କୁ ସୁସାହିତ୍ୟିକ ଓ ଶିକ୍ଷାବିତ୍ ଭାବରେ ସମ୍ମାନ ତଥା ଉପାୟନ ପ୍ରଦାନ କରାଯାଇଥିବାରୁ ମୋର ଏ ଅଭିନନ୍ଦନ ଆପଣଙ୍କପାଇଁ ଉଦ୍ଦିଷ୍ଟ । ଆପଣଙ୍କ ଉଦାର ବ୍ୟକ୍ତିତ୍ୱ ଏବଂ ସାହିତ୍ୟିକ ପ୍ରତିଭାର ସ୍ଥାନ ଏ ସମସ୍ତ ପୁରସ୍କାର ଓ ପ୍ରଶଂସାର ବହୁ ଊର୍ଦ୍ଧ୍ୱରେ । ଈଶ୍ୱର କରନ୍ତୁ, ଆପଣ ଦୀର୍ଘଜୀବୀ ହୋଇ ରହି ବର୍ତ୍ତାଘରଭଳି ଅମକୁ ଉଚିତ ପଥପ୍ରଦର୍ଶନରେ ସାହାଯ୍ୟ କରନ୍ତୁ ।'

**ଶ୍ରୀ ଭଗବାନ ପାଢ଼ୀ**, ଶିକ୍ଷକ, ଫକୀରପୁର (ତା ୧୩ । ୯ । ୮୪)

'ଶିଶୁ ସାହିତ୍ୟ ଏକାଡେମୀର ସ୍ମରଣିକା ପାଇଲି । ସେଥିରେ କେହି ଜଣେ ଆଲୋଚକ ଲେଖିଛନ୍ତି—ରାମକୃଷ୍ଣ ନନ୍ଦ 'ଅହେ ଦୟାମୟ ବିଶ୍ୱବିହାରୀ...' ଲେଖି

ପିଲମାନଙ୍କୁ ଧର୍ମଗୁରୁ କରଦେଇଛନ୍ତି । ଆପଣ ନିଶ୍ଚୟ ସେ ସ୍ମରଣିକା ପାଇଥିବେ ଓ ପଢ଼ିଥିବେ । ଏ ବିଷୟରେ ଆପଣଙ୍କର ପ୍ରତିକ୍ରିୟା କଣ ? ଈଶ୍ୱର-ଭକ୍ତ କଣ ଶିଶୁ ସାହିତ୍ୟରୁ 'ଗେଟ୍ ଆଉଟ୍' ହେବା ନିହାତି ଜରୁରୀ ?'

**ଶ୍ରୀ ଦେବୀପ୍ରସାଦ ମିଶ୍ର,** ଅନୁଗୋଳ (ତା ୧୪ । ୧୧ । ୮୮)

'...ଏଇ କେତେଦିନତଳେ ଅନୁଗୋଳର ସରକାରୀ ପ୍ରଶିକ୍ଷଣ ମହା ବିଦ୍ୟାଳୟର ଶ୍ରେଣୀ ପ୍ରକୋଷ୍ଠରେ ମୋର ପୂଜନୀୟ ଅଧ୍ୟାପକ ଶ୍ରୀଯୁକ୍ତ ଚକ୍ରଧର ବିଶ୍ୱାଳ ଯେତେବେଳେ ଶିକ୍ଷାଦାନ ପରିପ୍ରେକ୍ଷୀରେ 'ଅହେ ଦୟାମୟ ବିଶ୍ୱବିହାରୀ...' ପ୍ରାର୍ଥନାର ଲେଖକଙ୍କ ନାମ ପଚାରିଲେ, ଉପସ୍ଥିତ ଥିବା ୧୩୫ ଜଣ ଛାତ୍ରଛାତ୍ରୀଙ୍କ ମଧ୍ୟରୁ ପାଞ୍ଚ ଛଅ ଜଣ ମାତ୍ର ହାତ ଟେକିଥିଲେ । ପୁଣି ଜଣେ ଛାତ୍ରୀ ଓ ମୋ ବ୍ୟତୀତ ଅନ୍ୟ ସମସ୍ତେ ଭକ୍ତକବି ମଧୁସୂଦନଙ୍କ ନାମ ପ୍ରକାଶ କଲେ । ..... ଅଧ୍ୟାପକ ମହାଶୟ ଯେତେବେଳେ ମୋ ଉତ୍ତର ଠିକ୍ ବୋଲି କହି 'ସଂସାର' ପତ୍ରିକା ପଢ଼ିବାକୁ ସମସ୍ତଙ୍କୁ ପରାମର୍ଶ ଦେଇଥିଲେ, ସେତେବେଳେ ମୋ ଛାତି କୁଣ୍ଢେ ମୋଟ ହୋଇଯାଇଥିଲା ।'

**ଶ୍ରୀମତୀ ସୁଚେତା ପ୍ରଧାନ,** ରାଉରକେଲା (ତା ୧୦ । ୨ । ୮୨)

'...ମୁଁ ଜଣେ ଗୃହିଣୀ, ମା ଓ ଶିକ୍ଷୟିତ୍ରୀ । 'ଅହେ ଦୟାମୟ ବିଶ୍ୱବିହାରୀ' ପ୍ରାର୍ଥନା ପିଲଟି ଦିନୁ ବୋଲୁଛି ଓ ପିଲଙ୍କୁ ଶିଖାଉଛି; ମାତ୍ର ଦୁଃଖ ଓ ଲଜ୍ଜାର କଥା, ତାହାର ସ୍ରଷ୍ଟା ଆପଣ, ଏ କଥା ଏବେ ଜାଣିଲି ପ୍ରଜାତନ୍ତ୍ର ସାପ୍ତାହିକରୁ ।'

**ଶ୍ରୀ କ୍ଷୀରୋଦଚନ୍ଦ୍ର ପୋଥାଳ** ('ସମାଜ' ତା ୧୦ । ୨ । ୮୦)

'..ଦୀର୍ଘ ଅର୍ଦ୍ଧ ଶତାବ୍ଦୀରୁ ଅଧିକ କାଳ ଲେଖକଙ୍କର ପାରିବାରିକ, ସାମାଜିକ ଓ କର୍ମମୟ ଜୀବନର ସମସ୍ତ ଟିକିନିଖି ସମସ୍ୟା, ଲେଖକ ଓ ଶିକ୍ଷକ ଜୀବନର ବହୁ ଘାତପ୍ରତିଘାତ, ବାଧା ବିପତ୍ତି ଓ ଉତ୍ଥାନପତନର ନିଛକ ପ୍ରତିଛବି 'ଜୀବନ ତରଙ୍ଗ' ପୁସ୍ତକର ପ୍ରତି ଛନ୍ଦେ ଛନ୍ଦେ ରୂପାୟିତ ହୋଇଛି ।'

**ଶ୍ରୀ ଯୋଗୀନ୍ଦ୍ର ପଟ୍ଟନାୟକ,** ରାଇରଙ୍ଗପୁର (ତା ୨୫ । ୧୦ । ୮୭)

'...ମୋର ଗୋଟିଏ ଦିନର ସ୍ମୃତି କଥା ଆପଣଙ୍କୁ ମନେ ପକାଇ ଦେଉଛି । ଆପଣଙ୍କର କିଶୋର ସାହିତ୍ୟଉପରେ ସେତେବେଳେ ଖୁବ୍ ନଜର ଥାଏ । ଟମ୍ କୁଇକ୍‌ସୋଟ୍ ଓ ଅନ୍ୟାନ୍ୟ ଅନୁବାଦ ଆରମ୍ଭ କରିଥାନ୍ତି । ମୁଁ ଗନ୍ଧମର୍ଦ୍ଦନରେ ଶ୍ରୀଧର ମହାପାତ୍ରଙ୍କ ପାଖକୁ ଯାଇଥିଲି । ପଦ୍ମଶ୍ରୀ ଲକ୍ଷ୍ମୀନାରାୟଣ ସାହୁ ଓ ନିତ୍ୟାନନ୍ଦବାବୁ (ଡଗର) ସେଠାରେ ଥିଲେ । ତିନିଜଣ ଏକସ୍ୱରରେ କହିଲେ—'ରାମକୃଷ୍ଣବାବୁଙ୍କ

ବାଟଟି ଧର । ବିଶ୍ୱସାହିତ୍ୟକୁ ପିଲାମାନଙ୍କ ନଜରକୁ ଆଣ ।'······ତାପରେ ପାଣ୍ଡୁଲିପିଟିଏ ଧରି ଆପଣଙ୍କୁ ଭେଟିଲି । ଆପଣ ଯେଉଁ ପ୍ରେରଣା ଦେଇଥିଲେ ତାହା ଭୁଲିପାରି ନାହିଁ । ଆପଣ କହିଥିଲେ—'ଯଦି ଦେବାର ଅଛୁ, ଅନ୍ତର ଲଗାଇ ଦେଇଯାଅ । କଣ କେତେ ପାଇଲ, ତାର ହିସାବ ନିକାଶ କରନାହିଁ ।'

## ଯେଉଁ ଯେଉଁ ଅନୁଷ୍ଠାନସହ ସଂପୃକ୍ତ ଥିଲି

୧ । ପାଟନା ବିଶ୍ୱବିଦ୍ୟାଳୟ—ଇଂରେଜୀ ପରୀକ୍ଷକ (ମାଟ୍ରିକ୍)
୨ । ଉତ୍କଳ ବିଶ୍ୱବିଦ୍ୟାଳୟ—ଇଂରେଜୀ ପରୀକ୍ଷକ (ମାଟ୍ରିକ)
୩ । ରାଧାନାଥ ଟ୍ରେନିଂ କଲେଜ, କଟକ—ସଭ୍ୟ, ଗଭର୍ଣ୍ଣିଂ ବଡ଼ି
୪ । ମଡର୍ଣ୍ଣ ପବ୍ଲିକ୍ ସ୍କୁଲ, କଟକ—ସଭାପତି, ପରିଚାଳନା ସମିତି
୫ । ରାଜାବଗିଚା ଏମ୍. ଇ. ସ୍କୁଲ, କଟକ – ସଭ୍ୟ, ,, ,,
୬ । ବାଙ୍କୀ ଡମପଡ଼ା ହାଇସ୍କୁଲ—ସହକାରୀ ଶିକ୍ଷକ
୭ । ବାଣପଦା ହାଇସ୍କୁଲ—ସହକାରୀ ପ୍ରଧାନ ଶିକ୍ଷକ
୮ । ଶ୍ରୀ ବଜ୍ରେଶ୍ୱର ହାଇସ୍କୁଲ, ଭଙ୍ଗାରପୁର—ପ୍ରଧାନ ଶିକ୍ଷକ
୯ । ପାଠ୍ୟପୁସ୍ତକ ଜାତୀୟକରଣ କମିଟି, କଟକ—ସଭ୍ୟ, କାର୍ଯ୍ୟକାରୀ ସମିତି
୧୦ । ଶିଶୁସାହିତ୍ୟ ସମିତି, କଟକ – ସଭ୍ୟ, କାର୍ଯ୍ୟକାରୀ ସମିତି
୧୧ । ପ୍ରାଥମିକ ଶିକ୍ଷା ବୋର୍ଡ, ଓଡ଼ିଶା—ସଭ୍ୟ
୧୨ । ମାଧ୍ୟମିକ ଶିକ୍ଷା ବୋର୍ଡ, ଓଡ଼ିଶା—ସଭ୍ୟ, ସମ୍ପାଦକମଣ୍ଡଳୀ
୧୩ । NCERT, ଦିଲ୍ଲୀ—ସମୀକ୍ଷକ, ଶିଶୁପୁସ୍ତକ
୧୪ । ନ୍ୟାସନାଲ ବୁକ୍ ଟ୍ରଷ୍ଟ, ଇଣ୍ଡିଆ—ଅନୁବାଦକ
୧୫ । ଓଡ଼ିଶା ସାହିତ୍ୟ ଏକାଡେମୀ – ସଙ୍କଳକ ଓ ସମୀକ୍ଷକ (ଶିଶୁପୁସ୍ତକ)
୧୬ । ଶିଶୁ ସାହିତ୍ୟ ଏକାଡେମୀ – ସଭାପତି, ଆଜୀବନ ସଭ୍ୟ
୧୭ । ଉତ୍କଳ ସାହିତ୍ୟ ସମାଜ – ଆଜୀବନ ସଭ୍ୟ
୧୮ । ଉତ୍କଳ ସଙ୍ଗୀତ ସମାଜ—ସଭ୍ୟ, କାର୍ଯ୍ୟକାରୀ ସମିତି
୧୯ । ସଦାଗର ଭାରତ, ହିନ୍ଦ୍ ସେବକ ସଂଘ—ସଭ୍ୟ
୨୦ । ରମାଦେବୀ ଶିଶୁବିହାର—ସଭ୍ୟ, ପରିଚାଳନା ସମିତି
୨୧ । ଆକାଶବାଣୀ ଓ ଦୂରଦର୍ଶନ, କଟକ—ସ୍ୱୀକୃତିପ୍ରାପ୍ତ ଗୀତିକାର



* * *